# ● କବି ପରିଚୟ (ପ୍ରଥମ ଭାଗ)

ଡା: ରାମମୋହନ ଜେନା
ସ୍ୱାଧୀନତା ସଂଗ୍ରାମୀ
କବିସୂର୍ଯ୍ୟନଗର (ଗଞ୍ଜାମ)

* ପ୍ରକାଶକ :
ଅଶୋକ କୁମାର ଜେନା
କବିସୂର୍ଯ୍ୟନଗର (ଗଞ୍ଜାମ)

* ପ୍ରାପ୍ତିସ୍ଥାନ :
ହାନିମ୍ୟାନ୍ ହୋମିଓ ହାଲ୍
କବିସୂର୍ଯ୍ୟନଗର (ଗଞ୍ଜାମ) ଓଡ଼ିଶା

* ମୁଦ୍ରଣ :
ନ୍ୟାସନାଲ୍ ପ୍ରିଣ୍ଟର୍ସ୍
କବିସୂର୍ଯ୍ୟନଗର-୭୬୧୧୦୪ (ଗଞ୍ଜାମ)

● ମୂଲ୍ୟ—ଟ ୧୪-୦୦

ପିତା ସ୍ୱର୍ଗ, ଧର୍ମ, ପରମତପ-

ପିତା ସନ୍ତୋଷ ହେଲେ ଦେବତାମାନେ ଆନନ୍ଦ ହୁଅନ୍ତି ।

(ବେଦ)



ପରମ ପୂଜ୍ୟ ପିତୃଦେବ ୰ ବଳଭଦ୍ର ଜେନାଙ୍କ

ପବିତ୍ର ସ୍ମୃତି ଉଦ୍ଦେଶ୍ୟରେ

ଏହି ନଗଣ୍ୟ କୃତକୁ ଶ୍ରଦ୍ଧାଭକ୍ତିର ନୈବେଦ୍ୟ ରୂପେ ଅର୍ପଣ କରୁଛି ।

--ବିସ୍ମୃତ ପୁତ, ବ୍ରଜମୋହନ

# ପଦେ

ଜୀବନର ସାୟାହ୍ନରେ ମୋର ବଡ ପୁଅ ଓ ବୋହୂ ମାନ-ସିକତା ହରାଇ ଘରଛାଡ଼ି ଚାଲିଗଲେ । ମୋ ସ୍ତ୍ରୀ ମର୍ମାହତ ହୋଇ ଶେଯ ଧରିଲେ । ଆତ୍ମସନ୍ଧାନ ଓ ତାଙ୍କ ସେବା ଶୁଶ୍ରୂଷା ପାଇଁ ମୁଁ ବାଧହୋଇ ଚାକିରି ଛାଡି ଆସିଲି । ଗାଁରେ ହୋମିଓ ଡ଼ାକ୍ତର ହିସାବରେ ଜନତାର ସେବାରେ ଲାଗି ପଡିଲି । ଜନ ସାଧାରଣଙ୍କ ସହ ଘନିଷ୍ଠ ସୁସଂପର୍କ ଯୋଗୁଁ ଗାଁର ଉନ୍ନତି ପାଇଁ ବିଦ୍ୟାଳୟ, ମହା-ବିଦ୍ୟାଳୟ, ସହଯୋଗ ସମିତି ଓ ଉନ୍ନୟନ ପରିଷଦରେ କର୍ମମୟ ଜୀବନ ଆରମ୍ଭ କଲି । ମାତ୍ର ଏ ବ୍ୟାଧିଗ୍ରସ୍ତ ସମାଜରେ ଜାଣିବାକୁ ପାଇଲି ଯେ, ପ୍ରାପ୍ତ ସମସ୍ତେ କ୍ଷମତା ସର୍ବସ୍ୱ, ଜାଣ୍ଠୂପ୍ରତା ଶୂନ୍ୟ ଓ ଆତ୍ମକେନ୍ଦ୍ରିକ । ଏ ମାଟିରେ ଦାରିଦ୍ର୍ୟ ଓ ନିରକ୍ଷରତା ଭିତରେ ଗଣତନ୍ତ୍ର ଗୋଟିଏ ପ୍ରହସନ, ସତେ ଯେପରି ସମସ୍ତେ ସ୍ୱାଧିନତା ପାଇଛନ୍ତି । ସେଥିପାଇଁ ସବୁ ଅନୁଷ୍ଠାନରୁ ଇସ୍ତଫା ଦେଇ ବନ୍ଧୁଗ୍ରନ୍ଥ ସ୍ୱୀକାର କରି ଲେଖା ଆରମ୍ଭ କଲି । 'କବି ସମ୍ରାଟ' ଓ 'କବିସୂର୍ଯ୍ୟ' ବହି ଦୁଇଟି ଅର୍ଥ ଅଭାବରୁ ମୁଦ୍ରଣ କରି ପାରିଲି ନାହିଁ ।

ଜୀବନର ସାଥି ୰ କାଞ୍ଚନମାଳା ଥିଲେ ମୋ ସ୍ୱାଧୀନତା ସଂଗ୍ରାମର ସଜାଗ ପ୍ରହରୀ, କର୍ମମୟ ଜୀବନର ସହଚରୀ, ସାହିତ୍ୟ କ୍ଷେତ୍ରରେ ସହଧର୍ମିଣୀ । ସେ ତା ୧-୮-୧୯୮୫ରେ ମୋତେ ଛାଡି ଚାଲିଗଲେ ଅମରପୁରକୁ । ସେ ଥିଲେ ହୃଦୟବତୀ, ବିନୟୀ, ଧର୍ମ-ପ୍ରାଣା ଓ ସୁବିଜ୍ଞପଣ୍ଡିତା ରମଣୀ । ମୋତେ ଛାଡ଼ିଯିବା ୬ମାସ ଆଗରୁ ରୋଗ ଶଯ୍ୟାରେ ପଡି ମୋତେ ସାହସ ଓ ଆନନ୍ଦ ଦେବା ପାଇଁ ବହୁ ସମୟରେ ଦକ୍ଷିଣ ଓଡିଶାର ବହୁ କବିମାନଙ୍କର ପୁରାଣ ଶୁଣାଉଥିଲେ

ଅମ୍ଳାନ ବଦନରେ । ସେହିଠାରୁ କବିମାନଙ୍କର ଲେଖା ଉପଲବ୍ଧି କରିବା ସଙ୍ଗେ ସଙ୍ଗେ କବିଙ୍କୁ ଜାଣିବା ପାଇଁ ଚେଷ୍ଟାର ଏହା ପରିଣତି ।

ସାଗରର ଅନ୍ୟନାମ ରତ୍ନାକର । ତା'ଗର୍ଭରେ ବହୁ ଖଣିଜ, ମଣି, ମୁକ୍ତା, ରତ୍ନ, ରହିଛି । ତାକୁ ଉଦ୍ଧାର କଲେ ତା'ର ମୂଲ୍ୟ ବଢେ । ସେହିପରି ମୁଁ ଆହରଣ କରି 'କବି ପରିଚୟ' ପ୍ରଥମ ଭାଗ (ଦକ୍ଷିଣ ଓଡ଼ିଶାର) ଲେଖିଲି । ମୋର କିଛି ନିଜସ୍ୱ ନାହିଁ କି ମୋର ସେହିପରି କିଛି ପାଣ୍ଡିତ୍ୟ ନାହିଁ । ଏଥିରେ ବହୁତ ଭୁଲ ପ୍ରମାଦ, ରହିଥାଇ ପାରେ । ସୁଧିବର୍ଗ ମୋତେ ନିଜ ଗୁଣରେ ଅକୁଣ୍ଠିତ ଚିତ୍ତରେ କ୍ଷମା ଦେବାପାଇଁ ଅନୁରୋଧ ।

ଧୁରୀଣ ସାହିତ୍ୟିକ ଗଣ ଓ ସମାଲୋଚକ ବନ୍ଧୁମାନଙ୍କୁ ମୋର ବିନୀତ ପ୍ରାର୍ଥନା ଯେ ମୋର ଲେଖାର ଦୋଷ ଦୁର୍ବଳତା ସତ୍ତ୍ୱେ ମୋର ଲେଖାର ତଥ୍ୟ ଉପରେ ଗବେଷଣା ଓ ସମାଲୋଚନା କଲେ ମୁଁ ଚିର କୃତଜ୍ଞ ରହିବି । ଏଥିରୁ କେତୋଟି ଲେଖା ପତ୍ର ପତ୍ରିକାରେ ପ୍ରକାଶ ପାଇଛି । ସେଥିପାଇଁ 'ପ୍ରଜାରଞ୍ଜନ'ର ସଂପାଦକଙ୍କୁ ମୋର ଆନ୍ତରିକ ଧନ୍ୟବାଦ ଜଣାଉଛି ।

**ବିଜୟା ଦଶମୀ**

ତା ୧୨-୧୦-୧୯୮୬

କବିସୂର୍ଯ୍ୟନଗର

ବିନୀତ

**ରାମମୋହନ ଜେନା**

# ସୂଚୀପତ୍ର ॥

**ପରିଶିଷ୍ଟ କବି ପରିଚୟ —**

ରାମକୃଷ୍ଣ ଶ୍ରେଷ୍ଠରାୟ, ରାମଚନ୍ଦ୍ର ଦେବ, କୃଷ୍ଣପୁର ହରିଚନ୍ଦନ ପଦ୍ମନାଭ ଦେବ, ଶ୍ରୀନିବାସ ରାଜମଣି (ପୃ-୨୨୭),କେଶବ ହରିଚନ୍ଦନ, ଚନ୍ଦ୍ରଚୂଡ଼ମଣି ହରିଚନ୍ଦନ, ହରିଚନ୍ଦନ ଗଜଦେବ, ପିତାମ୍ବର ଦେବ, ବଳଭଦ୍ର ନାରାୟଣ ମହାପାତ୍ର, ଦୁର୍ଗାମାଧବ ସିଂହ (ପୃ·୨୨୮) ରାମଦାସ ବାବାଜୀ, ସେବା ଦାସ, ସଦାଶିବ ବୈଶ୍ୟ, ଦାମୋଦର ଦାସ, ବିକ୍ରମ ନରେନ୍ଦ୍ର (ପୃ-୨୨୯), ଜନାର୍ଦ୍ଦନ ବିପ୍ର, ଗୌରୀକୁମାର ବ୍ରହ୍ମା, ବୈକୁଣ୍ଠନାଥ ପଟ୍ଟନାୟକ, କାଳିଆ ପାଣିଗ୍ରାହୀ, କପିଳେଶ୍ବର ଦାସ, ଅନନ୍ତ ପଦ୍ମନାଭ ପଟ୍ଟନାୟକ, ରାମଚନ୍ଦ୍ର ମିଶ୍ର. ତାରିଣୀଚରଣ ରଥ, ଅନ୍ତର୍ଯ୍ୟାମୀ ପଣ୍ଡା, କୃଷ୍ଣନନ୍ଦ ପାଣିଗ୍ରାହୀ (ପୃ-୨୩୦)।



# ରାଜକବି ଧନଞ୍ଜୟ ଭଞ୍ଜ

ଭାରତ ବର୍ଷରେ ଖ୍ରୀଷ୍ଟପୂର୍ବ ବହୁ ଶତାବ୍ଦୀପୂର୍ବରୁ ତାହାର ସଭ୍ୟତା, ସାହିତ୍ୟ, ସଂସ୍କୃତ, କଳା ଚରମ ସୀମାରେ ଉପନୀତ ହୋଇ-ଥିଲା । ମୁନି ଋଷିମାନେ ବେଦ,ବେଦାନ୍ତ, ଉପନିଷଦ ଇତ୍ୟାଦି ରଚନା କରିଥିଲେ । ଏହାର ବୈଦିକ ବିକାଶ, ପ୍ରଜ୍ଞା ବିଶେଷ ଭାବେ ବିଶ୍ବ-ଜନ ବିଦିତ । ବିଶ୍ବ ଦରବାରରେ ଏହାର ଜ୍ଞାନ ଗାରିମା, ଗୁରୁତ୍ବ ଗମ୍ଭୀର ଭାବେ ଶତକଣ୍ଠରେ ଘୋଷିତ, ହୋଇ ଚିର ନମସ୍ୟ ଥିଲା । ଏହାର ମୂକ ସାକ୍ଷୀ କଳକଳ ନିନାଦିତ ନିର୍ଝରିଣୀ, ସଦା ପ୍ରବାହିତ ନଦନଦୀ,ଶସ୍ୟଶାମଳା,ସୁଶୋଭିତ ସମତଳ ଉର୍ବର ଭୂମି,ତାଳ ତମାଳ ପରିଶୋଭିତ ସବୁଜ ବନଭୂମି, ଉତ୍ତୁଙ୍ଗ ପର୍ବତ ଶିଖର, ସୁଲଳିତ କାକଳୀ ଧ୍ୱନିତ ବନପ୍ରାନ୍ତର, ଝିଲ୍ଲି ଝଙ୍କାରିତ ଅଟବୀ, ନୀଳ ସାଗର ଧୌତ ବେଳାଭୂମି । ଏହି ପ୍ରାକୃତିକ ସୌନ୍ଦର୍ଯ୍ୟ ମୁନି ମନ ହରଣ କରୁ-ଥିଲା । ପ୍ରାକୃତିକ ବିଭବ, ଧନ ଦୌଲତ, ଐଶ୍ୱର୍ଯ୍ୟ ବାହ୍ୟ ଲୋକ-ମାନଙ୍କୁ ପ୍ରଲୁବ୍ଧ କରୁଥିଲା ।

ସୂକ୍ଷ୍ମ ଶିଳ୍ପକଳା ବିମଣ୍ଡିତ କୁଟୀର ଶିଳ୍ପ, ହୀରା, ନୀଳା, ମଣି, ମୁକ୍ତା, ସୁନା, ହାତୀଦାନ୍ତ, ସୂକ୍ଷ୍ମ ପଟ୍ଟବସ୍ତ୍ରର ବାଣିଜ୍ୟ କରି ସିଂହଳ, ଜାଭା, ବୋର୍ଣ୍ଣିଓ, ସୁମିତ୍ରା, ବର୍ମା, ମିଶର, ଆରବ, ପାର-ସ୍ୟରେ ସୁନାମ ଅର୍ଜନ କରିଥିଲା ।

ଏଥିରେ ଆକୃଷ୍ଟ ହୋଇ ଖ୍ରୀଷ୍ଟପୂର୍ବ ଚତୁର୍ଥ ଶତାବ୍ଦୀରେ ମହାବୀର ଆଲେକଜାଣ୍ଡର ଭାରତ ଆକ୍ରମଣ କରିଥିଲେ । ତା'ର

ପରବର୍ତ୍ତୀ କାଳରେ ଶକ, ହୁନ, ତାତାର, ମୋଗଲ, ପଠାଣ, ଡ଼ଚ, ପର୍ତ୍ତୁଗୀଜ୍ ଓ ଇଂରେଜମାନେ ଭାରତକୁ ଆକ୍ରମଣ କରିଥିଲେ ।

୩୨୦ ଖ୍ରୀ:ଅ:ରେ ପ୍ରଥମ ଚନ୍ଦ୍ରଗୁପ୍ତଙ୍କ ଠାରୁ ୪୫୫ ଖ୍ରୀ: ଅ: ସ୍କନ୍ଦଗୁପ୍ତଙ୍କ ପାଏଁ ଏହା ଥିଲା ଗୌରବମୟ ଅଧ୍ୟାୟ ।

ବିଦେଶୀ ଶକ୍ତିମାନେ ଭାରତକୁ ଆକ୍ରମଣ କରି ଲୁଣ୍ଠନ କରିଥିଲେ ମଧ୍ୟ ସେମାନେ ଭାରତରେ ବସବାସ କରି ସାମିଲ୍ ହୋଇ ରହିଥିଲେ । ମାତ୍ର ଇଂରେଜମାନେ ଶୋଷଣ କରି ତାଙ୍କ ଦେଶକୁ ବୋହି ନେଉଥିଲେ । ୧୫୬୪ ଖ୍ରୀ: ଅ: ଠାରୁ ୧୫୯୨ ଖ୍ରୀ: ଅ: ପର୍ଯ୍ୟନ୍ତ ଏତେଶକ ଆଫଗାନ୍ ଓ ମୋଗଲମାନଙ୍କ ମଧ୍ୟରେ ଓଡ଼ିଶା ଅଧିକାର କରିବା ପାଇଁ ସଂଘର୍ଷ ହୋଇଥିଲା । ୧୫୭୬ ଖ୍ରୀ:ଅ:ରେ ମୋଗଲମାନେ ଓଡ଼ିଶା ଅଧିକାର କରିଥିଲେ । ୧୭୫୧ ଖ୍ରୀ:ଅ: ପର୍ଯ୍ୟନ୍ତ ରାଜତ୍ୱ ଚାଲିଥିଲା । ଏହାପରେ ତାଙ୍କର ରାଜତ୍ୱ ଲୋପ ପାଇଥିଲା । ୧୭୫୧ ଖ୍ରୀ:ଅ: ଠାରୁ ଓଡ଼ିଶାରେ ମରହଟ୍ଟାମାନଙ୍କ ଶାସନ ଆରମ୍ଭହେଲା । ୧୭୭୫ ଖ୍ରୀ:ଅ:ରେ ଗଞ୍ଜାମର ବିକ୍ରମ ଭଞ୍ଜଙ୍କ ଉପରେ ପ୍ରଥମ ସାମରିକ ହସ୍ତକ୍ଷେପ କରିଥିଲେ । ୧୭୭୬ ଖ୍ରୀ:ଅ:ରେ ଇଂରେଜମାନେ ଓଡ଼ିଶାର ଗଞ୍ଜାମ, କୋରାପୁଟ ଦୁଇଟି ଜିଲ୍ଲା ନିଜାମଙ୍କ ଠାରୁ ସାମରିକ ସାହାଯ୍ୟ ବାବଦରେ ପାଇଥିଲେ । ସେହି ବର୍ଷ ଇଂରେଜମାନେ ଗଞ୍ଜାମ ଅଧିକାର କରିଥିଲେ । ୧୮୦୩ ଖ୍ରୀ:ଅ:ରେ ଇଂରେଜମାନେ ଓଡ଼ିଶା ଅଧିକାର କଲେ ମଧ୍ୟ ୧୮୪୭ ପର୍ଯ୍ୟନ୍ତ ଗଞ୍ଜାମର ଘୁମୁସରରେ ଓ ୧୮୨୭ ଖ୍ରୀ:ଅ ପର୍ଯ୍ୟନ୍ତ ସମ୍ବଲପୁରରେ ବିଦ୍ରୋହ ଲଗି ରହିଥିଲା । ୧୮୦୩ ଖ୍ରୀ:ଅ: ପର୍ଯ୍ୟନ୍ତ ଉତ୍ତର ଓଡ଼ିଶାର ଉପକୂଳବର୍ତ୍ତୀ ଅଞ୍ଚଳରେ ମରହଟ୍ଟା ମାନଙ୍କ ରାଜତ୍ୱଥିଲା । ୧୬୭୦ ଖ୍ରୀ:ଅ: ଠାରୁ ୧୬୭୪ ଖ୍ରୀ:ଅ: ପର୍ଯ୍ୟନ୍ତ ନିରବଚ୍ଛିନ୍ନ ଭାବେ ଶିବାଜୀ ମୋଗଲମାନଙ୍କ ସହିତ ଯୁଦ୍ଧରେ ବ୍ୟାପୃତ ଥିଲେ । ଆଉରେଙ୍ଗଜେବଙ୍କର ହିନ୍ଦୁ ବିଦ୍ୱେଷନୀତି ଓ ଧର୍ମାନ୍ଧତା ଯୋଗୁଁ

ତାଙ୍କ ଶାସନକାଳରେ ମଧ୍ୟ ରାଜପୁତ, ଶିଖ୍ ଓ ମରହଟ୍ଟାମାନେ ବିଦ୍ରୋହ କରିଥିଲେ । ୧୮୦୪ ଖ୍ରୀ:ଅ:ରେ ଖୋର୍ଦ୍ଧାର ରାଜା ମୁକୁନ୍ଦ ଦେବ ଇଂରେଜମାନଙ୍କ ବିରୁଦ୍ଧରେ ବିଦ୍ରୋହକରି ବନ୍ଦୀ ହୋଇଥିଲେ । ୧୮୧୭ ଖ୍ରୀ:ଅ:ରେ ଖୋର୍ଦ୍ଧାରେ ବକ୍ସିଜଗବନ୍ଧୁଙ୍କ ନେତୃତ୍ୱରେ ପାଇକମାନେ ଇଂରେଜମାନଙ୍କ ବିରୁଦ୍ଧରେ ବିଦ୍ରୋହ କରିଥିଲେ । ୧୮୧୮ ଖ୍ରୀ:ଅ:ରେ ଖୋର୍ଦ୍ଧା ସଂପୂର୍ଣ୍ଣ ଅଧିକାର କଲେ । ୧୮୦୮ ଖ୍ରୀ:ଅ:ରେ ଧରାକୋଟ, ଖଲ୍ଲିକୋଟ, ଚିକିଟି, ଆଠଗଡ଼କୁ ନିଜ ଶାସନକୁ ଆଣିବା ପାଇଁ ଚେଷ୍ଟା କରିଥିଲେ । ୧୮୪୩ ଖ୍ରୀ:ଅ:ରେ ସିଂହଭୂମ ରାଜାଙ୍କ ଉସ୍କାହରେ ସିଂହଭୂମ, ଧଳଭୂମ ଓ ବରାହଭୂମରେ ଇଂରେଜମାନଙ୍କ ବିରୁଦ୍ଧରେ କୋହ୍ଲମାନେ ବିଦ୍ରୋହ କରିଥିଲେ । ୧୭୮୧ ଖ୍ରୀ:ଅ: ଠାରୁ ୧୭୯୭ ଖ୍ରୀ:ଅ: ପର୍ଯ୍ୟନ୍ତ ମୟୂରଭଞ୍ଜ ରାଜା ଦାମୋଦର ଭଞ୍ଜ ମଧ୍ୟ ସେମାନଙ୍କ ବିରୁଦ୍ଧରେ ଯୁଦ୍ଧ କରିଥିଲେ ।

ମୋଗଲ, ମରହଟ୍ଟାଙ୍କ ପରେ ଓଡ଼ିଶାର ଅର୍ଥନୈତିକ ମେରୁଦଣ୍ଡ ଭାଙ୍ଗି ପଡ଼ିଲା । ଫଳରେ ଇଂରେଜମାନେ ସାମରିକ ବଳଦ୍ୱାରା କୂଟନୈତିକ ଅନୁପ୍ରବେଶ କଲେ ।

ଶାନ୍ତି ଶୃଙ୍ଖଳାର ଅଭାବ ଓ ଜଳଦସ୍ୟୁମାନଙ୍କର ଲୁଣ୍ଠନ ଯୋଗୁଁ ଓଡ଼ିଶାର ସୁଦୂର ପ୍ରସାରି ନୌବାଣିଜ୍ୟ ଅତି କ୍ଷୀଣ ହୋଇ ଆସିଲା । କୁଟୀର ଶିଳ୍ପ ଲୋପ ପାଇବାକୁ ବସିଲା । ପ୍ରଜାମାନେ କର ଭାରରେ ଜର୍ଜରିତ ହେଲେ ।

ପଞ୍ଚଦଶ ଶତାବ୍ଦୀର ମଧ୍ୟଭାଗଠାରୁ ସପ୍ତଦଶ ଶତାବ୍ଦୀ ମଧ୍ୟଭାଗ ପର୍ଯ୍ୟନ୍ତ ଓଡ଼ିଶା ଇତିହାସରେ ବିପ୍ଳବ, ଲୁଣ୍ଠନ, ଅତ୍ୟାଚାର, ରକ୍ତପାତର ଧାରା ବହି ଯାଇଥିଲା । ଶାନ୍ତି ଓ ନିରାପତ୍ତା ବିପନ୍ନ

ହୋଇ ପଡ଼ିଥିଲା । କେନ୍ଦ୍ରରେ ଶାସନ ଦୁର୍ବଳ ଯୋଗୁଁ ରାଜା,ଜମିଦାର-ମାନେ ନିଜ ସୀମାର ଭିତରେ ଅଖଣ୍ଡ ରାଜତ୍ୱ କରୁଥିଲେ । ଗୃହ ବିବାଦ ଚରମ ସୀମାରେ ଉପନୀତ ହୋଇଥିଲା ।

ରଣୋନ୍ମତ୍ତ ଦୁର୍ଦ୍ଧର୍ଷ ଓଡ଼ିଆ ଜାତିକୁ ଦୁର୍ବଳ କରିବା ପାଇଁ ଓ ପ୍ରତିଶୋଧ ନେଇ ଇଂରେଜମାନେ ଓଡ଼ିଶାକୁ ଖଣ୍ଡ ଖଣ୍ଡ କରି ବଙ୍ଗଳା, ବିହାର ଓ ମେଡ୍ରାସ୍ ପ୍ରଦେଶ ସହିତ ମିଶାଇ ଦେଇଥିଲେ । ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ନଥିଲା । ୧୯୩୬ରେ କେବଳ ଓଡ଼ିଶା ପ୍ରଦେଶ ହେଲା । ୧୯୪୮ ଖ୍ରୀ:ଅ:ରେ ଗଡ଼ଜାତ ଅଞ୍ଚଳ ଏଥିରେ ସାମିଲ ହେଲା । ଏବେ ମଧ୍ୟ ଓଡ଼ିଶାର କେତେକ ଓଡ଼ିଆଭାଷୀ ଅଞ୍ଚଳ ଅନ୍ୟ ପ୍ରଦେଶ ସହିତ ରହିଅଛି ।

ଆଜିର ଓଡ଼ିଶାର ଶତକଡ଼ା ଅଶୀଭାଗ କୃଷୀ, ପଞ୍ଚବିଂଶତି ଭାଗ ଆଦିବାସୀ, ଷୋଡ଼ଏ ଭାଗ ହରିଜନ, ନବେଭାଗ ପଲ୍ଲୀବାସୀ । ଓଡ଼ିଶା ଶସ୍ୟ ଶ୍ୟାମଳା, ବିପୁଳ ଖଣିଜ ସମ୍ପଦରେ ଭରା, ବିସ୍ତୃତ ବନ ସମ୍ପଦ, ଅପରିମିତ ସାମୁଦ୍ରିକ ବିଭବ ଥାଇ ମଧ୍ୟ ଓଡ଼ିଶାବାସୀ ଗରିବ । ଶତକଡ଼ା ସତୁରି ଭାଗ ଦାରିଦ୍ର୍ୟର ସୀମାରେଖା ଭିତରେ । ସାକ୍ଷରଙ୍କ ସଂଖ୍ୟା ଶତକଡ଼ା ୩୦ । ନିଜର ପେଟ ପୋଷିବା ପାଇଁ ପିଲାକବିଲାଙ୍କୁ ଛାଡ଼ି ଲକ୍ଷ ଲକ୍ଷ କର୍ମୀ ସଂସ୍ଥାପନା ଲାଗି ବିଦେଶରେ ହାତ ପାତିଛନ୍ତି ।

ଭାରତର ଅଧିକାଂଶ ଅଞ୍ଚଳ ବିଦେଶୀମାନଙ୍କ କବଳରେ ପଡ଼ି ଅଧୀନତା ସ୍ୱୀକାର କଲାବେଳେ ପୂର୍ବାଞ୍ଚଳରେ କେବଳ ଆମ ଓଡ଼ିଶା ଷୋଡ଼ଶ ଶତାବ୍ଦୀର ଶେଷ ପର୍ଯ୍ୟନ୍ତ ପାଞ୍ଚଶହ ବର୍ଷକାଳ ପୂର୍ଣ୍ଣ ସ୍ୱାଧୀନତା ଉପଭୋଗ କରୁଥିଲା ।

ଦେଶ ଭିତରେ ଯେଉଁ ପ୍ରକାର ଉତ୍ପାଦନ ପ୍ରଣାଳୀ ପ୍ରଚ-

ନୀତ ହୁଏ, ତାହା ଅର୍ଥନୀତି ଉପରେ ପ୍ରଭାବ ବିସ୍ତାର କରେ । ଅର୍ଥନୀତି ଓ ରାଜନୀତି ହାତ ଧରାଧରି ହୋଇ ଚାଲନ୍ତି । ସେହି ରୂପ, ଗୁଣ ନେଇ ରାଷ୍ଟ୍ରର ସାମାଜିକ ଶାସନ ରଚନା, ଆଇନକାନୁନ, ଧର୍ମ, ଶିଳ୍ପକଳା, ଦର୍ଶନ, ସାହିତ୍ୟ ଅନୁରୂପ ହୁଏ ।

ମଧ୍ୟଯୁଗଟି ଥିଲା 'ସାମନ୍ତବାଦର ଯୁଗ' । ଏହି ସମୟର ସମାଜ ଥିଲା ରାଜତାନ୍ତ୍ରିକ ବା 'ଦରବାର ଯୁଗ' । ଅନ୍ୟ ରାଜାର ରାଜ୍ୟ ଯୁଦ୍ଧରେ ଜୟ କରି ନିଜର ସାମ୍ରାଜ୍ୟଭୁକ୍ତ କରିବା ଗାରିମା ଥିଲା ।

ସାଧାରଣତଃ ଅର୍ଥନୀତି, ରାଜନୀତି ଓ ସାମାଜିକ ପ୍ରଥା ଉପରେ ବିଶେଷ ପ୍ରଭାବ ପକାଇଥାଏ । ସାମନ୍ତବାଦ ଯୁଗରେ ରାଜାମାନେ ଥିଲେ ଭୂସ୍ୱାମୀ, ଅର୍ଥନୀତିର ସର୍ବସ୍ୱ ଓ ରାଜନୀତିର କର୍ଣ୍ଣଧାର ହୋଇ ପ୍ରଚଳିତ ସମାଜ ଉପରେ ନିଜର କର୍ତ୍ତୃତ୍ୱ ଜାହିର କରୁଥିଲେ । ସାମନ୍ତବାଦୀ ରାଜାମାନେ ମୋଗଲ ରାଜାମାନଙ୍କ ପରି ଭୋଗ ବିଳାସରେ ଅବସରରେ କାଳାତିପାତ କରୁଥିଲେ । ଏ ସମାଜର ସଂସ୍କୃତଜ୍ଞ ପଣ୍ଡିତମାନଙ୍କର ବିଶେଷ ସମ୍ମାନଥିଲା । ଲୋକମାନେ ରାଜକୃପା ଭିକ୍ଷା କରିବା ଗୌରବ ମନେ କରୁଥିଲେ । ରାଜାମାନେ ନିଜର ଗୌରବ ପ୍ରଚାର କରିବା ପାଇଁ ପଣ୍ଡିତ, କବି, ଓ କଳାକାରମାନଙ୍କୁ ପୃଷ୍ଠପୋଷକତା ଦେଉଥିଲେ । ସେମାନେ ରାଜାମାନଙ୍କର ମନୋରଞ୍ଜନ ପାଇଁ ସାଧାରଣରେ ଆଡ଼ମ୍ବରସାମ୍ୟକ କାବ୍ୟ, କବିତା, ସାହିତ୍ୟ, ଶିଳ୍ପ ଓ ସଙ୍ଗୀତ ସୃଷ୍ଟି କରୁଥିଲେ ।

ଧର୍ମ ନାମରେ ଜନସାଧାରଣଙ୍କୁ ଶୋଷଣ କରିବା ଗୋଟିଏ ପନ୍ଥାଥିଲା । ରାଜାମାନେ ଚଳନ୍ତି ବିଷ୍ଣୁ ବୋଲି ପ୍ରଚାର କରାଯାଉଥିଲା । ରାଜାମାନେ ନିଜର ଭୋଗଲାଳସା ମେଣ୍ଟାଇବା ପାଇଁ ବହୁ ରାଣୀ ରଖିବା ପ୍ରଥା ଥିଲା ।

ଧର୍ମ ଓ ନିଜର ଗୌରବ ରକ୍ଷା କରିବା ପାଇଁ ସେମାନେ ବହୁତ ମନ୍ଦିର ଲୋକମାନଙ୍କୁ କଷ୍ଟଣ ଶୋଷଣକରି ନିର୍ମାଣ କରୁଥିଲେ । ନିଜର କୀର୍ତ୍ତି ରକ୍ଷା କରିବା ପାଇଁ ମନ୍ଦିର କାନ୍ଥରେ ରାଜମନ୍ତ୍ରୀ, ଯୁଦ୍ଧ, ନର୍ତ୍ତକୀମାନଙ୍କର ଚିତ୍ର ରଖି ମନ୍ଦିର ମଧ୍ୟରେ ଦେବ ଆରାଧନା ପାଇଁ ମୂର୍ତ୍ତି ସ୍ଥାପନ କରୁଥିଲେ । ଏହାର ପୂଜା ପାଇଁ ମଧ୍ୟ ବହୁତ ଜମି ପ୍ରଦାନ କରୁଥିଲେ । ମନ୍ଦିର ମଧ୍ୟରେ ସୂର୍ଯ୍ୟ, ଶିବ, ବିଷ୍ଣୁ, ରାମ, କୃଷ୍ଣ ଇତ୍ୟାଦି ଦେବତାଙ୍କ ପୂଜା ହେଉଥିଲା ।

ଓଡ଼ିଶାରେ ସେହି ମଧ୍ୟ ଯୁଗରେ ସାମନ୍ତବାଦୀ ରାଜାମାନଙ୍କ ଅମଳରେ ବୈଷ୍ଣବ ଧର୍ମର ପ୍ରଚୁର ପ୍ରଚାର ଲାଭ କରିଥିଲା । କେତେକ କବି ରାଧାକୃଷ୍ଣ, ରାମସୀତାଙ୍କର ନିଚ୍ଛକ କଥା ବସ୍ତୁକୁ ପ୍ରେମଲୀଳାର ରୂପରେଖ ଦେବାପାଇଁ ବିଶେଷ ପ୍ରାଧାନ୍ୟ ଦେବାରେ ମନୋନିବେଶ କରିଥିଲେ । ଏହି କବିମାନଙ୍କ ମଧ୍ୟରେ ବୈଷ୍ଣବ ବା ଭକ୍ତ ନ ଥିବା ଯୋଗୁଁ ସେମାନଙ୍କର ରଚନାରେ ଆଧ୍ୟାତ୍ମିକତାର ପ୍ରବାହର ଅଭାବ ପରିଲକ୍ଷିତ ହେବା ସାଧାରଣ କଥା । ସେଥିପାଇଁ ଭକ୍ତିରସକୁ ଶୃଙ୍ଗାର ରସ ମଧ୍ୟରେ ରସସିକ୍ତ କରିବା ପାଇଁ ଭୁଲି ନାହାନ୍ତି ।

ସେହି ସମୟରେ ଲେଖାମାନଙ୍କରେ ଜନସାଧାରଣଙ୍କର ପ୍ରକୃତ ଛବି ମିଳେ ନାହିଁ । ମାତ୍ର ସମାଜର କେତେକ ଶିକ୍ଷ ରାଜପରିବାର ମଧ୍ୟରେ ସୀମିତ ରହିଥିଲା । ପୁରାଣ, ରାଜପରିବାରର ମିଳନ ଚିତ୍ର-ସମ୍ବଳିତ କଥାବସ୍ତୁ ~~ଥିଲା~~ ସାହିତ୍ୟର ଉପଜୀବ୍ୟ ଥିଲା ।

ତ୍ରୟୋଦଶ ଶତାବ୍ଦୀରେ ନରସିଂହ ଦେବଙ୍କ ଦ୍ୱାରା ଷୋହଳ ବର୍ଷର ରାଜସ୍ୱ ବ୍ୟୟରେ କୋଣାର୍କ ମନ୍ଦିର ତୟାର ହୋଇ ବିଶ୍ୱ-ବିଖ୍ୟାତ ହେଲେ ମଧ୍ୟ ସେହି ସ୍ଥାନର ବାଲୁକା ରାଶି କହେ ହେ

ଏଠାରେ ବାରବର୍ଷ ଯାଏଁ ବାରଶହ ବଢ଼େଇ ବଳୀ ହୀତଦାଯ ପରି ଖଟିଥିଲେ । ଏହା ନିର୍ମାଣ ସମୟରେ କେତେ ଯେ ତରୁଣୀ ସ୍ୱାମୀ ବିନା, କେତେ ଯେ ପିତା, ମାତା ପୁତ୍ର ବିନା ନୀରବ ଅଶ୍ରୁ ଢ଼ାଳି-ଥିଲେ । ପ୍ରଜାମାନଙ୍କର ମଙ୍ଗଳ କାମରେ ନ ଲାଗି ପ୍ରାପ୍ତ କୋଟି କୋଟି ଟଙ୍କା ମନ୍ଦିର ନିର୍ମାଣରେ ଶ୍ରାଦ୍ଧ କରାଯାଇଥିଲା ।

ଆଜିର ଓଡ଼ିଶା କଳିଙ୍ଗ, ଉଡ୍ର, ଉତ୍କଳ, କୋଶଳ ନାମରେ ବିଭକ୍ତ ହୋଇଥିଲା ।

ଓଡ଼ିଶାର ପୂର୍ବ ଗୌରବ ମହିମାମୟ ଥିଲା । ଏହା ଇତି-ହାସର ପୃଷ୍ଠାରେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିବ ।

ଗଙ୍ଗ ଓ ସୂର୍ଯ୍ୟବଂଶର ରାଜାମାନଙ୍କ ଶାସନ କାଳରେ ଓଡ଼ିଶା ବିଶେଷ ପ୍ରଗତି ହାସଲ କରିଥିଲା । ୧୧୩୫ ଖ୍ରୀ:ଅ: ବେଳକୁ ଚତୁ-ର୍ଦ୍ଦିଗରେ ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ସାମ୍ରାଜ୍ୟ ବିସ୍ତାର କରିବା ସଙ୍ଗେ ସାହିତ୍ୟ, ସଂସ୍କୃତି, କଳା ଓ ସ୍ଥାପତ୍ୟର ଚରମ ସୀମାରେ ଉପ-ନୀତ ହୋଇ ଶାନ୍ତି ବିରାଜିତ ଥିଲା । ଏହି ସାମ୍ରାଜ୍ୟର ରାଜଧାନୀ ପ୍ରଥମେ କଳିଙ୍ଗନଗର ଥିଲା । ପରେ ୧୧୩୫ ଖ୍ରୀ:ଅ:ରେ ଚୋଡ଼ଗଙ୍ଗ ଦେବ କଟକକୁ ତାଙ୍କ ରାଜଧାନୀ ସ୍ଥାନାନ୍ତରିତ କରିଥିଲେ । ୧୨୩୧ ଖ୍ରୀ:ଅ: ଠାରୁ ୧୨୩୮ ଖ୍ରୀ:ଅ: ମଧ୍ୟରେ ଭାରତ ବିଖ୍ୟାତ ପୁରୀ ମନ୍ଦିର ପୁରୁଷୋ-ତମ କ୍ଷେତ୍ରରେ ରାଜା ଚୋଡ଼ଗଙ୍ଗ ଦେବଙ୍କ ଦ୍ୱାରା ନିର୍ମିତ ହୋଇଥିଲା । ତାଙ୍କର ୭୦ବର୍ଷ ସମୟରେ ୧୧୪୭ ଖ୍ରୀ:ଅ:ରେ ମୃତ୍ୟୁ ହୋଇଥିଲା । ପରେ ୬ଜଣ ଗଙ୍ଗବଂଶୀୟ ରାଜା ରାଜତ୍ୱ କଲାପରେ ୧୨୩୮ ଖ୍ରୀ:ଅ:ରେ ନରସିଂହ ଦେବ ପ୍ରଥମ ରାଜା ହେଲେ । ସେ ପରାକ୍ରମଶାଳୀ ଯୋଦ୍ଧା ଥିଲେ । ତାଙ୍କର ସମୟରେ ଗୌରବ ବୃଦ୍ଧି ହୋଇଥିଲା । ୧୨୪୫ଖ୍ରୀ:ଅ

ଠାରୁ ୧୨୬୭ ଖ୍ରୀ:ଅ: ମଧ୍ୟରେ ନରସିଂହ ଦେବଙ୍କ ସମୟରେ ବିଶ୍ୱ-ବିଖ୍ୟାତ କୋଣାର୍କ ମନ୍ଦିର ନିର୍ମିତ କରି ଚିର ସ୍ମରଣୀୟ ହୋଇଛନ୍ତି । ଲିଙ୍ଗରାଜ ମନ୍ଦିର ତ୍ରୟୋଦଶ ଶତାବ୍ଦୀରେ ନିର୍ମାଣ ହୋଇଥିଲା ।

ଗଙ୍ଗବଂଶର ରାଜ୍ୟ ଶାସନ ପଞ୍ଚଦଶ ଶତାବ୍ଦୀର ପ୍ରଥମଭାଗ ପର୍ଯ୍ୟନ୍ତ ଥିଲା । ତାଙ୍କର ବଂଶଧରମାନେ ଦୁର୍ବଳ ହୋଇ ପଡ଼ିଲେ । ଚତୁର୍ଥ ଭାନୁଦେବଙ୍କ ମୃତ୍ୟୁପରେ କପିଳେନ୍ଦ୍ର ଦେବ (୧୪୩୫ ଖ୍ରୀ: ଅ: ଠାରୁ ୧୪୬୭ଖ୍ରୀ:ଅ:) ଉତ୍କଳ ସିଂହାସନ ଅଧିକାର କରି ସୂର୍ଯ୍ୟବଂଶ ପ୍ରତିଷ୍ଠା କରିଥିଲେ । ସେତେବେଳକୁ ଉତ୍କଳପ୍ରାନ୍ତ ବ୍ୟତୀତ ଭାରତବର୍ଷର ଚତୁର୍ଦ୍ଦିଗରେ ମୁସଲମାନ୍ ଶାସନ ପ୍ରଚଳିତ ହୋଇ ସାରିଥିଲା ।

ସୋମ ରାଜବଂଶ କୋଶଳରୁ, ଗଙ୍ଗ ରାଜବଂଶମାନେ ଆନ୍ଧ୍ର ଅଞ୍ଚଳରୁ ଆସିଥିଲେ । କେବଳ ସୂର୍ଯ୍ୟବଂଶର ରାଜାମାନେ ଓଡ଼ିଆ ଥିବାଯୋଗୁଁ ତାଙ୍କର ମାତୃଭାଷା ସାହିତ୍ୟ ପାଇଁ ଅଧିକ ଶ୍ରଦ୍ଧା ଥିଲା ।

ଓଡ଼ିଆ ସାହିତ୍ୟର ଆଦିକାଳକୁ 'କପିଳେନ୍ଦ୍ର ଯୁଗ' ନାମରେ ନାମିତ କରାଯାଇଥାଏ ।

**କପିଳେନ୍ଦ୍ର ଦେବ** (କପିଳ ରାଉତ)—ଜଣେ ପ୍ରଜାନୁରଞ୍ଜନ ଶାସକ ଓ ସାହିତ୍ୟ କଳାର ପୃଷ୍ଠପୋଷକ ଥିଲେ । ସେ ଯୋଦ୍ଧାଥିଲେ ଓ ବହୁ ରାଜ୍ୟ ଜୟକରି ଗୌଡ଼େଶ୍ୱର, ନବକୋଟି କର୍ଣ୍ଣାଟେଶ୍ୱର, କଲେ-ବର୍ଗେଶ୍ୱର ଉପାଧି ପାଇଥିଲେ । ଏହାଙ୍କର ସାମ୍ରାଜ୍ୟ ଗଙ୍ଗା ଠାରୁ କାବେରୀ ପର୍ଯ୍ୟନ୍ତ ଥିଲା । କବି ହିସାବରେ ସେ 'ଅମର ଗୀତ' ଓଡ଼ିଆ ସଙ୍ଗୀତ 'ପର୍ଶୁରାମ ବିଜୟ' ନାଟକ ସଂସ୍କୃତରେ ଲେଖିଥିଲେ । ତାଙ୍କର ସମସାମୟିକ ଥିଲେ ଓଡ଼ିଆ ମହାଭାରତର ରଚୟିତା ଶାରଳା ଦାସ ।

ନାରାୟଣ ମିଶ୍ର, ଜଟେଶ୍ୱର ମିଶ୍ର, ନୃସିଂହ ବାଜପେୟୀ ଇତ୍ୟାଦି ପଣ୍ଡିତମାନେ ତାଙ୍କର ରାଜସଭାକୁ ଅଳଂକୃତ କରିଥିଲେ । କପିଳେନ୍ଦ୍ର ଦେବଙ୍କର ୧୪୬୭ ଖ୍ରୀ:ଅ:ରେ କୃଷ୍ଣାନଦୀ କୂଳରେ ମୃତ୍ୟୁହେଲା ।

**ପୁରୁଷୋତ୍ତମ ଦେବ** (କପିଳେନ୍ଦ୍ର ଦେବଙ୍କ ପୁତ୍ର) ୧୪୬୭ ଖ୍ରୀ:ଅ: ଠାରୁ ୧୪୯୭ ଖ୍ରୀ:ଅ: ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । କାଞ୍ଚି କାବେରୀ ଯୁଦ୍ଧରେ ସାଳ୍ୱ ନରସିଂହଙ୍କୁ ପରାସ୍ତ କରି ତାଙ୍କ କନ୍ୟା ପଦ୍ମାବତୀଙ୍କୁ ବିବାହ କରିଥିଲେ । ସେ ବିଜୟନଗରର ରାଜଧାନୀ ଲୁଣ୍ଠନ କରି ରତ୍ନ-ସିଂହାସନ, ଗଣେଶ ମୂର୍ତ୍ତି, ଗୋଟିଏ ଗୋପାଳ ମୂର୍ତ୍ତି ନେଇ ଆସିଥିଲେ । ଉକ୍ତ ସିଂହାସନରେ ସେହିଦିନ ଠାରୁ ଜଗନ୍ନାଥ ବିଜେ କରୁଛନ୍ତି, ଗଣେଶ ମୂର୍ତ୍ତିଟି ମନ୍ଦିର ବେଢ଼ାରେ ପୂଜା ପାଉଅଛି, ଗୋପାଳ ମୂର୍ତ୍ତିଟି ସାକ୍ଷୀଗୋପାଳରେ ପ୍ରତିଷ୍ଠିତ ହୋଇ ପୂଜାପାଉଛି । ସେ ୩୦ ବର୍ଷ କାଳ ରାଜତ୍ୱ କରି ୧୪୯୭ ଖ୍ରୀ:ଅ:ରେ ମୃତ୍ୟୁ ବରଣ କରିଥିଲେ । ତାଙ୍କର ସାମ୍ରାଜ୍ୟ କୃଷ୍ଣାନଦୀ ପର୍ଯ୍ୟନ୍ତ ବିସ୍ତାରଲାଭ କରିଥିଲା । ସେ ଗୁଣୀ ଓ ପଣ୍ଡିତମାନଙ୍କୁ ଆଦର କରୁଥିଲେ । ଶେଷ ନାମକ ଜଣେ ବିଖ୍ୟାତ ପଣ୍ଡିତ ତାଙ୍କ ରାଜସଭା ଅଳଂକୃତ କରିଥିଲେ । ସେ ନାମ-ମାଳିକା, ମୁକ୍ତିଚିନ୍ତାମଣି, ଅଭିନବ ବେଣୀ ସଂହାର, କୃଷ୍ଣଭକ୍ତି କଳ୍ପଦ୍ରୁମ, ଅଭିନବ ଗୀତ ଗୋବିନ୍ଦ ଓ ତ୍ରିକାଣ୍ଡକୋଷ ଅଭିଧାନ ମଧ୍ୟ ରଚନା କରିଥିଲେ । ସେ ବୈଷ୍ଣବ ଥିଲେ ।

**ପ୍ରତାପରୁଦ୍ର ଦେବ**. ପୁରୁଷୋତ୍ତମଦେବଙ୍କ ପରେ(୧୪୯୭ଖ୍ରୀ:ଅ:ଠାରୁ ୧୫୩୩ ଖ୍ରୀ:ଅ:) ପର୍ଯ୍ୟନ୍ତ ରାଜାହେଲେ । ତାଙ୍କର ୪୩ ବର୍ଷ ବୟସରେ ୧୫୩୪ ଖ୍ରୀ:ଅ:ରେ ମୃତ୍ୟୁହେଲା । ତାଙ୍କ ସମୟରେ ଉତ୍କଳ ସାମ୍ରାଜ୍ୟର ପତନ, ସୂର୍ଯ୍ୟବଂଶର ଅବସାନ ତଥା ଭୋଇ ବଂଶର ସ୍ଥାପନ ହେଲା । ଭୋଇବଂଶର ସେନାପତି ତେଲଙ୍ଗା ମୁକୁନ୍ଦଦେବଙ୍କ ଅମଳରେ ୧୫୬୮

ଖ୍ରୀ:ଅ:ରେ ଓଡ଼ିଶା ସ୍ୱାଧିନତା ହରାଇଲା । ପ୍ରତାପ ରୁଦ୍ରଦେବଙ୍କ ସମୟରେ କବି ଊର୍ଦ୍ଧ୍ୱ ମ 'ଭକ୍ତି ଭାଗବତ' ଗ୍ରନ୍ଥ, ରାମାନନ୍ଦ 'ଶ୍ରୀଜଗନ୍ନାଥ ବଲ୍ଲଭ' ନାଟକ, ବାସୁଦେବ 'ଅଦ୍ୱୈତ ମାର୍କଣ୍ଡ','କର୍ଣ୍ଣପୁର 'ଚୈତନ୍ୟ ଚନ୍ଦ୍ରୋଦୟ', ମାର୍କଣ୍ଡେୟ 'ଦଶଗ୍ରୀବ ବଧ', ରାୟ ଚମ୍ପତି 'ପଦାମୃତ ସମୁଦ୍ର' ଲେଖିଥିଲେ । ନିଜେ ପ୍ରତାପରୁଦ୍ର ଦେବ 'ସରସ୍ୱତୀ ବିଳାସ' ଧର୍ମଶାସ୍ତ୍ର ରଚନା କରିଥିଲେ ।

ଚୈତନ୍ୟଦେବ ତାଙ୍କର ସମସାମୟିକ ହୋଇ ୧୮.ବର୍ଷ କାଳ ପୁରୀରେ ବୈଷ୍ଣବ ଧର୍ମ ପ୍ରଚାର କରିଥିଲେ । ଚୈତନ୍ୟଙ୍କ ସମୟରେ ତାଙ୍କର ପାଞ୍ଚଜଣ ଶିଷ୍ୟ ଜଗନ୍ନାଥ, ବଳରାମ, ଅଚ୍ୟୁତାନନ୍ଦ ଅନନ୍ତ,ଯଶୋବନ୍ତ ଦ୍ୱାରା ଓଡ଼ିଆ ସାହିତ୍ୟର ବିଶେଷ ଉନ୍ନତି ଘଟିଥିଲା ।

ଘୁମୁସର ପ୍ରତିଷ୍ଠାତା ରଘୁନାଥ ଭଞ୍ଜଙ୍କ ଠାରୁ ଧନଞ୍ଜୟ ଭଞ୍ଜଙ୍କ ପର୍ଯ୍ୟନ୍ତ ଅଣେଇଶ ଜଣ ରାଜା ଏହା ମଧ୍ୟରେ ରାଜତ୍ୱ କରିଥିଲେ । ଏହାଙ୍କ ସମୟରେ ଓଡ଼ିଶାରେ ଭୋଇ ବଂଶର ରାଜାମାନେ ରାଜତ୍ୱ କରୁଥିଲେ ।

କବି ସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ ପିତାମହ ହେଉଛନ୍ତି ଧନଞ୍ଜୟ ଭଞ୍ଜ । ସେ ପ୍ରତାପଶାଳୀ ଥିବାଯୋଗୁଁ ପ୍ରତାପ ଧନଞ୍ଜୟ ଭଞ୍ଜ ବୋଲି କହନ୍ତି । ସେ ୧୬୧୧ ଖ୍ରୀ:ଅ:ରେ ଜନ୍ମ ଗ୍ରହଣ କରି ୧୬୩୦ ଖ୍ରୀ:ଅ:ରେ ଯୁବରାଜ ପଦରେ ଅଧିଷ୍ଠିତ ହୋଇ ୧୬୩୭ ଖ୍ରୀ:ଅ: ଠାରୁ ୧୭୦୧ ଖ୍ରୀ:ଅ: ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ ।

ସେ ଥିଲେ ଗୋପିନାଥ ଭଞ୍ଜଙ୍କର ଜ୍ୟେଷ୍ଠପୁତ୍ର । ପିତାଙ୍କ ଠାରୁ ରାଜ୍ୟ ପରିଚାଳନା ଓ ପ୍ରଶାସନିକ କୌଶଳ ଶିକ୍ଷା ପାଇଥିଲେ ।

ମାତା ରତ୍ନମଞ୍ଜରୀଙ୍କ ଠାରୁ ବହୁତ ପୁରାଣ, ବୀରମାନଙ୍କର ବୀରତ୍ବ ଗାଥା ଶୁଣିବାକୁ ସୁଯୋଗ ପାଇଥିଲେ। ଯାହାକି ତାଙ୍କର ପରବର୍ତ୍ତୀ କର୍ମମୟ ଜୀବନରେ ବହୁତ ସାହାଯ୍ୟ କରିଥିଲା। ସେ ବିଦ୍ୟା ଶିକ୍ଷା ସଙ୍ଗେ ସଙ୍ଗେ ଶିକାର ଓ ଅସ୍ତ୍ରଶସ୍ତ୍ର ଶିକ୍ଷାରେ ପାରଦର୍ଶିତା ଅର୍ଜନ କରିଥିଲେ।

ସଂସ୍କୃତ ସମସ୍ତ ଭାରତୀୟ ଭାଷାର ଜନନୀ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ। ତାଙ୍କର ସଂସ୍କୃତରେ ଗଭୀର ପ୍ରବେଶ ଥିଲା। ସେ କାବ୍ୟ, ଦର୍ଶନ, ଅମରକୋଷ, ବ୍ୟାକରଣ, ରାଜନୀତି, ଅଳଙ୍କାର, ତର୍କ, ନ୍ୟାୟ, ଧନୁର୍ବେଦ, ଆୟୁର୍ବେଦ, ଜ୍ୟୋତିଷ ଶାସ୍ତ୍ର, କାମଶାସ୍ତ୍ର, ସଙ୍ଗୀତ ପ୍ରଭୃତି ଆୟତ୍ତ କରିଥିଲେ। ସଙ୍ଗୀତର ଉନ୍ନତି ପାଇଁ ସେ ଗୁଣୀ ସଙ୍ଗୀତଜ୍ଞ ଓ ନୃତ୍ୟଗୀତ ପାଇଁ ଗଣିକାମାନଙ୍କୁ ପରିପୋଷଣ କରିଥିଲେ। ରାଜଦରବାରରେ ପଣ୍ଡିତମାନଙ୍କୁ ସ୍ନେହ ସମ୍ମାନ ପ୍ରଦର୍ଶନ କରୁଥିଲେ। ସେମାନଙ୍କ ସହିତ ବିଦ୍ୟାଚର୍ଚ୍ଚା ଓ କାବ୍ୟ ରଚନାରେ ସଦା ରତ ରହୁଥିଲେ। ସେ ନିଜେ ବି ଜଣେ ଦେବୀ ସାଧକ ଥିଲେ।

ତାଙ୍କ ସମୟରେ ଓଡ଼ିଆ ଭାଷାର ବିଶେଷ ଉନ୍ନତି ହୋଇ ଥିଲା। ସେ ମଧ୍ୟ ଜଣେ ହାସ୍ୟ ରସିକ ଥିଲେ। ତାଙ୍କର ରଚିତ ରଚନା ହେଉଛି– 'ରଘୁନାଥ ବିଳାସ', 'ଅନଙ୍ଗ ରେଖା', 'ମଦନ-ମଞ୍ଜରୀ', 'ଇଚ୍ଛାବତୀ', 'ଶାଳହୋଳ', 'ଚଉପଦୀ ଭୂଷଣ', 'ନୂପୁର-ସୁନ୍ଦରୀ' 'ରତ୍ନ ମଞ୍ଜରୀ' ଓ 'ରାମ ଚରିତ'। ସେଥିପାଇଁ ସେ ରାଜକବି ବୋଲି ପରିଚିତ।

ଉପେନ୍ଦ୍ର ଭଞ୍ଜଙ୍କୁ ତାଙ୍କ ପିତାମହଙ୍କ ଲେଖା କବି ହେବା ପାଇଁ

ପ୍ରେରଣା ଦେଇଥିଲେ । ପିତାମହ ତାଙ୍କର ପଥ ପ୍ରଦର୍ଶକ ଓ ଆଦର୍ଶ ଥିଲେ ।

ତାଙ୍କର ବଂଶଧରମାନଙ୍କ ଭିତରେ ଗୋପାଳ ଭଞ୍ଜ, ବଳଭଦ୍ର ଭଞ୍ଜ, ହିମ୍ବତମ ଭଞ୍ଜ, ରଘୁନାଥ ଭଞ୍ଜ, ଦେଓ ଭଞ୍ଜ, ପଦ୍ମନାଭ ଭଞ୍ଜ, ଫକୀର ଭଞ୍ଜ, ନୀଳକଣ୍ଠ ଭଞ୍ଜ, ଗୋବିନ୍ଦ ଭଞ୍ଜ, ଯୁଗ ଭଞ୍ଜ ଇତ୍ୟାଦି କବି ଥିବାର ଜଣାଯାଏ ।

ଷାଠିଏ ହଜାର ଟଙ୍କା ବ୍ୟୟରେ ସେ ଗୋଟିଏ ଜଗତି ନିର୍ମାଣ କରିଥିଲେ । ସତୁରି ହଜାର ଟଙ୍କା ଖର୍ଚ୍ଚକରି କୁଲାଡ଼ଗଡ଼ର ଉନ୍ନତି କରିଥିଲେ । ସୈନ୍ୟବାହିନୀକୁ ଇନାମ ଜମି ଖଞ୍ଜି, ଶୃଙ୍ଖଳିତ କରି ଦୃଢ଼ୀଭୂତ କରିଥିଲେ । କୁଲାଡଗଡ଼ର ବାଗ୍‌ଦେବୀ ମନ୍ଦିର, ବରଙ୍ଗା ପଞ୍ଚଶିଳା ମନ୍ଦିର, ଲୋପାଶିଳା ମନ୍ଦିର ତାଙ୍କର ପ୍ରଧାନ କୀର୍ତ୍ତି । ଓଡ଼ଗାଁ ରଘୁନାଥ ମନ୍ଦିର, ନେଟଙ୍ଗା ରଘୁନାଥ ମଠ, ଆସିକା ଖମ୍ବେଶ୍ୱରୀ, ବୁଗୁଡ଼ା ବିରଞ୍ଚିନାରାୟଣ ମନ୍ଦିର ଭଞ୍ଜବଂଶର କୀର୍ତ୍ତିର ମୂକସାକ୍ଷୀ ରୂପେ ଦଣ୍ଡାୟମାନ ।

ଧନଞ୍ଜୟ ଭଞ୍ଜ କୃଷି, ଶିଳ୍ପ, ହାଟ, ବାଟ, ଘାଟର ଉନ୍ନତି ପାଇଁ ବିଶେଷ ଧ୍ୟାନ ଦେଉଥିଲେ । କୃଷିର ଉନ୍ନତି ପାଇଁ ବହୁତ ଜଳାଶୟମାନ ଖୋଳାଇଥିଲେ ।

ତାଙ୍କର ଗୃହଗୋଟି ଭଲ । ସେ ଜଗନ୍ନାଥ ଭଞ୍ଜ ମଙ୍ଗରାଜଙ୍କୁ ଜଗନ୍ନାଥ ପ୍ରସାଦ, ହରିଶରଣ ଭଞ୍ଜଙ୍କୁ ବୁଗୁଡ଼ା ଓ ବାଲିପଦର ଶାସନ ଭାର ଦେଇଥିଲେ । ସଦାଶିବ ଭଞ୍ଜଙ୍କୁ ଜ୍ୟେଷ୍ଠରାୟ ଓ ଗୋବିନ୍ଦ ଭଞ୍ଜଙ୍କୁ ଆଟବିଜ ପଦରେ ଅଧିଷ୍ଠିତ କରିଥିଲେ ।

ମୁକୁନ୍ଦ ଦେବ ବିଶ୍ୱାସଙ୍କ ପୁତ୍ର କେନା ହରିସିଂହ ୧୬୯୨ ଖ୍ରୀ:ଅ:ରେ ରାଜା ହୋଇ ୧୬୯୩ ଖ୍ରୀ:ଅ:ରେ ଧନଞ୍ଜୟ ଭଞ୍ଜଙ୍କର କନ୍ୟାଙ୍କୁ ବିବାହ କରିଥିଲେ ।

୧୬୪୬ ଖ୍ରୀ: ଅ:ରେ ଧରାକୋଟ ରାଜାଙ୍କ ସହିତ ଯୁଦ୍ଧ କରିଥିଲେ । ଧରାକୋଟ ସପକ୍ଷରେ ବଡ଼ଗଡ଼, ଶେରଗଡ଼, ରଣବା, କରଡ଼ା ରାଜାମାନେ ଥିଲେ । ଗୋବିନ୍ଦ ଭଞ୍ଜଙ୍କର ରଣ କୌଶଳରେ ଧରାକୋଟ ପରିଶେଷରେ ପରାସ୍ତ ହୋଇ ସନ୍ଧି ସ୍ଥାପନ କରି, ରାଜ୍ୟର କେତେକାଂଶ ପ୍ରଦାନ କରିଥିଲେ । କିମ୍ବଦନ୍ତୀରୁ ଜଣାଯାଏ ଯେ ସିଙ୍ଗିମର୍ଦ୍ଦନ ଠାରେ ଏହି ସନ୍ଧି ବିଗ୍ରହ ସ୍ଥାପନ ହୋଇଥିଲା । ସେହି ସମୟରେ ଆସିକାଠାରେ 'ଖମ୍ବେଶ୍ୱରୀ' ଦେବୀଙ୍କ ପ୍ରତିଷ୍ଠା କରିଥିଲେ । ଯୁଦ୍ଧପରେ ବୈବାହିକ ସୂତ୍ରରେ ଦୁହେଁ ବନ୍ଧୁ ହୋଇଥିଲେ । ୧୬୪୮ ଖ୍ରୀ:ଅ:ରେ ଜଗଦେବ ବଂଶକୁ ପରାସ୍ତ କରି ଗୁମୁସରରେ ମିଶାଇଥିଲେ ।

୧୫୪୦ ଖ୍ରୀ: ଅ:ରେ ପ୍ରତାପରୁଦ୍ରଦେବଙ୍କ ମୃତ୍ୟୁ ହୁଏ । ତାଙ୍କର ଆଠ ସେନାପତି ବେନୁ ଷେତ୍ରବର ସିଂହଙ୍କ ପୁତ୍ର ଯଦୁନାଥ ସିଂହ ଗୁମୁସର ରାଜାଙ୍କଠାରୁ ଆଠଗଡ଼ର ଆଠଟି ଗଡ଼ ପାଇଁ ରାଜତ୍ୱ କରିଥିଲେ ।

ଧନଞ୍ଜୟ ଭଞ୍ଜ ସାନଭାଇ ଗୋବିନ୍ଦ ଭଞ୍ଜଙ୍କୁ ଆଠଗଡ଼ରୂପେ ରାଜ୍ୟର ଶାସନଭାର ଅର୍ପଣ କରି ସାହିତ୍ୟ ଚର୍ଚ୍ଚାରେ ମଗ୍ନ ହୋଇ ଭୋଗବିଳାସରେ କାଳାତିପାତ କରୁଥିଲେ । ଧନଞ୍ଜୟ ଭଞ୍ଜ ନଅଗୋଟି ରାଜକନ୍ୟାଙ୍କର ପାଣିଗ୍ରହଣ କରିଥିଲେ ଯଥା:-ନୟାଗଡ଼ର ରାଜକନ୍ୟା-ମଣ୍ଡାଦେଇ, ଖଲ୍ଲିକୋଟ-କୁମାରୀ, ବଡ଼ମ୍ବା-ଇନ୍ଦ୍ରାବତୀ, ସୁରଙ୍ଗୀ-ଶଶୀରେଖା, ଖେମଣ୍ଡୀ-ଶୋଭବତୀ, କୋଶଳ-ଶଶଲେଖା, ପୁରୀ-ମୁକ୍ତାବତୀ ।

ଏହିପରି ସଂପର୍କ ସ୍ଥାପନ ଦ୍ୱାରା ସେ ବିଶେଷ ଶକ୍ତିଶାଳୀ ହୋଇ ଥିଲେ ଓ ବାହ୍ୟ ଶତ୍ରୁ ଆକ୍ରମଣର ତିଳେମାତ୍ର ଆଶଙ୍କା ନ ଥିଲା । ଏମାନଙ୍କ ଔରସରୁ ନଅଗୋଟି ପୁତ୍ର ଥିଲେ । ଶେଷରେ ଏହି ପୁତ୍ର-ମାନଙ୍କର ମଧ୍ୟ ସିଂହାସନ ପାଇଁ ଭିତ୍ତି ବିବାଦର ବୀଜ ବୁଣା-ହୋଇଥିଲା । ଯାହାଫଳରେ ସ୍ତ୍ରୈଣଗୁଣ ଯୋଗୁଁ ସେ ଜୀବନର ସାୟାହ୍ନରେ ବହୁ ଦୁଃଖ ଭୋଗିଥିଲେ ।

ଧନଞ୍ଜୟ ଭଞ୍ଜଙ୍କ ପରେ ବଡ ପାଟରାଣୀଙ୍କ ପୁତ୍ର ନ୍ୟାୟ ଅନୁସାରେ ଗଙ୍ଗାଧର ରାଜା ହେବା କଥା ନିଜେ ଇଚ୍ଛାପୋଷଣ କରି-ଥିଲେ । ମାତ୍ର ତାଙ୍କର ସୁଦୀର୍ଘକାଳ ରାଜତ୍ୱ ଯୋଗୁଁ ୧୭୦୧ ଖ୍ରୀ:ଅ: ପର୍ଯ୍ୟନ୍ତ ସେ ସୁଯୋଗ ଯଥା ସମୟରେ ପାଇ ପାରିବାର ଆଶା ଦେଖି ପାରୁନଥିଲେ ।

ମଣ୍ଡାଦେଇ (ହାରଦେଇ) ଥିଲେ ନୟାଗଡ ରାଜକନ୍ୟା ଓ ଧନଞ୍ଜୟ ଭଞ୍ଜଙ୍କର ପ୍ରିୟତମା ହିଁୟା ପାଟରାଣୀ । ସେ ଥିଲେ ପତିବ୍ରତା, ପଣ୍ଡିତା, ରାଜନୀତି ନିପୁଣା, ବୁଦ୍ଧିମତୀ, ରସିକା ଓ ଅନିନ୍ଦ୍ୟ ସୁନ୍ଦରୀ । ସ୍ନେହ ମମତା ସେବା ଫଳରେ ରାଜାଙ୍କୁ ପ୍ରେମ ଡୋରରେ ବାନ୍ଧି ରଖିଥିଲେ । ତେଣୁ ରାଜା ତାଙ୍କୁ ଅତ୍ୟନ୍ତ ସ୍ନେହ କରୁଥିଲେ । ରାଜାଙ୍କ ଉପରେ ମଣ୍ଡାଦେଇଙ୍କର ଏତେ ପ୍ରଭାବ ଥିଲା ଯେ ସେ ନିଜେ ସମୟେ ସମୟେ ରାଜ୍ୟ କାର୍ଯ୍ୟରେ ହସ୍ତକ୍ଷେପ କରୁଥିଲେ । ରାଜକୋଷର ଚାବି ତାଙ୍କ ପାଖରେ ରହୁଥିଲା । ଏହି ସୁବିଧା ସୁଯୋଗର ପ୍ରଶୟ ପାଇ ସେ ସମସ୍ତ କ୍ଷମତାକୁ ହାତ ମୁଠାରେ ରଖିବା ପାଇଁ ବହୁତ ମୁଖିଆ ଲୋକଙ୍କୁ ନିଜର୍ କରାୟତ୍ତ କରି ନିଜର ଭବିଷ୍ୟତ ଲକ୍ଷ୍ୟସାଧନ ପାଇଁ ପ୍ରସ୍ତୁତ ହୋଇଥିଲେ । ତେଣୁ ମଣ୍ଡାଦେଇ, ଧନଞ୍ଜୟଙ୍କ

ପରେ ନିଜ ପୁତ୍ର ନୀଳକଣ୍ଠ ଭଞ୍ଜଙ୍କୁ ରାଜାକରି ନିଜେ ରାଜମାତା ହୋଇ କ୍ଷମତାକୁ ହାତରେ ରଖିବା ପାଇଁ ବିଶେଷ ସଜାଗ ଥିଲେ । ଧନଞ୍ଜୟ ଭଞ୍ଜ ୧୭୦୧ ଖ୍ରୀ:ଅ: ପର୍ଯ୍ୟନ୍ତ ସୁଦୀର୍ଘକାଳ ରାଜା ହୋଇ ରହିବାରୁ ନୀଳକଣ୍ଠ ଭଞ୍ଜ ମଧ୍ୟ ରାଜା ହେବାର ଆଶା କ୍ଷୀଣ ହୋଇ ଆସୁଥିଲା ।

ଧନଞ୍ଜୟ ଭଞ୍ଜଙ୍କର ୧୭୦୧ଖ୍ରୀ:ଅ:ରେ ମୃତ୍ୟୁହେଲା । ଅନେକ ଲେଖିଛନ୍ତି ଯେ ଏହିପରି ପରିସ୍ଥିତିରେ ମଣ୍ଡାଦେଈ ନିମ୍ନ ହାତରେ ଏକାଦଶୀ ଦିନ ପକୁଳିପିଠା ଓ କ୍ଷୀରରେ ବିଷ ପ୍ରୟୋଗ କରି ତାଙ୍କୁ ମୃତ୍ୟୁ ମୁଖକୁ ଠେଲି ଦେଇଥିଲେ । ମାତ୍ର ତାହା ସତ୍ୟର ଅପଳାପ । କାରଣ ସେ ଥିଲେ ପତିବ୍ରତା ପଣ୍ଡିତା ଓ ଧର୍ମପରାୟଣା ।

ଆଗରୁ ମଣ୍ଡାଦେଈଙ୍କ ଷଡ଼ଯନ୍ତ୍ରରେ ଶିକାର ହୋଇ ଗୋବିନ୍ଦ ଭଞ୍ଜ, ହରି ଭଞ୍ଜ ଦେଶରୁ ବିତାଡ଼ିତ ହୋଇଥିଲେ । ରାଜାଙ୍କର ମୃତ୍ୟୁ ପରେ ନୀଳକଣ୍ଠ ଭଞ୍ଜ, ଯୁବରାଜ ଗଙ୍ଗାଧର ଓ ତାଙ୍କ ପୁତ୍ର ଶତ୍ରୁଞ୍ଜୟ ଭଞ୍ଜଙ୍କୁ ଦନ୍ତାଦସ୍ୟୁ ହାତରେ ଅମାନୁଷିକ ଭାବେ ହତ୍ୟାକରି ରାଜ୍ୟକୁ ନିଷ୍କଣ୍ଟକ କରି ନିଜେ ନୀଳକଣ୍ଠ ଭଞ୍ଜ ରାଜାହେଲେ ।

୧୭୦୩ ଖ୍ରୀ:ଅ:ରେ ପ୍ରଜା ବିଦ୍ରୋହ ଫଳରେ ଉପେନ୍ଦ୍ର ଭଞ୍ଜଙ୍କ ପିତା ନୀଳକଣ୍ଠ ଭଞ୍ଜ ରାଜ୍ୟ ଛାଡ଼ି ପଳାୟନ କଲେ ।

ପୂର୍ବେ ଗୁମୁସର ବୌଦ୍ଧରାଜ୍ୟର ଅନ୍ତର୍ଗତ ଥିଲା । କଥିତ ଅଛି ଯେ କେନ୍ଦୁଝରରେ ଭଞ୍ଜବଂଶ ରାଜାମାନେ ରାଜତ୍ୱ କରୁଥିଲେ । ରାଜାଙ୍କର ସାନଭାଇ ଦେବୀଦାସ ଭଞ୍ଜ ବିମୁଖ ହୋଇ ସେଠାରୁ ବାହାରି ଆସି ତାଙ୍କର ଦୁଇପୁତ୍ର ରଘୁନାଥ ଭଞ୍ଜ ଓ ବନମାଳୀ ଭଞ୍ଜଙ୍କ ସହ

ବୌଦ ବ୍ରାହ୍ମଣ ରାଜା ସିଦ୍ଧବନ୍ଧୁ ନନ୍ଦଙ୍କର ଆଶ୍ରୟ ନେଲେ । ତାଙ୍କର ପୁତ୍ର ନ ଥିବାରୁ ଏହି ଦୁଇଭାଇଙ୍କୁ ପୁତ୍ରରୂପେ ପାଳନକଲେ । ମାତ୍ର କିଛିଦିନ ପରେ ସିଦ୍ଧବନ୍ଧୁ ନନ୍ଦଙ୍କର ଗୋଟିଏ ପୁତ୍ର ଜାତହେଲା । ମାତ୍ର ତାଙ୍କର ଯୁବକ ସମୟରେ ଉକ୍ତ ଭଞ୍ଜ ଭ୍ରାତୃଦ୍ୱୟ ନନ୍ଦ ଯୁବରାଜଙ୍କୁ ଷଡଯନ୍ତ୍ର କରି ଶିକାର ଛଳରେ ବଣକୁ ନେଇ ହାତୀ ଉପରୁ ତଳକୁ ପେଲଦେବା ଫଳରେ ରାଜକୁମାରଙ୍କର ସେଠାରେ ମୃତ୍ୟୁହେଲା । ସିଦ୍ଧବନ୍ଧୁ ନନ୍ଦଙ୍କର ମୃତ୍ୟୁପରେ ରଘୁନାଥ ଭଞ୍ଜ ବୌଦରେ ରାଜା ରାଜାହେଲେ । କେତେଦିନ ପରେ ଗୁମୁସର ଆଦିମ ଅଧିବାସୀମାନେ ବିଦ୍ରୋହ କଲେ । ମାତ୍ର ରଘୁନାଥ ଭଞ୍ଜ ବିଦ୍ରୋହ ଦମନ କରି ସମଗ୍ର ଗୁମୁସର ରାଜ୍ୟକୁ ନିଜ ଅଧିନକୁ ଆଣିଥିଲେ । ସେହି ଦିନଠାରୁ ଖିଞ୍ଜାଲି ନାମ ଲୋପ ହୋଇ ଗୁମୁସର ହେଲା । ୮୯୨ ଖ୍ରୀ:ଅ:ରେ ଗୁମୁସରଠାରେ ଗଡ ସ୍ଥାପନ ହେଲା ।

କିମ୍ବଦନ୍ତୀ କହେ ଯେ ବୌଦ ରାଜା ସିଦ୍ଧବନ୍ଧୁ ନନ୍ଦଙ୍କ ପ୍ରିୟ ପୁତ୍ରକୁ ଷଡ଼ଯନ୍ତ୍ରକରି ଉକ୍ତ ଭଞ୍ଜବଂଶର ରାଜାମାନେ ମୃତ୍ୟୁମୁଖକୁ ପେଲି ଦେଇଥିବା ଯୋଗୁଁ ସେ ବ୍ୟଥିତ ହୋଇ ଭଞ୍ଜ ରାଜବଂଶ ଉପରେ ଅଭିଶାପ ଦେଇଥିଲେ ଯେ ତୁମର ବଂଶ ମଧ୍ୟ ଏହିପରି ବିଶ୍ୱାସ-ଘାତକତା ଓ ଷଡ଼ଯନ୍ତ୍ର ଦ୍ୱାରା ଲୋପ ପାଇବ ।

—)o(—

Dedication—

# କବିସମ୍ରାଟ ଉପେନ୍ଦ୍ର ଭଞ୍ଜ

ସରସ, ସମୃଦ୍ଧ ସାହିତ୍ୟ ସୃଷ୍ଟି ପାଇଁ ସନ୍ଦେହହୀନ ଭାବେ 'ଭଞ୍ଜ' କହିଲେ ଉପେନ୍ଦ୍ର ଭଞ୍ଜଙ୍କୁ କେବଳ ବୁଝାଏ । ସେ ଘୁମୁସର ରାଜବଂଶରେ ଜନ୍ମ ଗ୍ରହଣ କରି ରାଜା ହୋଇ ରାଜତ୍ୱ କରିପାରିନଥିଲେ ମଧ୍ୟ ଉତ୍କଳ ଉପବନରେ ସାହିତ୍ୟ-ସଙ୍ଗୀତ-ସିଂହାସନର ସମ୍ରାଟ ହୋଇ ପାରିଛନ୍ତି । ତାଙ୍କର ସାରସ୍ୱତ ଭଣ୍ଡାରକୁ ସଂଖ୍ୟାଧିକ ସମୁଜ୍ଜ୍ୱଳ ରତ୍ନର ସମ୍ଭାର ଦାନଗୁଡ଼ିକ ଜନସାଧାରଣ ପାଇଁ ସଂରକ୍ଷିତ ।

ଗାଏ ତୁମ ଗୀତ ସଭାରେ ପଣ୍ଡିତ
ପଥେ ପାନ୍ଥ ହୃଷ୍ଟମନା,
ଅନ୍ତଃପୁରେ ଯୋଷା ବଲେ ବୋଲେ ଚଷା
ନୃତ୍ୟ ରଙ୍ଗେ ବାରାଙ୍ଗନା

(ଗୋପବନ୍ଧୁ)

କଥିତ ଅଛି ଯେ ପୂର୍ବେ ଘୁମୁସର ବୌଦ୍ଧ ରାଜ୍ୟର ଅନ୍ତର୍ଗତ ଥିଲା । ରଘୁନାଥ ଭଞ୍ଜ, ଭଞ୍ଜ ବଂଶର ସ୍ଥାପୟିତା ରୂପେ ୮୩୨ ଖ୍ରୀ:ଅ:ରେ ଘୁମୁସର ଭୂଖଣ୍ଡରେ ରାଜଧାନୀ ସ୍ଥାପନ କରି ନିଜକୁ ରାଜାରୂପେ ପ୍ରତିଷ୍ଠା କରି ୮୩୨ ଠାରୁ ୮୪୨ ଖ୍ରୀ:ଅ: ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । ପ୍ରତାପ ଭଞ୍ଜ ଘୁମୁସରର ଦ୍ୱାବିଂଶତମ ରାଜା । ସେ ୧୧୯୦ ଠାରୁ ୧୨୨୦ ଖ୍ରୀ:ଅ: ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । ପ୍ରଥମେ

କୁଳାଡ଼ ଗଡ଼କୁ ରାଜଧାନୀ କରି ଘୁମୁସରଠାରୁ ସ୍ଥାନାନ୍ତରିତ କରିଥିଲେ । କୁଳାଡ଼ର ପ୍ରାକୃତିକ ବିଭବ ଭଞ୍ଜବଂଶୀୟ କବିମାନଙ୍କୁ ନୂତନ ପ୍ରେରଣା ଯୋଗାଇଥିଲା ।

କବିଙ୍କର ପିତାମହ ଧନଞ୍ଜୟ ଭଞ୍ଜ ୧୬୧୧ ଖ୍ରୀ:ଅ:ରେ ଜନ୍ମଗ୍ରହଣ କରିଥିଲେ । ସେ ୧୬୩୬ ଖ୍ରୀ:ଅ: ରୁ ୧୭୦୧ଖ୍ରୀ:ଅ: ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । ରଘୁନାଥ ଭଞ୍ଜଙ୍କଠାରୁ ଧନଞ୍ଜୟ ଭଞ୍ଜଙ୍କ ପର୍ଯ୍ୟନ୍ତ ୪୯ଜଣ ରାଜା ଏହା ମଧ୍ୟରେ ରାଜତ୍ୱ କରିଥିଲେ । ସେ ଜଣେ ପ୍ରତାପଶାଳୀ ରାଜା ଓ ଜଣେ ବିଶିଷ୍ଟ କବି ଥିଲେ । ସେଥିପାଇଁ ରାଜକବି ବୋଲି ପରିଚିତ ।

'ରାଜା ଧନଞ୍ଜୟ, ସମସ୍ତ ଗୁଣରତ୍ନାଳୟ
ଘୁମୁସର ଅଧିପପଣେ ଲୋକେ ବିଖ୍ୟାତ କବି ଗୁଣେ'
(ଉପେନ୍ଦ୍ର ଭଞ୍ଜ)

ଉପେନ୍ଦ୍ରଙ୍କର ପିତାଙ୍କ ନାମ ନୀଳକଣ୍ଠ ଭଞ୍ଜ, ମାତାଙ୍କ ନାମ ରତ୍ନାବତୀ । ନୀଳକଣ୍ଠ ଭଞ୍ଜ ୧୭୦୧ ଠାରୁ ୧୭୦୩ ପର୍ଯ୍ୟନ୍ତ ରାଜା ହୋଇଥିଲେ । ପରେ ବିତାଡ଼ିତ ହୋଇଥିଲେ । କବି ପିତାମହ ଧନଞ୍ଜୟ ଭଞ୍ଜ ଓ ପିତାମହୀ ମଣ୍ଡାଦେଈଙ୍କର ଅତି ଆଦରର ପାଟ କୁମାର ଥିଲେ । ଉପେନ୍ଦ୍ରଙ୍କର ନଳିନୀ ରଞ୍ଜନ ଓ କୁମୁଦ ରଞ୍ଜନ ନାମରେ ଆଉ ଦୁଇଭାଇ ଥିଲେ ।

ଉପେନ୍ଦ୍ର ଭଞ୍ଜ ଗଞ୍ଜାମ ଜିଲ୍ଲା ଅନ୍ତର୍ଗତ କୁଳାଡ଼ ଗଡ଼ରେ ଘୁମୁସର ରାଜବଂଶରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ଜନ୍ମ ଗ୍ରହଣ କରିବା ଦିନ, ବର୍ଷ ଠିକ୍ ରୂପେ ସର୍ବସମ୍ମତ ନିରୂପିତ ହୋଇ ନଥିଲେ

ମଧ୍ୟ ତାହାଙ୍କର (ପରେ ପ୍ରାପ୍ତ ହୋଇଥିବା) ଜାତକ ଦ୍ୱାରା ପ୍ରମାଣ ସିଦ୍ଧହୁଏ ମାଘ ଶୁକ୍ଳପକ୍ଷ ପଞ୍ଚମୀ ୧୬୭୭ ଖ୍ରୀ:ଅ: ବୋଲି ଧରାଯାଏ ।

'ତଦ୍‌ବିତ ତାହାଙ୍କ ତନୁଜ, ନରେଶ ନୀଳକଣ୍ଠ ଭଞ୍ଜ
ତାହାଙ୍କ ଜ୍ୟେଷ୍ଠପୁତ୍ର ମୁହିଁ, ଉପେନ୍ଦ୍ର ଭଞ୍ଜ ନାମବନ୍ଧ ।
(ଲ:ବ:)

ଘୁମୁସର ରାଜନିବାସ ସେତେବେଳେ ଶିକ୍ଷା, ସଂସ୍କୃତିର ଏକ ପ୍ରଧାନ କେନ୍ଦ୍ର ଥିଲି । ବାଳକ ଉପେନ୍ଦ୍ରଙ୍କ ଉପରେ ରାଜକବି ଧନଞ୍ଜୟ ଭଞ୍ଜଙ୍କର ବିଶେଷ ପ୍ରଭାବ ପଡ଼ିଥିଲି ।

ପିଲାଟି ଦିନରୁ କବିଙ୍କର ଏକାଗ୍ରତା, ପାଣ୍ଡିତ୍ୟ ବିକଶିତ ହୋଇଥିଲି । ତାଙ୍କର ସୌମ୍ୟ ମୂର୍ତ୍ତି ଓ କୋମଳ ବ୍ୟବହାରରେ ସମସ୍ତେ ତାଙ୍କ ପ୍ରତି ଆକୃଷ୍ଟ ହୋଇଥିଲେ । ସେ ରାଜପରିବାରର ବିଳାସ ବ୍ୟସନ ଭିତରେ ବଢ଼ିଥିଲେ ମଧ୍ୟ ତାହା ତାଙ୍କୁ ଲେଶ ମାତ୍ରାରେ ସ୍ପର୍ଶ କରି ପାରି ନଥିଲି ।

ଉପେନ୍ଦ୍ର ଭଞ୍ଜ ପାଞ୍ଚବର୍ଷରୁ ବିଦ୍ୟା ଆରମ୍ଭ କରିଥିଲେ । ତାଙ୍କର ପ୍ରଥମ ବିଦ୍ୟାଗୁରୁ ଥିଲେ ରାମଚନ୍ଦ୍ର ରାଜଗୁରୁ । ତାଙ୍କର ଧୀଶକ୍ତି ଏତେ ପ୍ରଖର ଥିଲି ଯେ ଗୁରୁ ତାଙ୍କୁ ଅତି ସ୍ନେହରେ ବିଦ୍ୟା ଶିକ୍ଷା ଦେଉଥିଲେ । ନଅ ବର୍ଷ ସମୟରେ ତାଙ୍କର ଉପନୟନ ହୋଇଥିଲି । ବାର ବର୍ଷ ବେଳକୁ ସେ ସଂସ୍କୃତ ଶାସ୍ତ୍ରରେ ପ୍ରବୀଣ ହୋଇ ପାରିଥିଲେ । ଅସାଧାରଣ ସ୍ମରଣ ଶକ୍ତି ଯୋଗୁଁ ସେ ଅଭି-ଧାନ, ବ୍ୟାକରଣ, ଅଳଙ୍କାର, ଦର୍ଶନ, ନ୍ୟାୟଶାସ୍ତ୍ର, କାମଶାସ୍ତ୍ର, ମନ୍ତ୍ରଶାସ୍ତ୍ର, ଜ୍ୟୋତିଷ ଶାସ୍ତ୍ର, ଆୟୁର୍ବେଦ, ସଙ୍ଗୀତ, ସାହିତ୍ୟ, ପୁରାଣ, ନାଟକ, କାବ୍ୟ ଇତ୍ୟାଦି ଆୟତ୍ତ କରି ପାରିଥିଲେ । କବିଙ୍କର ଓଡ଼ିଆ, ସଂସ୍କୃତ, ବଙ୍ଗଳା, ତେଲୁଗୁ, ହିନ୍ଦୀ ଆଦି ବହୁ ଭାଷାରେ ଜ୍ଞାନଥିଲି ।

କୁଳଗୁରୁ ସାଧୁ ମହାନ୍ତ ରଘୁବୀରଙ୍କ ଦାସଙ୍କଠାରୁ ଗୁରୁମନ୍ତ୍ର ଗ୍ରହଣ କରିଥିଲେ । କିଶୋର ବୟସରେ ସେ ଧନୁର୍ବେଦ, ଅସ୍ତ୍ର ଚାଳନା, ଅଶ୍ୱ ଚାଳନା, ଗଜ ଚାଳନା, ମଲ୍ଲଯୁଦ୍ଧ ମଧ୍ୟ ଶିକ୍ଷା କରିଥିଲେ । ଅଲୌକିକ କାର୍ଯ୍ୟ ସାଧନ ପାଇଁ ଦୈବୀଶକ୍ତିର ଆଶ୍ରୟ ନେବାକୁ ପଡ଼ିଥାଏ । ସେଥିପାଇଁ ସେ କୁଳଡ଼ଠାରେ ଚଉଦ ବର୍ଷରେ ଇଷ୍ଟ ଦେବୀଙ୍କୁ ସାଧନା କରିଥିଲେ ମାତ୍ର ସେଥିରେ ସନ୍ତୁଷ୍ଟ ନ ହୋଇ ସତର ବର୍ଷ ସମୟରେ ବୈଷ୍ଣବ ବୈରାଗୀ ନାମକ ଜଣେ ଦାକ୍ଷିଣାତ୍ୟ ଗୁରୁଙ୍କଠାରୁ ରାମତାରକ ମନ୍ତ୍ର ସାଧନା କରି ସିଦ୍ଧିଲାଭ କରି ଅଲୌକିକ ଶକ୍ତିର ଅଧିକାରୀ ହୋଇ ପାରିଥିଲେ ।

'ତାରକ ମନ୍ତ୍ର ପରସାଦେ,
ମୋହର କବିପଣ ଉଦେ' (ଲା:ବି:)

ସେ ବୁଗୁଡ଼ା ନିକଟବର୍ତ୍ତୀ 'ସିଦ୍ଧଗୁମ୍ଫା'ରେ ତାରକ ମନ୍ତ୍ର ସିଦ୍ଧ କରିଥିଲେ । ସେ ୧୭୦୧ ଖ୍ରୀ:ଅ: ବେଳକୁ ବୈଦେହୀଶ ବିଳାସ ରଚନା କରି ପିତାମହଙ୍କୁ ଉପହାର ଦେଇଥିଲେ । ପରେ ସେ ନୟାଗଡ଼ ରାଜା ବିନାୟକ ସିଂହଙ୍କ ନନ୍ଦିନୀ ବିଦ୍ୟାବତୀଙ୍କ ପାଣି-ଗ୍ରହଣ କରିଥିଲେ । କିନ୍ତୁ ଦୁଃଖର କଥା ତାଙ୍କର ପତ୍ନୀଙ୍କର ପ୍ରାୟ ଦୁଇବର୍ଷ ପରେ ଅକାଳ ବିୟୋଗ ହୋଇଥିଲା । ପରେ ଆତ୍ମୀୟମାନଙ୍କ ଅନୁରୋଧ କ୍ରମେ ବାଣପୁର ରାଜା ଅଚ୍ୟୁତ ହରିଚନ୍ଦନ ରାୟଙ୍କ କନ୍ୟା ବିଦୂଷୀ ଭାରତୀଙ୍କ ସହ ପୁନର୍ବିବାହ କରିଥିଲେ । ସେଠାରେ କେତେ ଦିନ ସୁଖରେ ଅତିବାହିତ କଲା ବିଧାତାର ଲିଖନ ଆନ ହୁଏ ନାହିଁ । ଭାଗ୍ୟଚକ୍ର ଘୂରିବୁଲେ । ବିବାହ କରିବାର ଦୁଇ ତିନ ବର୍ଷ ପରେ ତାଙ୍କର ପ୍ରିୟତମା ପତ୍ନୀଙ୍କର ଆକସ୍ମିକ ବିୟୋଗ ହୁଏ । ସେ ଆଉ ବିବାହ ନ କରି ଶେଷ ଜୀବନ ପର୍ଯ୍ୟନ୍ତ କେବଳ କାବ୍ୟ

କବିତା ରଚନାରେ କାଳଯାପନ କରିଥିଲେ । ସେ ନିଃସନ୍ତାନ ଥିଲେ ।

ପିତା 'ନୀଳକଣ୍ଠ ଭଞ୍ଜ' ଭାତୃବର୍ଗ ଦ୍ୱାରା ରାଜ୍ୟରୁ ବିତାଡ଼ିତ ହେବା ଯୋଗୁଁ ସେ ବିଶେଷ ମର୍ମାହତ ହୋଇ ପଡ଼ିଲେ । ଏହି ଅଶାନ୍ତ ବାତାବରଣରୁ ବହୁ ଦୂରରେ ରହିବା ପାଇଁ ସେ ନୟାଗଡ଼ ମାଳିସାହିରେ ପିତାଙ୍କ ସହ ରହିଥିଲେ ।

ବାସ୍ତବବାଦୀ ହୋଇ ସେ ନିଜର କଥା ଲେଖିଛନ୍ତି—

'ରଜାକୁ ହେବାର ରାଜ୍ୟ ଭ୍ରଷ୍ଟ
ଯୁବାକୁ ହେବାର ପତ୍ନୀ କଷ୍ଟ'

ପ୍ରିୟତମା ପତ୍ନୀଙ୍କର ବିୟୋଗରେ ସେ ମର୍ମାହତ ହୋଇ ବିରହରେ ପରୋକ୍ଷରେ ଲେଖିଛନ୍ତି—

'ଶିବ ସେବି ଅନୁବ୍ରତେ ପାଇଥିଲି ଧନ ତୋତେ
ଏବେ କେମନ୍ତ ମୂର୍ଚ୍ଛିବି ତୋତେ
ଯେ ହିତେ ଗୁହିଁଲେ ଧନ ହିଣେ ତୋ ଚନ୍ଦ୍ର ବଦନ
ଏବେ କେମନ୍ତ ବଞ୍ଚିବି ହିନ' । (ଲ:ବ:)

ବିପଦ କେବେହେଲେ ଏକାକୀ ଆସେ ନାହିଁ, ସେ ତା'ର ବନ୍ଧୁବାନ୍ଧବଙ୍କୁ ଧରି ଆସେ । କବିଙ୍କର ଯୁବକ ସମୟରେ ତାଙ୍କର ପୂଜ୍ୟ ପିତାମହଙ୍କର ମୃତ୍ୟୁ ହୋଇଥିଲା । ସେ ଦୁଃଖରେ ଅଭିଭୂତ ହୋଇ ପଡ଼ିଥିଲେ । ତାପରେ ପିତୃବ୍ୟ ଗଙ୍ଗାଧର ଓ (ଗଙ୍ଗାଧରଙ୍କ ପୁତ୍ର) ଭାଇ ଶତ୍ରୁଘ୍ନଙ୍କର ନିର୍ମମ ହତ୍ୟା, ପରିଶେଷରେ ତାଙ୍କର ଦୁଇଟି ପ୍ରିୟତମା ପତ୍ନୀଙ୍କର ଅକାଳ ବିୟୋଗ ସଙ୍ଗେ ପିତା ନୀଳକଣ୍ଠଙ୍କର

ରାଜ୍ୟରୁ ବିତାଡ଼ିତ ମନ ଗହ୍ୱରରେ ବିଷାଦର ରେଖା ଟାଣି ଦେଇ-
ଥିଲା । ସେ ଜାଣି ପାରିଥିଲେ ଯେ ଯେଉଁମାନେ ପାର୍ଥିବ ସୁଖ ପାଇଁ
ତା' ପଛରେ ଦୌଡ଼ନ୍ତି ସେମାନେ ନିଶ୍ଚୟ ଦୁଃଖ ପାଆନ୍ତି । ସେଥିପାଇଁ
ସେ ଭାଙ୍ଗି ନ ପଡ଼ି, ପଛ କଥାକୁ ଭୁଲିଯାଇ, କର୍ମମୟ ଜୀବନ ଭିତରେ
ନିଜକୁ ମଜ୍ଜାଇ ଗୈରିକ ବସନ ପରିଧାନ କରି କାବ୍ୟ କବିତା ରଚ-
ନାରେ ଜୀବନର ସାୟାହ୍ନ କଟାଇଥିଲେ । କବିଙ୍କର ଲେଖା ହୋଇଥିବା
ରଚନା ୭୩ ବୋଲି ଧରାଯାଏ । ସେଥିରୁ ୨୮ ଗୋଟି ପ୍ରକାଶିତ
ହୋଇଛି ।

ସେ ସାହିତ୍ୟ ଆଲୋଚନା ପାଇଁ ପଣ୍ଡିତ ବନ୍ଧୁ
ରମାକାନ୍ତ ରାଜଗୁରୁ, ସୀତାକାନ୍ତ ଶତପଥିଙ୍କ ଗହଣରେ ଖୋର୍ଦ୍ଧା,
ମୟୂର ଭଞ୍ଜ, କେନ୍ଦୁଝର, ବଉଦ, ନୟାଗଡ଼, ବାଣପୁର, ରଥିପୁର
ରାଜଦରବାର ଭ୍ରମଣ କରିଥିଲେ ।

ଉପେନ୍ଦ୍ର ରାମାନୁଜପନ୍ଥୀ ବୈଷ୍ଣବ ଧର୍ମାବଲମ୍ବୀ ଥିଲେ ।
ମାତ୍ର ମତବାଦରେ ସେ ଉଦାରପନ୍ଥୀ ଥିଲେ । ନୟାଗଡ଼ ମାଳିସାହିରେ
ବସବାସ କରୁଥିବା ସମୟରେ ସେ ଓଡ଼ଗାଁ ରଘୁନାଥଙ୍କ ନିକଟକୁ
ଉପାସନା ପାଇଁ ଘୋଡ଼ା ପିଠିରେ ବସି ଆସୁଥିଲେ । ସେ ତୀର୍ଥାଟନ
ପାଇଁ ପୁରୀ, ବଦରିକା, ଦ୍ୱାରକା ଓ ରାମେଶ୍ୱର ଯାଇଥିବାର ଜଣା
ଯାଏ ।

ଘନ ଭଞ୍ଜ ତାଙ୍କର ସମସାମୟିକ ଥିଲେ । ତାଙ୍କର ରାଜତ୍ୱ
ସମୟରେ ଅନୁରୋଧ କ୍ରମେ ଉପେନ୍ଦ୍ର ଭଞ୍ଜ ଶେଷ ଜୀବନ କୁଳାଡ଼ରେ
କଟାଇଥିଲେ । କାରଣ ତାଙ୍କର ରାଜପଦ ଲିପ୍ସା ନଥିଲା ।

ଉପେନ୍ଦ୍ର ଭଞ୍ଜ ୧୭୫୧ ଖ୍ରୀ:ଅ:ରେ ୭୫ ବର୍ଷରେ ପୁରୀଠାରେ

ପ୍ରାଣତ୍ୟାଗ କରିଥିବା ଜଣାଯାଏ । ତାଙ୍କର ଏତେ ଗୁଡ଼ାଏ ରଚନା ଲେଖା ସମସ୍ତ ସାକ୍ଷେପ ଯୋଗୁଁ ସେ ଦୀର୍ଘକାଳ ଜୀବନ କଟାଇଥିବା ଅନୁମିତ ହୁଏ ।

ସାହିତ୍ୟ ଯୁଗାଶ୍ରୟୀ । ସାହିତ୍ୟ ହେଉଛି ସମାଜର ପ୍ରତିଛବି ଜୀବନର ପରିପ୍ରକାଶ ତଥା ସଂସ୍କୃତିର ବାହକ । କବି ହେଉଛନ୍ତି ଦେଶକାଳ ତତ୍କାଳୀନ ପରିବେଶର ଅଧୀନ । ସମାଜ ଓ ଜୀବନ ସହିତ ଯାହାର ସମ୍ପର୍କ ରହିଛି ତାକୁ ସାହିତ୍ୟ କୁହାଯାଏ । ଉପେନ୍ଦ୍ର ଭଞ୍ଜଙ୍କ ମୂଳ ଉତ୍ସ ଥିଲା ସଂସ୍କୃତ ସାହିତ୍ୟ, ତାଙ୍କର ପିତାମହ ଧନଞ୍ଜୟ ଭଞ୍ଜଙ୍କର କାବ୍ୟ ରଘୁନାଥ ବିଳାସ ଯାହାକି ତାଙ୍କୁ କବି ହେବା ପାଇଁ ପ୍ରେରଣା ଦେଇଥିଲା ।

ଓଡ଼ିଆ ସାହିତ୍ୟର ପ୍ରାଚୀନ କାଳଠାରୁ ଆଧୁନିକକାଳ ପର୍ଯ୍ୟନ୍ତ ଯେତେ କବି ଜନ୍ମ ଗ୍ରହଣ କରିଛନ୍ତି କବି ସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ ପରି ଶବ୍ଦ ପାଣ୍ଡିତ୍ୟ, ଆଳଙ୍କାରିକ କେହି ନାହାଁନ୍ତି । ଏହା ଅବିସମ୍ବାଦିତ ସତ୍ୟ । ତାଙ୍କର ଗ୍ରନ୍ଥାବଳୀ ପରି ସମାସବନ୍ଧ ରଚନା ଭାରତ ବର୍ଷର ଅନ୍ୟାନ୍ୟ ଉନ୍ନତ ଭାଷା ସାହିତ୍ୟରେ ଆଜି ସୁଦ୍ଧା କେଉଁଠାରେ ଦେଖାଯାଏ ନାହିଁ । ତାଙ୍କର ବଳିଷ୍ଠ ରଚନା ଦ୍ୱାରା ଓଡ଼ିଆ ଭାଷା ଓ ସାହିତ୍ୟର ଭିତ୍ତି ଦୃଢ଼ୀଭୂତ ହୋଇଅଛି । ବିଶ୍ୱ ଦରବାରରେ ମହାକବି କାଳିଦାସଙ୍କୁ ଯେପରି ଶ୍ରେଷ୍ଠ ସଂସ୍କୃତ କବିରୂପେ ଆସନ ପ୍ରଦାନ କରାଯାଇଛି, ସେହିପରି ଭାରତରେ ଉପେନ୍ଦ୍ରଙ୍କୁ ମଧ୍ୟ ଓଡ଼ିଆ ସାହିତ୍ୟ ଜଗତରେ କବିସମ୍ରାଟ ଆସନ ପ୍ରଦାନ କରାଯାଇଛି । ଭଞ୍ଜଙ୍କର ବୈଦେହୀଶ ବିଳାସ, ଲାବଣ୍ୟବତୀ, କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ, ପ୍ରେମ ସୁଧାନିଧି, ରସପଞ୍ଚକ, ପଞ୍ଚସାୟକ, ଛାନ୍ଦକାବ୍ୟ ବଚନୋଦୟ'' ଇତ୍ୟାଦି

ଓଡ଼ିଆ ସାହିତ୍ୟରେ ଚିର ଜୀବିତ ରହିଛି । ତାଙ୍କର ଲେଖା ଆଳଙ୍କାରିକ ଚାତୁର୍ଯ୍ୟ ଏବଂ ସଙ୍ଗୀତର ଅଳଙ୍କାରରେ ଝଙ୍କୃତ ।

ଲାବଣ୍ୟବତୀ, ବୈଦେହୀଶ ବିଳାସ ଏବଂ କୋଟିବ୍ରହ୍ମାଣ୍ଡ ସୁନ୍ଦରୀ କାବ୍ୟ ଭାରତୀୟ ସାହିତ୍ୟର ଅମୂଲ୍ୟ ସମ୍ପଦ ଅଟେ । ବୈଦେହୀଶବିଳାସ ଭଞ୍ଜ ସାହିତ୍ୟରେ ସ୍ୱତନ୍ତ୍ର ଗୌରବର ଅଧିକାରୀ ହୋଇ ରହିଅଛି ।

'ରସ ପଞ୍ଚକ' ଉପେନ୍ଦ୍ର ଭଞ୍ଜଙ୍କ ଖଣ୍ଡିଏ ଅଳଙ୍କାର ଶାସ୍ତ୍ର । ସେହି ସମୟରେ କୌଣସି ପ୍ରାଦେଶିକ ଭାଷାରେ ଏହି ପରି ଶାସ୍ତ୍ର ରଚନା ହୋଇଥିବା ପ୍ରମାଣ ମିଳେ ନାହିଁ । ଏହା ରଚନା କରି ସେ ଓଡ଼ିଆ ସାହିତ୍ୟ କୁ ଗୌରବାନ୍ୱିତ କରିଛନ୍ତି ।

ଚିତ୍ରକାବ୍ୟ ବନ୍ଧୋଦୟରେ ଯେଉଁ ପରିମାଣରେ ଶବ୍ଦାଳଙ୍କାର ସମାବେଶ ହୋଇଛି ତାହା କୌଣସି ଗୋଟିଏ ସଂସ୍କୃତ ଗ୍ରନ୍ଥରେ ବିରଳ କହିଲେ ଚଳେ ।

କବିଙ୍କର ଲାବଣ୍ୟବତୀ ଓ କୋଟି ବ୍ରହ୍ମାଣ୍ଡ ସୁନ୍ଦରୀକୁ ତୁଳନାକଲେ ଏହି ଦୁଇଟି 'ଶକୁନ୍ତଳା'ଠାରୁ କୌଣସି ଅଂଶରେ ନ୍ୟୂନ ନୁହେ । ଭାବଭାଷାର ସମନ୍ୱୟ ରକ୍ଷା କରି ସୂକ୍ଷ୍ମ କାରୁକାର୍ଯ୍ୟ ପୂର୍ଣ୍ଣ କାବ୍ୟ କୋଣାର୍କ ନିର୍ମାଣ କରିବା କେବଳ ଉତ୍କଳୀୟ କବି-ଶିଳ୍ପୀ ଉପେନ୍ଦ୍ର ଭଞ୍ଜଙ୍କ ପକ୍ଷେ ସମ୍ଭବ ହୋଇ ପାରିଛି । କାବ୍ୟ ଗୁଡ଼ିକ ଭାବ-ଗର୍ଭକ, ଅଦ୍ଭୁତ ଶବ୍ଦ ଯୋଜନା ଓ ବିବିଧ ଅଳଙ୍କାର ଦ୍ୱାରା ବିଭୂଷିତ ହୋଇ ଥିବାରୁ ଚିରଦିନ ପାଠକମାନଙ୍କର ଅତି ଆଦରର ଧନ ହୋଇ ରହିବ । ଭଞ୍ଜ-ସଂସ୍କୃତ-ସାହିତ୍ୟ ସାଗରକୁ ମନ୍ଥନ କରି ଯେଉଁ ଅମୃତ

ଆଦରଣ କରି ଓଡ଼ିଆ ସାହିତ୍ୟକୁ ବିକଶିତ, ସମୁନ୍ନତ ଓ ସଂସ୍କୃତର ସାହିତ୍ୟ ସମକକ୍ଷ କଲେ, ତାହା ତାଙ୍କର ପ୍ରତିଭାର ସ୍ୱାକ୍ଷର ବହନ କରେ । ଶବ୍ଦ ଯୋଜନା, ନୂତନ ପଦ ବିନ୍ୟାସ, ଚିନ୍ତା ଶକ୍ତିର ଚମତ୍କାର ପ୍ରକାଶରେ କବି ସାହିତ୍ୟରେ ବିପ୍ଳବ ଆଣିଥିଲେ । ଦକ୍ଷିଣୀ ବିଦ୍ୱତ୍ ଶତ୍ରୁ ଆକ୍ର-ମଣରୁ ଓଡ଼ିଆ ଭାଷାକୁ ରକ୍ଷା କରିବା ପାଇଁ କି ପ୍ରକାର ସାହିତ୍ୟ ସୃଷ୍ଟି କରିବାକୁ ହେବ ତାହା ଉପେନ୍ଦ୍ର ଭଞ୍ଜ ବୀରବରଙ୍କ ଉପରେ ଗୁରୁ-ଦାୟିତ୍ୱ ପଡ଼ିଥିଲା । ସେଥିପାଇଁ ସେ କାବ୍ୟଦୁର୍ଗ ନିର୍ମାଣ କରିଥିଲେ । ତାଙ୍କର ରଚନା ଗୁଡ଼ିକ ଅଳଂକାର ଶାସ୍ତ୍ର ଦୃଷ୍ଟିରୁ ନିର୍ଦ୍ଦୋଷ କରିବା ପାଇଁ ଚେଷ୍ଟା କରି ସଫଳକାମ ହୋଇଛନ୍ତି । କାବ୍ୟ କବିତା ଗୁଡ଼ିକ ସମୟୋପଯୋଗୀ ହୋଇ ଆଦରସହରେ ଉପାଶିତ ହୋଇ କବିତାମୟ ହୋଇଛି । ବୈଦେହୀଶ ବିଳାସର ପ୍ରଥମ ଅକ୍ଷର 'ବ'ରେ ଆରମ୍ଭ । ସେହିପରି କଳାକଉତୁକ 'କ'ରେ, ସୁଭଦ୍ରା ପରିଣୟ 'ସ'ରେ । ଅବନା ରସ ତରଙ୍ଗରେ କୌଣସିଠାରେ ବନାର ଲେଶ ମାତ୍ର ଗନ୍ଧ ନାହିଁ ।

## ଉପେନ୍ଦ୍ର ଭଞ୍ଜଙ୍କ ଲେଖା

### ପ୍ରକାଶିତ

୧) ବୈଦେହୀଶ ବିଳାସ
୨) ଲାବଣ୍ୟବତୀ
୩) କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ
୪) ପ୍ରେମ ସୁଧାନିଧି
୫) ରସିକ ହାରାବଳୀ
୬) ଅବନା ରସ ତରଙ୍ଗ
୭) ଛାନ୍ଦ ଭୂଷଣ
୮) ଭାବବତୀ
୯) ଚଉପଦୀ ଭୂଷଣ
୧୦) ଚଉପଦୀ ଚନ୍ଦ୍ର
୧୧) ରସ ପଞ୍ଚକ
୧୨) ଗୀତାଭିଧାନ
୧୩) ସମକଳଜ ଚଉତିଶା
୧୪) କଳା କଉତୁକ

୧୫) ରାମ ଲୀଳାମୃତ
୧୬) ଚିତ୍ରକାବ୍ୟ ବନ୍ଧୋଦୟ
୧୭) ସୁଭଦ୍ରା ପରିଣୟ
୧୮) ସୁବର୍ଣ୍ଣରେଖା
୧୯) ସଙ୍ଗୀତ ଉପେନ୍ଦ୍ର ଭଞ୍ଜ
୨୦) ଦଶ ପୋଇ
୨୧) ଚଉ ପଧରି
୨୨) ବଜାରବୋଲି

## ଅପ୍ରକାଶିତ

୧) ରସଲୀଳା, ୨) ବ୍ରଜଲୀଳା, ୩) ଶ୍ରୀକୃଷ୍ଣ ବିହାର, ୪) କୁଞ୍ଜ ବିହାର, ୫) ତ୍ରୈଲୋକ୍ୟ ମୋହିନୀ, ୬) ଲତା, ୨୯) ରସଲେଖା, ୭) ମୁକ୍ତାବଳୀ, ୮) ଚନ୍ଦ୍ରକଳା, ୯) ଶୋଭାବତୀ, ୧୦) କଳାବତୀ, ୧୧) ରସ ମଞ୍ଜରୀ, ୧୨) ପ୍ରେମ ମଞ୍ଜରୀ, ୧୩) ଚିତ୍ର ଲେଖା, ୧୪) ପ୍ରେମଲତା, ୧୫) ମନୋରମା, ୧୬) ଅନଙ୍ଗ ରଙ୍ଗିଣୀ, ୧୭) ଇଚ୍ଛାବତୀ, ୧୮) ଶାନ୍ତିରେଖା, ୧୯) ମିଳନ ମଞ୍ଜରୀ, ୨୦) ରସ ନିଧି, ୨୧) ବସନ୍ତ ତରଙ୍ଗିଣୀ, ୨୨) କଳ୍ପିତ କଳ୍ପଲେଖା, ୨୩) ଚଉପଦୀ ଚନ୍ଦ୍ରିକା, ୨୪) ଛ' ପୋଇ, ୨୫) ନ' ପୋଇ, ୨୬) ବାର ପୋଇ, ୨୬) ଷୋଳ ପୋଇ, ୨୭) କଟ ପାଦୁ, ୨୮) ଦ୍ୱାସ୍ୟାର୍ଣ୍ଣବ, ୨୯) ସଙ୍ଗୀତ କୌମଦୀ, ୩୦) ବାରମାସୀ, ୩୧) ଦୁର୍ଗାସ୍ତୁତି, ୩୨) ଗଜ ନିସ୍ତାରଣ ୩୩) ଗରୁଡ଼ ଗୀତା, ୩୪) କାଳ କଣ୍ଟକ, ୪୫) ଧଡ଼ଋତୁ, ୩୬) ପୁରୁ-ଷୋତ୍ତମ ମାହାତ୍ମ୍ୟ, ୩୭) ଛତିଶ ରାଗ, ୩୮) ପଞ୍ଚଶାୟକ, ୩୯) ଚିତ୍ର ଲେଖା, ୪୦) କାମକଳା, ୪୧) ବଚ୍ଛନ୍ଦସ, ୪୨) ସଙ୍ଗଣ ବିନାସ, ୪୩) ମାଳାଗ୍ରୀଣ ରଉତଣା, ୪୪) ଦମସ୍ପୁର୍ଣ୍ଣିଶ ବିଳାପ, ୪୫) କବି କଲ୍ପରେଖା, ୪୬) ନାରଦ ପୁରାଣ, ୪୭) ଚଗଡ଼ମାଳ ।

## ଘୁମୁସର ଭଞ୍ଜବଂଶୀୟ କବି

ସର୍ବେଶ୍ୱର ଭଞ୍ଜ—ମଙ୍ଗଳଗୀତ, । ଗୋପାଳ ଭଞ୍ଜ—ଚଉପଦୀ ମାଳା, ଚଉତିଶା ରସ କେତନ । ଲକ୍ଷ୍ମୀଧର ଭଞ୍ଜ—ନବଘନ ଚଉତିଶା, ପ୍ରେମସୁଧା ଚଉତିଶା, ଜଳଦ ଚଉତିଶା, ଜନପ୍ରିୟ ଚଉତିଶା, ରସିକ ପ୍ରିୟ ଚଉତିଶା, ଚନ୍ଦ୍ରବାଣୀ ଚଉତିଶା । ଦିବ୍ୟସିଂହ ଭଞ୍ଜ—କନକ ଲତା । ଧନଞ୍ଜୟ ଭଞ୍ଜ ମଦନ ମଞ୍ଜରୀ, ତ୍ରିପୁରା ମଞ୍ଜରୀ, ରତ୍ନାବତୀ, ଅନଙ୍ଗରେଖା, ରଘୁନାଥ ବିଳାସ, ଶାର୍ଙ୍ଗଧୋଷ, ଅଷ୍ଟଶମ୍ଭୁ, ନିଶଙ୍କରାୟ-ରାଣୀ—ପଦ୍ମାବତୀ ଉପାଖ୍ୟାନ, ମଧୁ ମାଳତୀ କଥାରସ । ନୀଳକଣ୍ଠ ଭଞ୍ଜ—ଚୌପଦୀ ଚନ୍ଦ୍ରୋଦୟ । ଏହାଛଡ଼ା ରଘୁନାଥ ଭଞ୍ଜ, ଦେଓ ଭଞ୍ଜ, ପଦ୍ମାକର ଭଞ୍ଜ, ନୀଳାମ୍ବର ଭଞ୍ଜ, ଗୋବିନ୍ଦ ଭଞ୍ଜ, ଯୁଗ ଭଞ୍ଜ ଇତ୍ୟାଦି କବିଥିଲେ ।

## ଉପେନ୍ଦ୍ର ଭଞ୍ଜଙ୍କର ପୂର୍ବବର୍ତ୍ତୀ କବିମାନେ—

ସାରଳା ଦାସ—ଓଡ଼ିଆ ମହାଭାରତ, ବଳରାମ ଦାସ—ଓଡ଼ିଆ ରାମାୟଣ, ଜଗନ୍ନାଥ ଦାସ—ଓଡ଼ିଆ ଭାଗବତ, ଅଚ୍ୟୁତାନନ୍ଦ ଦାସ—ହରି ବଂଶ, ଅର୍ଜୁନ ଦାସ—ରାମ ବିଭା, କଳ୍ପଲତା, ନରସିଂହ ସେଣ—ପରିମଳା, ଶିଶୁଶଙ୍କର—ଉଷାଭିଳାଷ, ଚନ୍ଦଟାଣି—କୃଷ୍ଣ ବିଳାସ, ଦେବଦୁର୍ଲ୍ଲଭ—ରହସ୍ୟ ମଞ୍ଜରୀ, କାର୍ତ୍ତିକ ଦାସ—ରୁକ୍ମିଣୀବିଭା, ବିଷ୍ଣୁ ଦାସ—ପ୍ରେମଲୋଚନା, ରଘୁନାଥ ହରିଚନ୍ଦନ—ଲୀଳାବତୀ, ବଳଭଦ୍ର ଭଞ୍ଜ—ଭଗବତୀ, ଦିବ୍ୟସିଂହ ଭଞ୍ଜ—କନକଲତା, ଧନଞ୍ଜୟ ଭଞ୍ଜ—ମଦନ ମଞ୍ଜରୀ, ତ୍ରିପୁରା ମଞ୍ଜରୀ, ରତ୍ନାବତୀ, ଅନଙ୍ଗରେଖା, ରଘୁନାଥ ବିଳାସ, ଶାର୍ଙ୍ଗଧୋଷ—ଅଷ୍ଟଶମ୍ଭୁ, ହରିହର ନରେନ୍ଦ୍ର—

ମଦନରସା, ଲୋକନାଥ ବିଦ୍ୟାଧର—ଚିତ୍ରକଳା, ରସକଳା, ସର୍ବାଙ୍ଗ ସୁନ୍ଦରୀ, ପଦ୍ମାବତୀ ପରିଣୟ, ଚନ୍ଦ୍ରଶେଖର ଭଞ୍ଜ—ରସ ଲହରୀ, ଘନକୃଷ୍ଣ—ରସ କଲ୍ଲୋଳ, ଜଗମୋହନ ଛନ୍ଦ ।

## ଓଡ଼ିଆ ସାହିତ୍ୟର ଇତିହାସରେ ଭଞ୍ଜଙ୍କର ସ୍ଥାନ—

ଭାରତ ବର୍ଷର ସଭ୍ୟତା ଅତି ପ୍ରାଚୀନ । ଖ୍ରୀଷ୍ଟଜନ୍ମର ଶତ-ଶତ ବର୍ଷ ପୂର୍ବରୁ ସିନ୍ଧୁ ନଦୀର ଅବବାହିକା ଠାରୁ ଆର୍ଯ୍ୟମାନେ ଗଙ୍ଗା ଯମୁନା ନଦୀର ସମତଳ ପ୍ରଦେଶରେ ବସତି ସ୍ଥାପନ କରି କ୍ରମେ ପୂର୍ବ ଦକ୍ଷିଣ ଦିଗକୁ ଅଗ୍ରସର ହେଲେ । ଏମାନେ ବଙ୍ଗ, ଆସାମରେ ବସତି ସ୍ଥାପନ କରି ଓଡ଼ିଶାକୁ ମହାନଦୀ ଡିଙ୍ଗେଇ ପ୍ରବେଶ କରିଥିଲେ । ସେଥିପାଇଁ ଓଡ଼ିଆ, ବଙ୍ଗାଳୀ ଓ ଆସାମୀ ଭାଷା ଭିତରେ ବହୁ ସାମଞ୍ଜସ୍ୟ ଦେଖାଯାଏ । ଶାକ୍ତଧର୍ମର ପୃଷ୍ଠପୋଷକ ମଧ୍ୟ ଥିଲେ ।

ଓଡ଼ିଆ ଭାଷା ପ୍ରାୟ ଦୁଇହଜାର ବର୍ଷ ପୂର୍ବରୁ ଧୀରେ ଧୀରେ ସୁଗଠିତ ହୋଇ ଆସିଅଛି ଓ କ୍ରମେ କ୍ରମେ ପୂର୍ଣ୍ଣତାପ୍ରାପ୍ତ ହୋଇ ପ୍ରସାରିତ ହୋଇଅଛି । ପ୍ରାୟ ଅଷ୍ଟମ ଶତାବ୍ଦୀ ବେଳକୁ ଏହାର ଏକ ରୂପରେଖର ଆଭାସ ମିଳିଥିଲା ।

ପ୍ରତ୍ୟେକ ଦେଶର ପ୍ରଥମେ ଭାଷା ସୃଷ୍ଟି ହୁଏ । ପରେ ଏହା ପରିପୁଷ୍ଟ ହୋଇ ସାହିତ୍ୟ-ସୁମନ ରୂପରେ ବିକଶିତ ହୋଇ ତା'ର ସୌରଭ ଦେଶ ବିଦେଶରେ ବିତରଣ କରେ ।

ପୂର୍ବେ ଆମ ଦେଶର ଅଧିବାସୀମାନେ ଯେଉଁ ଭାଷା ବ୍ୟବହାର କରୁଥିଲେ ତା' ଉପରେ ସଂସ୍କୃତ, ପାଲି, ମାଗଧୀ ପ୍ରାକୃତ,

ସୌରସେନୀ, ମାଗଧୀ, ମହାରାଷ୍ଟ୍ରୀୟ ପ୍ରାକୃତ ଭାଷା ଏବଂ ଦକ୍ଷିଣ ଭାରତରେ ଦ୍ରାବିଡ଼ୀୟ, ତେଲୁଗୁ, ତାମିଲ ଭାଷାର ପ୍ରଭାବ ପଡ଼ିଛି । ଜଣାଯାଏ ଯେ ଆନୁମାନିକ ୧୧୦୦ ଖ୍ରୀ:ଅ: ବେଳକୁ ଏହି ଭାଷାର ସୁଗଠିତ ଅଙ୍ଗ ସୌଷ୍ଠବ ପ୍ରକାଶ ପାଇଥିଲା । ଅନୁସନ୍ଧାନରୁ ଜଣାଯାଏ ଯେ ଏହି ପ୍ରାଥମିକ ସ୍ତରର ପଠିତ ଭାଷାରେ ତାନ୍ତ୍ରିକ ବୌଦ୍ଧ ଧର୍ମର ଗୀତ ଓ 'ନାଥଧର୍ମ' ସମ୍ପର୍କୀୟ କେତେକ ରଚନା ଲେଖା ଯାଇଥିଲା ।

ପଠାଣ ଓ ମୋଗଲ ସମୟରେ ପ୍ରାୟ ୧୪୦୦ ଖ୍ରୀ:ଅ: ଠାରୁ ଏଥିରେ ପାର୍ଶି, ଆରବୀ, ହିନ୍ଦୀ, ବଙ୍ଗଳା ଓ ପରେ ପରେ ଫରାସୀ, ପର୍ତ୍ତୁଗୀଜ, ଇଂରେଜୀ ପ୍ରଭୃତି କେତେକ ଭାଷାର ଅଳ୍ପ କେତେକ ଶବ୍ଦ ଦ୍ୱାରା କଳେବର ବୃଦ୍ଧି କରିଥିଲା ।

୧୧୦୦ ଠାରୁ ୧୪୦୦ ଖ୍ରୀ: ଅ. ପର୍ଯ୍ୟନ୍ତ ଏହାକୁ 'ପ୍ରାକ୍-ସାରଳା' ଯୁଗ ବୋଲି ଧରା ଯାଇପାରେ ।

ଦ୍ୱିତୀୟ ସ୍ତରରେ ପ୍ରାଚୀନ ଯୁଗ ହିସାବରେ ଆନୁମାନିକ ୧୪୦୦—୧୫୦୦ ଖ୍ରୀ:ଅ: ପର୍ଯ୍ୟନ୍ତ ଆଦିକବି 'ସାରଳାଦାସ'ଙ୍କ ଯୁଗ ଆରମ୍ଭ ହୋଇ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ବିଶେଷ ଭାବରେ ପରିପୁଷ୍ଟ ହୋଇ ବଳିଷ୍ଠ ରୂପ ନେଇଥିଲା ।

ତା'ପରେ ପ୍ରାୟ ୧୫୦୦—୧୬୫୦ ଖ୍ରୀ: ଅ: ପର୍ଯ୍ୟନ୍ତ 'ପଞ୍ଚସଖା' ଯୁଗ ଆରମ୍ଭ ହେଲା । ସାରଳାଦାସ ଯୁଗ ଓ ପଞ୍ଚସଖା ଯୁଗରେ ରାମାୟଣ, ମହାଭାରତ, ପୁରାଣ, ଭାଗବତ, ସ୍ତୁତି, ଗୀତା କୋଇଲି ଇତ୍ୟାଦି ରଚନା ହୋଇଥିଲା ।

ବୈଷ୍ଣବଧର୍ମ ପ୍ରଚାରକ ଶ୍ରୀ ଚୈତନ୍ୟଦେବଙ୍କର ପାଞ୍ଚ ଜଣ

ସଖା ଥିଲେ—ବଳରାମ ଦାସ, ଅଚ୍ୟୁତାନନ୍ଦ ଦାସ, ଯଶୋବନ୍ତ ଦାସ, ଅନନ୍ତ ଦାସ । ଏମାନେ ଧର୍ମ ସାହିତ୍ୟ, ଭକ୍ତି ସାହିତ୍ୟ ବିଶେଷ ଭାବରେ ଲେଖିଥିଲେ ।

ଅର୍ଜ୍ଜୁନ ଦାସ, କାର୍ତ୍ତିକ ଦାସ, ଶିଶୁଶଙ୍କର ଦାସ, ଦେବଦୁର୍ଲ୍ଲଭ ଦାସ, ବିଷ୍ଣୁଦାସ ଇତ୍ୟାଦି କେତେଜଣ କାବ୍ୟ ଲେଖକ ହିସାବରେ କବି ପ୍ରତିଷ୍ଠା ବିଶେଷଭାବରେ ଲାଭ କରିଥିଲେ ।

ମଧ୍ୟଯୁଗ ବା ସାମନ୍ତବାଦୀ ଯୁଗରେ ମଧ୍ୟ ଓଡ଼ିଶାରେ ରାଜା, ମହାରାଜା, ଜମିଦାରମାନେ ଅର୍ଥଶକ୍ତି ଓ ରାଜଶକ୍ତିର ଜୋରକୁ ହାତରେ ରଖି ରାଜ୍ୟ ପରିଚାଳନା କରୁଥିଲେ । ଏ ସମାଜ ଥିଲା 'ରାଜତାନ୍ତ୍ରିକ' । ଯେଉଁମାନେ ରାଜାନୁଗତ ହୋଇ ପାରୁଥିଲେ ସେମାନେ ଜ୍ଞାନୀ, ପଣ୍ଡିତ, କଳାକାର ରୂପେ ସମାଜରେ ଆଦୃତ ହେଉଥିଲେ । ଏହି ଯୁଗରେ ସାହିତ୍ୟ ଚର୍ଚ୍ଚା ରାଜ ଦରବାରରେ ସାଧାରଣତଃ ସୀମିତ ଥିଲା । ରାଜାମାନେ ନିଜେ ସାହିତ୍ୟ ସୃଷ୍ଟି କରିବା ଅଥବା ସାହିତ୍ୟ ସ୍ରଷ୍ଟା-ମାନଙ୍କର ପୃଷ୍ଠପୋଷକତା କରି ଅକ୍ଷୟ ସୁନାମ ରଖିଛନ୍ତି, ସେମାନଙ୍କ ମଧ୍ୟରୁ ଅଧିକାଂଶ ଗଞ୍ଜାମ ଜିଲ୍ଲା ଓ ତାହାର ପାଶ୍ୱର୍ସ୍ଥିତ ଅଞ୍ଚଳର । କାରଣ କବିଙ୍କୁ ସମ୍ମାନ ଦେବା ପରମ୍ପରାଟି ଗଞ୍ଜାମରେ ସୁପ୍ରତିଷ୍ଠିତ । ବିଶେଷରେ ସଂସ୍କୃତ ପଣ୍ଡିତ କବିମାନଙ୍କର ସ୍ଥାନ ରାଜ ଦରବାରରେ ଉଚ୍ଚରେ ଥିଲା । ଦରବାରୀ ଯୁଗର ପଣ୍ଡିତ, କବି, ଶିଳ୍ପୀ, ସଂଗୀତଜ୍ଞ-ମାନେ ରାଜ ପୃଷ୍ଠପୋଷକତା ଲାଭକରିବାରେ ଚେଷ୍ଟିତ ଥିଲେ ।

ସମାଲୋଚକଙ୍କ ମତରେ ସାଧାରଣତଃ ଦେଖିବାକୁ ଗଲେ ୧୬୫୦–୧୮୫୦ ଖ୍ରୀ:ଅ: ପର୍ଯ୍ୟନ୍ତ ହେଉଛି ଓଡ଼ିଆ ସାହିତ୍ୟର 'ମଧ୍ୟଯୁଗ' । ଏହି ଯୁଗରେ କାବ୍ୟ, କବିତା, ଛାନ୍ଦ ରଚନାରେ 'ରୀତି' ଉପରେ

କବିମାନେ ବିଶେଷ ପ୍ରାଧାନ୍ୟ ଆରୋପ କରୁଥିଲେ । ଏହି ରୀତିବାଦର ଆଦର୍ଶ ଓ ରସ ପରିକଳ୍ପନା ଯେତେ ଦୂର ସମ୍ଭବ ପ୍ରାକୃତ, ସଂସ୍କୃତଭାଷା ସାହିତ୍ୟ ମାଧ୍ୟମରେ ଓଡ଼ିଆ ସାହିତ୍ୟକୁ ପ୍ଳାବନ କରିଛି । ତେଣୁ ତା'ର ରଚନା ଶୈଳୀ, ଶୃଙ୍ଗାର ରସ ଓ ଅଳଙ୍କାର ଇତ୍ୟାଦି ପ୍ରୟୋଗ ବିଧିକୁ ମଧ୍ୟଯୁଗୀୟ କବିମାନେ ମୂଳ ଆଦର୍ଶ ରୂପେ ଗ୍ରହଣ କରିଥିଲେ । ଏହି ସମୟରେ ସାହିତ୍ୟର ଅନ୍ୟ ଗୋଟିଏ ବୈଶିଷ୍ଟ୍ୟ ହେଉଛି ତା'ର 'ଭକ୍ତିବାଦ' ।

ଏ ରୀତି ଯୁଗର ଅନ୍ୟତମ ସର୍ବଶ୍ରେଷ୍ଠ କବି ହେଉଛନ୍ତି କବି-ସମ୍ରାଟ ଉପେନ୍ଦ୍ର ଭଂଜ । ତେଣୁକରି 'ରୀତିଯୁଗ'କୁ 'ଭଞ୍ଜଯୁଗ' ବୋଲି ଅଭିହିତ ହୁଏ । ଆଜି କେହି କେହି 'ଛାନ୍ଦଯୁଗ' ବୋଲି ନାମକରଣ କରିଛନ୍ତି । କାରଣ ଛାନ୍ଦମାନଙ୍କୁ ସଙ୍ଗୀତ ରୂପେ ଗାଇବା ପାଇଁ ବୃତ୍ତି ବା ରାଗ ପ୍ରଚଳନ ହୋଇଥିଲା ।

ଛାନ୍ଦ ଯୁଗର ବିଶିଷ୍ଟ କବି ହେଉଛନ୍ତି ଧନଞ୍ଜୟ ଭଞ୍ଜ, ଉପେନ୍ଦ୍ର ଭଞ୍ଜ, ଦୀନକୃଷ୍ଣ ଦାସ, ଅଭିମନ୍ୟୁ ସାମନ୍ତସିଂହାର, ଲୋକନାଥ ବିଦ୍ୟା-ଧର, ସାଧୁଚରଣ ଦାସ, ଭକ୍ତଚରଣ ଦାସ, ବ୍ରଜନାଥ ବଡ଼ଜେନା, ଗୋପାଳକୃଷ୍ଣ ପଟ୍ଟନାୟକ, କବିସୂର୍ଯ୍ୟ ବଳଦେବ ରଥ ଓ ଯଦୁମଣି-ମହାପାତ୍ର ।

କେତେକ ପଣ୍ଡିତଙ୍କ ମତରେ "ଓଡ଼ିଆ ଭାଷାର ରୂପରେଖ ଖାରବେଳଙ୍କ ଶିଳାଲିପିରେ ମିଳିଥିଲେ ମଧ୍ୟ କଳିଙ୍ଗ, ଓଡ୍ର ତଥା ଉତ୍କଳର କଥା ଜୈନ, ବୌଦ୍ଧ ଓ ସଂସ୍କୃତ କାବ୍ୟ, ପୁରାଣ ଓ ସାହିତ୍ୟ ମାନଙ୍କରେ ଉଲ୍ଲେଖ ଅଛି । ତେଣୁ ଖ୍ରୀ:ପୂ: ପ୍ରାଗଶହ ଶତାବ୍ଦୀରେ କଳିଙ୍ଗ ତଥା ଓଡ୍ର ସମସ୍ତ ଭାରତରେ ତା'ର ପ୍ରଭାବ ବିସ୍ତାର କରିପାରିଥିଲା ।"

ଚର୍ଯ୍ୟାଗୀତିକାରମାନଙ୍କ ମଧ୍ୟରେ ହାଡ଼ିପା, ଲୁଇପା, ଶବରୀପା, କାହ୍ନୁପା, ସରହ ଆଦି ବହୁ ଓଡ଼ିଆ ସିଦ୍ଧ ସାଧକଙ୍କ ସନ୍ଧାନ ମିଳେ ।

ଧନଞ୍ଜୟ ଭଞ୍ଜ, ଉପେନ୍ଦ୍ର ଭଞ୍ଜ, ନୃସିଂହ ପଟ୍ଟନାୟକ ଓ ଦ୍ୱିଜ ଦାମୋଦର ପ୍ରଭୃତି କବିମାନେ ବ୍ୟଞ୍ଜନ ବର୍ଣ୍ଣମାଳାଶ୍ରିତ ଚଉପଦୀ ଗୁଡ଼ିକରେ ନାୟକ ନାୟିକାମାନଙ୍କର ବିରହ ଭାବକୁ ଚିତ୍ରିତ କରି-ଛନ୍ତି । ମାତ୍ର ସର୍ବ ପ୍ରଥମେ କବିସୂର୍ଯ୍ୟ ଏହି ଗୀତିଗୁଡ଼ିକରୁ ରାଧାକୃଷ୍ଣ-ଲୀଳା କଥାକୁ ସରସ ଭାବେ ଫୁଟାଇବାରେ କୃତକାର୍ଯ୍ୟ ହୋଇଛନ୍ତି ।

କବିସୂର୍ଯ୍ୟଙ୍କ ପୂର୍ବରୁ ଦୀନକୃଷ୍ଣ, ହରିଚନ୍ଦନ, ଧନଞ୍ଜୟ ଭଞ୍ଜ, ଉପେନ୍ଦ୍ର ଭଞ୍ଜ ପ୍ରଭୃତି କବିମାନେ ସପ୍ତଦଶ ଓ ଅଷ୍ଟାଦଶ ଶତାବ୍ଦୀରୁ ଚଉତିଶାର ଖାଣ୍ଟି ଓଡ଼ିଆ ଗୀତି କବିତାରେ ପ୍ରଚଳନ କରିଛନ୍ତି ।

## ବେଦ ଆଉ ଓଡ଼ିଆ ଭାଷାର ଉତ୍ପତ୍ତି

ଭାଷା ସାହିତ୍ୟ ଜଗତରେ ଯେତେ ଗ୍ରନ୍ଥ ମିଳୁଛି ତା' ଭିତରୁ ବେଦ ହିଁ ସର୍ବ ପ୍ରାଚୀନତମ ଗ୍ରନ୍ଥ । ଏହା ପ୍ରାୟ ପାଞ୍ଚହଜାର ବର୍ଷରୁ କମ୍ ନୁହେଁ । ଆର୍ଯ୍ୟମାନେ ବୈଦିକ ଭାଷାରେ କଥାବାର୍ତ୍ତା କରୁଥିଲେ । ଏହା ପରିବର୍ତ୍ତିତ ହୋଇ ଜନସାଧାରଣଙ୍କ ମଧ୍ୟରେ 'ପ୍ରାକୃତ' କଥିତ ଭାଷା ରୂପେ ଗ୍ରହଣ କରାଗଲା । ଖ୍ରୀ:ପୂ: ପ୍ରାୟ ପାଞ୍ଚ, ଛ' ହଜାର ବର୍ଷ ସମୟରେ ବ୍ୟାକରଣିକ ପାଣିନିଙ୍କ ଦ୍ୱାରା ସଂସ୍କାର କରାଯାଇ ବେଦଭାଷା-କୁ ସଂସ୍କୃତ କୁହାଗଲା । ଆର୍ଯ୍ୟମାନେ ଏହି ଭାଷାକୁ କଥିତ ଓ ଲିଖିତ ଭାଷାରୂପେ ବ୍ୟବହୃତ କରିଥିଲେ । ପରିବାର ମଧ୍ୟରେ ପ୍ରାକୃତ ଓ ଶିଷ୍ଟ ସମାଜରେ ସଂସ୍କୃତରେ କଥାବାର୍ତ୍ତା କରୁଥିଲେ । ସଂସ୍କୃତ ପଣ୍ଡିତ-ମାନଙ୍କର ଭାଷା ରୂପରେ ଆବଦ୍ଧ ହୋଇ ରହିଲା । ରାଜକାର୍ଯ୍ୟ ଓ ରଚନା

ଆଦି ସଂସ୍କୃତରେ ଚଳୁଥିଲା । ସେଥିପାଇଁ ସଂସ୍କୃତଜ୍ଞମାନଙ୍କର ଆଦର ବହୁତ ଥିଲା ।

ବୁଦ୍ଧଦେବଙ୍କ ଜନ୍ମ ବେଳକୁ ଭାରତରେ ବହୁ ଅଞ୍ଚଳରେ କଥିତ ଭାଷାର ଉତ୍ପତ୍ତି ହୋଇ ସାରିଥିଲା । ଗଣ ମାଧ୍ୟମରେ ସହଜ ଭାଷା ରୂପେ ନିଜର ମତବାଦକୁ ପ୍ରଚାର ଓ ପ୍ରସାର କରିବା ପାଇଁ ପ୍ରାକୃତ ଭାଷାକୁ ବାହକ ରୂପେ ବ୍ୟବହାର କରୁଥିଲେ । ଏହି ପ୍ରାକୃତ ଭାଷା ପାଲୀ ବା ପାର୍ଲୀ ପ୍ରାକୃତ ନାମରେ ଅଭିହିତ । ଖ୍ରୀ: ପୂ: ତୃତୀୟ ଶତାବ୍ଦୀ ଠାରୁ ପ୍ରାୟ ପାଞ୍ଚଶହ ବର୍ଷ ଭିତରେ 'ପାଲୀ' ଭାଷା ଗ୍ରନ୍ଥଭାଷା ରୂପେ ବ୍ୟବହୃତ ହୋଇଥିଲା ।

ଉକ୍ତ ପ୍ରାକୃତ ପାଞ୍ଚ ଭାଗରେ ବିଭକ୍ତ ହେଲା । ଯଥା—ଉଦୀଚ୍ୟ, ପ୍ରାଚ୍ୟ, ମଧ୍ୟ ଦେଶୀୟ, କୋଶଳୀୟ ଓ ଦାକ୍ଷିଣାତ୍ୟ ।

'କୋଶଳୀୟ ପ୍ରାକୃତ' ମଧ୍ୟ ଚାରି ଭାଗରେ ବିଭକ୍ତ ହୋଇ ମାଗଧୀ, ପଶ୍ଚିମ ମାଗଧୀ, ମଧ୍ୟ ମାଗଧୀ ଓ ପୂର୍ବମାଗଧୀ ରୂପେ ନାମିତ ହେଲା ।

ପରିଶେଷରେ ପୂର୍ବ ମାଗଧୀରୁ ଓଡ଼ିଆ, ବଙ୍ଗାଳୀ, ଆସାମୀୟ ଭାଷା ଜନ୍ମ ହେଲା ।

ଭାରତରେ ଚଉଦ ଗୋଟି ଭାଷା ପ୍ରଧାନ । ତା' ଛଡ଼ା ଆଜି ପ୍ରାୟ ଦୁଇଶତ ଦଶ ଭାଷା ପ୍ରଚଳିତ ଥିବା ଜଣାଯାଏ । ଭାଷାମାନଙ୍କୁ ସାଧାରଣରେ ନିମ୍ନଲିଖିତ ଭାବେ ବିଭକ୍ତ କରି ଯାଇଛି ।

ଆର୍ଯ୍ୟଭାଷା,—ହିନ୍ଦୀ, ମରାଠୀ, ବଙ୍ଗାଳୀ, ଓଡ଼ିଆ, ପଞ୍ଜାବୀ, ଗୁଜରାଟୀ । ଦ୍ରାବିଡ ଭାଷା —ତେଲୁଗୁ, ତାମିଲ୍, କାନଡ୍, ତୁଲୁ,

ମାଲପ୍ରାକୀ । ଆଦିବାସୀ ଭାଷା-- କୁଇ, ମୁଣ୍ଡା, ଢୋ, ଗାଦବା, ସାନ୍ତାଳୀ ।

## ଯୋଗଜନ୍ମା ଭଞ୍ଜ

ଓଡ଼ିଆଜାତି, ଭାଷା, ସାହିତ୍ୟ ଯେତେବେଳେ ଘୋର ଅନ୍ଧକାର ଦୁର୍ଦ୍ଦଶା ଭିତରେ ଗତି କରୁଥିଲା, ସେତେବେଳେ ଯୋଗଜନ୍ମା ଉପେନ୍ଦ୍ର ଭଞ୍ଜ ଜନ୍ମଗ୍ରହଣ କରି ଓଡ଼ିଆ ସାହିତ୍ୟକୁ ନବଜୀବନ ପ୍ରଦାନ କରିଥିଲେ । ସେ ଥିଲେ ଆମ ଜାତୀୟ ସାହିତ୍ୟର ଜାଗ୍ରତ ପ୍ରହରୀ ଓ ଜାଗ୍ରତ ଅଭୟ କବଚ । ନିଜ ଭାଷାକୁ ଆନ୍ତରିକ ଶ୍ରଦ୍ଧା ଯୋଗୁଁ ସେ ସଂସ୍କୃତ ଆଶ୍ରୟ କରି ତା'ର ସମକକ୍ଷ ପରି ମାତୃଭାଷାକୁ ଶକ୍ତିଶାଳୀ କରିଥିଲେ । ସାହିତ୍ୟ ଜଗତରେ ସେ ଯେଉଁ ବହୁତଳମନ୍ଦିର ନିର୍ମାଣ କରିଛନ୍ତି ତା'ର ସମକକ୍ଷ ସାହିତ୍ୟ ଅନ୍ୟ ଭାରତୀୟ ଭାଷାରେ ବିରଳ ।

ପଡ଼ୋଶୀ ରାଜ୍ୟର କେତେକ ବ୍ୟକ୍ତିଙ୍କର ଉଦ୍ୟମ ଫଳରେ ଯେତେବେଳେ ଓଡ଼ିଆ ଭାଷାର ଅସ୍ତିତ୍ୱ ଲୋପ ପାଇବାକୁ ବସିଥିଲା, ସେତେବେଳେ କବିଙ୍କର ସାହିତ୍ୟ ହିଁ ଓଡ଼ିଆ ଭାଷାକୁ ଧ୍ୱଂସ ଅବସ୍ଥାରୁ ରକ୍ଷାକରି ମୃତସଞ୍ଜୀବନୀ ସୁଧା ଦାନ କରିଥିଲା । ଓଡ଼ିଆଭାଷା ଉପରେ ଓଡ଼ିଆ ବିଦ୍ୱେଷୀମାନଙ୍କର ପ୍ରବଳ ଆକ୍ରମଣ ହୋଇଥିଲା । ଯଥା କାନ୍ତିଭଟ୍ଟାଚାର୍ଯ୍ୟ କହିଥିଲେ "ଓଡ଼ିଆ ଏକ ସ୍ୱତନ୍ତ୍ର ଭାଷା ନୁହେଁ" । ରାଜେନ୍ଦ୍ରଲାଲ ମିତ୍ର ମଧ୍ୟ ଓଡ଼ିଆ ଭାଷାକୁ ଲୋପ କରିଦେବା ପାଇଁ ଚେଷ୍ଟା ଚଳାଇଥିଲେ । ବିଜୟଚନ୍ଦ୍ର ମଜୁମ୍‌ଦାର ଓଡ଼ିଆ ସାହିତ୍ୟ ପରିଚୟରେ ଭଞ୍ଜଙ୍କୁ ପରିହାସ କରି ଡ଼ାକ୍ତର ମୋରେ ମିଡ଼ଲ ସାହେବଙ୍କ ଭାଷାତତ୍ତ୍ୱ ସଭାରେ କହିଥିଲେ । ଏହାପରେ ଜେ· ଏମ୍. ବାନାର୍ଜୀ ଏହାକୁ ଓଡ଼ିଆ ଭାଷା ବିରୋଧୀ ବୋଲି ଯୁକ୍ତି ବାଢ଼ିଥିଲେ ।

ପ୍ରାତଃ ସ୍ମରଣୀୟ, ବହୁ ଭାଷା ବିଶାରଦ ବାଲେଶ୍ୱର ଜିଲ୍ଲା-ପାଳ 'ଜନ ବିମ୍ସ' ଉପେନ୍ଦ୍ର ଭଞ୍ଜଙ୍କର ସାହିତ୍ୟରେ ମୁଗ୍ଧ ହୋଇ ଭଞ୍ଜଙ୍କ ଜନ୍ମଭୂମି ଘୁମୁସର ଅଞ୍ଚଳର ଭାଷା ଶୁଦ୍ଧି ବିଷୟ ନେଇ ଉଚ୍ଚ ଧାରଣା ପୋଷଣ କରିଥିଲେ । ଆହୁରି ମଧ୍ୟ କହିଛନ୍ତି ଭଞ୍ଜଙ୍କ ବେଳକୁ ଓଡ଼ିଆ ଭାଷାର ସ୍ତର ଅତ୍ୟନ୍ତ ଉନ୍ନତ ଥିଲା । ତାହା ଏତେ ଉନ୍ନତ ଥିଲା ଯେ ପ୍ରାୟ ଦୁଇଶତ ତିରିଶ ବର୍ଷ ପର୍ଯ୍ୟନ୍ତ ଭାଷା ବ୍ୟବହାରରେ ଭାଷା ସ୍ତରରେ କିଛି ପରିବର୍ତ୍ତନ ହୋଇ ନଥିଲା । କମିଶନର ରେଭେ-ନ୍ସା ସାହେବ ମଧ୍ୟ ଓଡ଼ିଆ ଭାଷାର ପୃଷ୍ଠପୋଷକତା କରିଥିଲେ । କବିବର ରାଧାନାଥ ରାୟଙ୍କ ଠାରୁ ଶିକ୍ଷା ବିଭାଗର ଇନ୍ସପେକ୍ଟର ଭୂଦେବ ମୁଖୋପାଧ୍ୟାୟ, ଉପେନ୍ଦ୍ରଙ୍କ ବୈଦେହୀଶ ବିଳାସର କେତେକ ଛାନ୍ଦ ଶୁଣି ବିହ୍ୱଳିତ ହୋଇ କହିଥିଲେ— ଯେ 'ଓଡ଼ିଶାକୁ କୁଲିଙ୍କର ଦେଶ ବୋଲି କହନ୍ତି କିପରି ?' କବି ସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କର ଅସା-ଧାରଣ ପାଣ୍ଡିତ୍ୟ ଥିଲା । ତାଙ୍କର ଅନବଦ୍ୟ ସାହିତ୍ୟକୁ ଅନୁଶୀଳନ କରିବା ପାଇଁ ଯୁଗ ଯୁଗ ଲାଗିଯିବ । କବିଙ୍କ ପରେ ବହୁ କବି ତାଙ୍କ ଲେଖାରୁ ପ୍ରେରଣା ପାଇ ଓଡ଼ିଆ ସାହିତ୍ୟକୁ ଋଦ୍ଧିମନ୍ତ କରିଛନ୍ତି ।

ଭାଷା ସୂତ୍ରରେ ପ୍ରଦେଶ ଗଠନ ପାଇଁ ଓଡ଼ିଆ ଭାଷା ଓ ସାହିତ୍ୟର ବଳିଷ୍ଠ ବିକାଶ ଯୋଗୁଁ କେବଳ ଓଡ଼ିଆମାନେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ସୃଷ୍ଟି କରି ପାରିଥିଲେ । ଯେଉଁ କେତେଜଣ ସାଧକଙ୍କର ଅବଦାନ, ଚେଷ୍ଟା ଫଳରେ ଭାଷାଗତ ଦାବୀ ସୁଦୃଢ଼ ହୋଇ ସ୍ୱୀକୃତ ପାଇଥିଲା—ସେମାନଙ୍କ ମଧ୍ୟରେ ଉପେନ୍ଦ୍ର ଭଞ୍ଜ ଅଗ୍ରଣୀ ।

## ରାଜପଣ ଆତ୍ମୀୟତା ଜାଣେନାହିଁ

ଇତିହାସ ତା'ର ପୁନରାବୃତ୍ତି କରେ । ରାଜପଦ କ୍ଷମତା

ଲାଳସାରେ ଅନ୍ଧ ହୋଇ ନିଜର ଜ୍ଞାତି, ପରିବାର ବନ୍ଧୁଙ୍କରେ ଅନେକ ମାତ ଅମାନୁଷିକ କର୍ମରେ ଲିପ୍ତ ରହେ । ପୁରାଣରେ 'କଂସ' ତାଂର ବାପା ଉଗ୍ରସେନଙ୍କୁ ଦ୍ୱାରରକ୍ଷକ ଭାବେ ରଖିଥିଲ । ଭାରତ ଇତିହାସରେ ଦେଖିବାକୁଗଲେ ଜଣାଯାଏ ଯେ 'ଅଜାତଶତ୍ରୁ' ତାଙ୍କ ପିତା ବିମ୍ବିସାର-ଙ୍କୁ କାରାଗାରରେ ବନ୍ଦୀକରି ହତ୍ୟା କରିଥିଲେ । ପୃଥ୍ୱୀରାଜ ଓ ଜୟ-ଚନ୍ଦ୍ରଙ୍କ ଭାତୃ ବିବାଦ ହିଁ ଭାରତରେ ପ୍ରଥମେ ବାହ୍ୟ ଶତ୍ରୁ ମହମଦ-ଘୋରୀଙ୍କୁ ପ୍ରବେଶ କରିବା ପାଇଁ ସୁଯୋଗ ଦେଇଥିଲା । ଆକବରଙ୍କ ସମୟରେ ତାଙ୍କ ପୁତ୍ର 'ସେଲିମ୍', ଜାହାଙ୍ଗୀରଙ୍କ ରାଜତ୍ୱ ସମୟରେ ତାଙ୍କ ପୁତ୍ର 'ଖୁସ୍ରୁ', ଶାହାଜାହାନଙ୍କ ସମୟରେ ତାଙ୍କ ପୁତ୍ର 'ଦାରା' ବିଦ୍ରୋହ କରିଥିଲେ । 'ଆଉରଙ୍ଗଜେବ' ତାଙ୍କ ପିତା ସାହାଜାହାନଙ୍କୁ ବନ୍ଦୀ କରିଥିଲେ । ଓଡ଼ିଶା ଇତିହାସରେ ପ୍ରତାପରୁଦ୍ରଦେବଙ୍କ ପରେ ତାଙ୍କ ସେନାପତି 'ଗୋବିନ୍ଦ ବିଦ୍ୟାଧର' ରାଜାହୋଇ ଭୋଇବଂଶ ପ୍ରତିଷ୍ଠା କରି ପ୍ରତାପରୁଦ୍ରଦେବଙ୍କର ପୁତ୍ର କାଳୁଆଦେବ ପରେ କଖାରୁଆଦେବଙ୍କୁ ହତ୍ୟା କରିଥିଲେ ।

ବୌଦ୍ଧରାଜା ସିଦ୍ଧବନ୍ଧୁ ନନ୍ଦଙ୍କ ପୁତ୍ରଙ୍କୁ ଭଞ୍ଜରାଜାମାନେ ଷଡଯନ୍ତ୍ର କରି ହତ୍ୟା କରିଥିଲେ । 'ଗୋପୀନାଥ ଭଞ୍ଜ' ତାଙ୍କ ବଡ଼ଭାଇ ବନମାଳୀ ଭଞ୍ଜଙ୍କୁ ହତ୍ୟା କରି ରାଜା ହୋଇଥିଲେ । 'ନୀଳକଣ୍ଠଭଞ୍ଜ' ରାଜା ହେବାପାଇଁ ଧନଞ୍ଜୟ ଭଞ୍ଜଙ୍କୁ ବୃଦ୍ଧ ବୟସରେ ଚମ୍ପାନାମୀ ଦ୍ୱାରା ବିଷ ପ୍ରୟୋଗ କରିବା, ଯୁବରାଜ ଗଙ୍ଗାଧରଭଞ୍ଜ ଓ ଗଙ୍ଗାଧରଙ୍କ ପୁତ୍ର ଶତ୍ରୁଘ୍ନଭଞ୍ଜଙ୍କୁ ଦାସ୍ୟାଦାସୀ ଦ୍ୱାରା ହତ୍ୟା କରିଥିଲେ । ପରେ ରଣଭଞ୍ଜଙ୍କୁ 'ଘନଭଞ୍ଜ' ହତ୍ୟା କରି ରାଜା ହୋଇଥିଲେ । ରାଜ୍ୟ ସିଂହାସନ ପାଇଁ ଭାତୃବିବାଦର ଜଘନ୍ୟ ହତ୍ୟାକାଣ୍ଡ ପାଇଁ ଭଞ୍ଜବଂଶର ସୁନାମ ଉପରେ କଳଙ୍କ କାଳିମା ଲାଗିଥିଲ ।

## ଭଞ୍ଜ ବଂଶାବଳୀ ରାଜତ୍ୱ (ଘୁମୁସର ରାଜଧାନୀ)

| | | | | | |
|---|---|---|---|---|---|
| ରଘୁନାଥ ଭଞ୍ଜ | ୮୩୨ ଖ୍ରୀ:ଅ | ଠାରୁ | ୮୫୨ ଖ୍ରୀ:ଅ: | | |
| ଅର୍ଜୁନ ଭଞ୍ଜ | ୮୫୨ , | ଠାରୁ | ୮୬୭ | , | |
| କେଶବ ଭଞ୍ଜ | ୮୬୭ , | ଠାରୁ | ୮୭୮ | , | (ଅପୁତ୍ରିକ) |
| ବନମାଳୀ ଭଞ୍ଜ | ୮୮୫ , | ଠାରୁ | ୮୯୯ | , | (ଅର୍ଜୁନଭଞ୍ଜଙ୍କ-ସାନଭାଇ) |
| ଗୋପାଳ ଭଞ୍ଜ | ୮୯୯ , | ଠାରୁ | ୯୨୨ | , | |
| ଗୋବର୍ଦ୍ଧନ ଭଞ୍ଜ | ୯୨୨ , | ଠାରୁ | ୯୩୬ | , | |
| ଜଗନ୍ନାଥ ଭଞ୍ଜ | ୯୩୬ , | ଠାରୁ | ୯୪୭ | , | |
| ହରିକୃଷ୍ଣ ଭଞ୍ଜ | ୯୪୭ , | ଠାରୁ | ୯୫୭ | , | |
| ଗୋକୁଳାନନ୍ଦ ଭଞ୍ଜ | ୯୫୭ , | ଠାରୁ | ୯୭୨ | , | |
| ଗୌରହରି ଭଞ୍ଜ | ୯୭୨ , | ଠାରୁ | ୯୯୨ | , | (ଅପୁତ୍ରିକ) |
| କୃଷ୍ଣ ଭଞ୍ଜ | ୯୯୨ , | ଠାରୁ | ୧୦୦୮ | , | (ଗୋକୁଳାନନ୍ଦ-ଭଞ୍ଜଙ୍କ ସାନଭାଇ) |
| ନୃସିଂହ ଭଞ୍ଜ | ୧୦୦୮ , | ଠାରୁ | ୧୦୨୬ | , | |
| ବଳଭଦ୍ର ଭଞ୍ଜ | ୧୦୨୬ , | ଠାରୁ | ୧୦୫୭ | , | |
| ମୁକୁନ୍ଦ ଭଞ୍ଜ | ୧୦୫୭ , | ଠାରୁ | ୧୦୭୩ | , | |
| ମଧୁସୂଦନ ଭଞ୍ଜ | ୧୦୭୩ , | ଠାରୁ | ୧୦୮୮ | , | |
| ନାରାୟଣ ଭଞ୍ଜ | ୧୦୮୮ , | ଠାରୁ | ୧୧୦୭ | , | |
| ହରଧର ଭଞ୍ଜ | ୧୧୦୭ , | ଠାରୁ | ୧୧୨୨ | , | |
| ନରହରି ଭଞ୍ଜ | ୧୧୨୨ , | ଠାରୁ | ୧୧୪୦ | , | |
| ଜଗନ୍ନାଥ ଭଞ୍ଜ | ୧୧୪୦ , | ଠାରୁ | ୧୧୬୧ | , | |
| ମତ୍ତହସ୍ତୀ ଭଞ୍ଜ | ୧୧୬୧ , | ଠାରୁ | ୧୧୮୦ | , | |
| ପୁରୁଷୋତ୍ତମ ଭଞ୍ଜ | ୧୧୮୦ , | ଠାରୁ | ୧୧୯୦ | , | |

## ଭଞ୍ଜ ବଂଶାବଳୀ ଚକ୍ର (କୁଳାଡ଼ ରାଜଧାନୀ)

| ନାମ | ଆରମ୍ଭ | | ଶେଷ | ମନ୍ତବ୍ୟ |
|---|---|---|---|---|
| ପ୍ରତାପ ଭଞ୍ଜ | ୧୧୯୦ ଖ୍ରୀ:ଅ: | ଠାରୁ | ୧୨୦୭ ଖ୍ରୀ:ଅ: | |
| ଚନ୍ଦ୍ରଧର ଭଞ୍ଜ | ୧୨୦୭ „ | ଠାରୁ | ୧୨୧୭ | (ଅପୁତ୍ରିକ) |
| ହରିଶରଣ ଭଞ୍ଜ | ୧୨୧୭ „ | ଠାରୁ | ୧୨୩୦ „ | (ଚନ୍ଦ୍ରଧର-ଭଞ୍ଜଙ୍କ ସାନଭାଇ) |
| କପିଳ ଭଞ୍ଜ | ୧୨୩୦ „ | ଠାରୁ | ୧୨୫୭ „ | |
| ଶ୍ରୀଧର ଭଞ୍ଜ | ୧୨୫୭ „ | ଠାରୁ | ୧୨୭୨ „ | |
| ରାମଚନ୍ଦ୍ର ଭଞ୍ଜ | ୧୨୭୨ „ | — | ୧୨୯୩ „ | |
| ଲକ୍ଷ୍ମଣ ଭଞ୍ଜ | ୧୨୯୩ „ | — | ୧୩୦୮ „ | |
| ତ୍ରିଲୋଚନ ଭଞ୍ଜ | ୧୩୦୮ „ | — | ୧୩୨୬ „ | |
| ହରିସେବକ ଭଞ୍ଜ | ୧୩୨୬ „ | — | ୧୩୪୩ „ | (ଅପୁତ୍ରିକ) |
| ଗଦାଧର ଭଞ୍ଜ | ୧୩୪୩ „ | — | ୧୩୫୮ „ | (ହରିସେବକ-ଭଞ୍ଜଙ୍କ ସାନଭାଇ) |
| ଦୟାନିଧି ଭଞ୍ଜ | ୧୩୫୮ „ | — | ୧୩୬୯ „ | |
| ଶ୍ରୀଧର ଭଞ୍ଜ | ୧୩୬୯ „ | — | ୧୩୮୮ „ | |
| କୃପାସିନ୍ଧୁ ଭଞ୍ଜ | ୧୩୮୮ „ | — | ୧୪୦୦ „ | |
| ମାଧବ ଭଞ୍ଜ | ୧୪୦୦ „ | — | ୧୪୩୧ „ | |
| କମଳଲୋଚନ ଭଞ୍ଜ | ୧୪୩୧ „ | — | ୧୪୪୪ „ | |
| ହରିହର ଭଞ୍ଜ | ୧୪୪୪ „ | — | ୧୪୫୮ „ | |
| ପାଗଳ ଗୋପୀନାଥଭଞ୍ଜ | ୧୪୫୮ „ | — | ୧୪୮୧ „ | (ପୁରୀ ରାଜ-କନ୍ୟାକୁ ବିବାହ କରିଥିଲେ) |
| ଦେବେନ୍ଦ୍ର „ | ୧୪୮୧ „ | — | ୧୪୯୭ „ | |
| ହୃଷିକେଶ „ | ୧୪୯୭ „ | — | ୧୫୧୪ „ | |

| | | | |
|---|---|---|---|
| ପିତାମ୍ବର ଭଞ୍ଜ | ୧୫୧୪ , | — ୧୫୩୨ , | |
| ଜଗନ୍ନାଥ ଭଞ୍ଜ | ୧୫୩୨ , | — ୧୫୪୮ , | |
| ତ୍ରିବିକ୍ରମ ଭଞ୍ଜ | ୧୫୪୮ , | — ୧୫୫୮ , | |
| ଗୋଦାବରୀଶ ଭଞ୍ଜ | ୧୫୫୮ , | — ୧୫୭୪ , | |
| ରଜେନ୍ଦ୍ର ଭଞ୍ଜ | ୧୫୭୪ , | — ୧୫୮୯ , | |
| ଗୋପାଳ ଭଞ୍ଜ | ୧୫୮୯ , | — ୧୬୧୧ , | |
| ବନମାଳୀ „ | ୧୬୧୧ , | — ୧୬୧୪ , | (ହତ୍ୟା) |
| ଗୋପୀନାଥ „ | ୧୬୧୪ , | — ୧୬୩୨ , | (ଗୋପାଳ-ଭଞ୍ଜଙ୍କ ସାନପୁଅ) |
| ପ୍ରତାପ ଧନଞ୍ଜୟଭଞ୍ଜ | ୧୬୩୨ , | — ୧୭୦୧ , | |
| ନୀଳକଣ୍ଠ „ | ୧୭୦୧ , | — ୧୭୦୩ , | |
| ରଣ୍ଡ „ | ୧୭୦୪ , | — ୧୭୦୬ , | (ହତ୍ୟା) |
| ଗୋବନ୍ଦ „ | ୧୭୦୭ , | — ୧୭୫୪ , | |
| କୃଷ୍ଣ „ | ୧୭୫୪ , | — ୧୭୭୩ , | |
| ବିକ୍ରମ „ | ୧୭୭୩ , | — ୧୭୮୨ , | |
| ଲକ୍ଷ୍ମଣ „ | ୧୭୮୨ , | — ୧୭୮୮ , | |
| ଶ୍ରୀକର „ | ୧୭୮୮ , | — ୧୭୯୯ } , | |
| | ୧୮୧୪ , | — ୧୮୩୨ } , | |
| ଧନଞ୍ଜୟ „ | ୧୭୯୫ , | — ୧୮୦୮ } , | (୧୮୩୫ ରେ |
| | ୧୮୩୨ , | — ୧୮୩୫ } , | ଉଦୟଗିରି-ଠାରେ ମୃତ୍ୟୁ) |
| ବଳଭଦ୍ର „ | — | — | (ଅକାଳ ମୃତ୍ୟୁ) |

ବ୍ରଜରାଜ ଭଞ୍ଜଙ୍କ ସମୟରେ ଇଂରେଜମାନେ ତାଙ୍କୁ ବନ୍ଦୀକରି ୧୮୩୬ ଖ୍ରୀ:ଅ:ରେ ଘୁମୁସର ଅଧିକାର କଲେ ।

●

# ଭଞ୍ଜ ବଂଶାବଳୀ

କବିମାନଙ୍କର ଜୀବନୀ ଆଲୋଚନା କଲାବେଳେ ତାଙ୍କର ବିଷୟରେ ସାଧାରଣତଃ ସେଥିରୁ ଶିକ୍ଷାମୂଳକ, ଐତିହାସିକ ଓ ବିଶେଷତଃ କାବ୍ୟିକ ପ୍ରତିଭାର ମୂଳ ବସ୍ତୁକୁ ଆଲୋଚନା କରାଯାଇ ଥାଏ । ମାତ୍ର ତାଙ୍କର ଐତିହାସିକ କଥାବସ୍ତୁ ଲୋକଲୋଚନରେ ବିଶେଷ ଭାବରେ ଦୃଷ୍ଟିକୁ ଆସି ନଥିବା ଯୋଗୁଁ ଏହାକୁ ଏଠାରେ ଅବତାରଣା କରିବା ସମିଚୀନ ମନେ କଲି ।

ଉପେନ୍ଦ୍ର ଭଞ୍ଜଙ୍କ ପିତାମହ ହେଉଛନ୍ତି ଧନଞ୍ଜୟ ଭଞ୍ଜ । ସେ ସାନ ଭାଇ ଗୋବିନ୍ଦ ଭଞ୍ଜ ଥାଟରାଜଙ୍କୁ ରାଜ୍ୟର ଶାସନ ଭାର ଅର୍ପଣ କରି ସାହିତ୍ୟ ସଙ୍ଗୀତ ଚର୍ଚ୍ଚାରେ ବହୁ ସମୟ ଓ ଭୋଗବିଳାସ, ବ୍ୟସନରେ ଦିନ ଅତିବାହିତ କରୁଥିଲେ । ତାଙ୍କର ବହୁ ରାଣୀଭିତରେ ସେ ମଣ୍ଡାଦେଇଙ୍କୁ ବିଶେଷ ଭଲ ପାଉଥିଲେ । ଏହାର ସୁଯୋଗ ନେଇ ମଣ୍ଡାଦେଇ ନିଜ ପୁତ୍ର ନୀଳକଣ୍ଠ ଭଞ୍ଜଙ୍କୁ ଅନ୍ୟାୟ ଭାବେ ରାଜା କରିବା ପାଇଁ ଭବିଷ୍ୟତ ଲକ୍ଷ୍ୟ ସାଧନ ପାଇଁ ଚକ୍ରାନ୍ତ କରି ଧନଞ୍ଜୟ ଭଞ୍ଜଙ୍କ ଦ୍ୱାରା ଗୋବିନ୍ଦ ଭଞ୍ଜଙ୍କୁ ଦେଶରୁ ବିତାଡ଼ିତ କଲେ । ସେ ଭୟଭୀତ ହୋଇ ସପରିବାର ନୟାଗଡ଼ରେ ଆଶ୍ରୟ ନେଇ ଶ୍ୱଶୁରର ପୁରୀକୁ ଚାଲିଗଲେ । ଗୋବିନ୍ଦ ଭଞ୍ଜଙ୍କ ପୁତ୍ର ଘନ ଭଞ୍ଜ ଧରାକୋଟ ପଳାୟନ କଲେ ।

ପ୍ରଥମ ରାଣୀଙ୍କର ପୁତ୍ର ଯୁବରାଜ ଗଙ୍ଗାଧରଙ୍କୁ ରାଜା ତାଙ୍କ ପରେ ରାଜ୍ୟ ସିଂହାସନ ଦେବା ପାଇଁ ସ୍ଥିର କରିଥିଲେ । ମାତ୍ର ମଣ୍ଡା-ଦେଇ ଗଙ୍ଗାଧର କୁଚକ୍ରାନ୍ତ କରୁଛନ୍ତି ବୋଲି ରାଜାଙ୍କ ମନରେ ବିଶ୍ୱାସ ଜନ୍ମାଇଥିଲେ । ଏହି ପରିସ୍ଥିତିରେ ବୃଦ୍ଧ ଧନଞ୍ଜୟ ଭଞ୍ଜଙ୍କୁ ବିଧବା

ବ୍ରାହ୍ମଣୀ ନାମ୍ନୀ ଚମ୍ପା ଦ୍ୱାରା ବିଷ ପ୍ରୟୋଗ କରି ମୃତ୍ୟୁ ମୁଖକୁ ଠେଲି-
ଦେବା ପାଇଁ ସାହସୀ ହେଲେ ।

ପିତାଙ୍କର ମୃତ୍ୟୁପରେ ବଳ ମୃଦଙ୍ଗ ନଗରର ଜନ ବଳ ସହ ନୀଳକଣ୍ଠ ରାଜା ହେଲେ । ନିର୍ଜନ ନିଶାରେ ରାଜବାଟୀରେ ପ୍ରବେଶ କରି ପ୍ରଥମେ ଗଙ୍ଗାଧରଙ୍କୁ ଓ ପରେ ଗଙ୍ଗାଧରଙ୍କ ପୁତ୍ର ଶତ୍ରୁଘ୍ନ ଭଞ୍ଜଙ୍କୁ ପଳାୟନ କଲା ସମୟରେ ଦନ୍ତାଦସ୍ତା ହାତରେ ହତ୍ୟା କଲେ । ଶତ୍ରୁଘ୍ନ-ଭଞ୍ଜଙ୍କର ଗର୍ଭବତୀ ସ୍ତ୍ରୀ ପ୍ରଜାମାନଙ୍କ ବନ୍ଦୀକଲେ । ମାତ୍ର କୌଶଳ କ୍ରମେ କେତେକ ଅନୁଚର ସହ ପଳାୟନ କରି ନିକଟବର୍ତ୍ତୀ କରଡା ରାଜ୍ୟରେ ଆଶ୍ରୟ ନେଲେ । କିଛିଦିନ ପରେ ବାରବାଠାରେ ତାଙ୍କର ଗୋଟିଏ ପୁତ୍ର ଜନ୍ମହେଲା । ତାଙ୍କର ନାମ ରଣ ଭଞ୍ଜ । ଏହିପରି ନୀଳକଣ୍ଠ ଭଞ୍ଜ ରାଜ୍ୟକୁ ନିଷ୍କଣ୍ଟକ କଲେ ।

ପରକ୍ଷଣରେ ନାନା ପ୍ରକାର ଚକ୍ରାନ୍ତ କରି ନୀଳକଣ୍ଠ ଭଞ୍ଜ, ଧନଞ୍ଜୟ ଭଞ୍ଜଙ୍କ ପରେ ୧୭୦୧ ଖ୍ରୀ: ଅ: ଠାରୁ ୧୭୦୩ ଖ୍ରୀ: ଅ: ପର୍ଯ୍ୟନ୍ତ ରାଜା ହୋଇ ରହିଲେ ।

ସତ୍ୟ କେବେ ଲୁଚି ରହେନାହିଁ । କ୍ରମାଗତ ଭାବେ ଧନଞ୍ଜୟ ଭଞ୍ଜଙ୍କୁ ବିଷ ପ୍ରୟୋଗ କରି ହତ୍ୟା, ଗଙ୍ଗାଧର ଭଞ୍ଜ ଓ ତାଙ୍କ ପୁତ୍ର ଶତ୍ରୁଘ୍ନ ଭଞ୍ଜଙ୍କର ଲୋମହର୍ଷଣକାରୀ ହତ୍ୟା, ଗୋବିନ୍ଦ ଭଞ୍ଜ ଓ ଘନ-ଭଞ୍ଜଙ୍କର ରାଜ୍ୟରୁ ଅନ୍ୟାୟ ଭାବେ ବିତାଡ଼ନର କାହାଣୀ ରହସ୍ୟ ସର୍ବ-ସାଧାରଣରେ ପ୍ରକାଶ ପାଇବା ପରେ ଏହି ଅଞ୍ଚଳର ରାଜଭକ୍ତ ପ୍ରଜା, ସର୍ଦ୍ଦାରମାନେ ଉତ୍ତ୍ୟକ୍ତ ହୋଇ ଉଠି ନୀଳକଣ୍ଠ ଭଞ୍ଜଙ୍କ ବିରୁଦ୍ଧରେ ଘନ ଭଞ୍ଜ ଓ ଗୋବିନ୍ଦ ଭଞ୍ଜଙ୍କୁ ସାହାଯ୍ୟ କଲେ । ଶତ୍ରୁଘ୍ନ ଭଞ୍ଜଙ୍କର

ନାବାଳକ ପୁତ୍ର ରଣ ଭଞ୍ଜଙ୍କୁ ଧନଞ୍ଜୟ ଭଞ୍ଜଙ୍କର ଉତ୍ତରାଧିକାରୀ ବୋଲି ଘୋଷଣା କଲେ । ମାଲକଣ୍ଠ ଭଞ୍ଜଙ୍କ ବିରୁଦ୍ଧରେ ବିପୁଳ ଜନ-ସମର୍ଥନ ମିଳିଲା । ଗୋବିନ୍ଦ ଭଞ୍ଜ ଓ ଘନ ଭଞ୍ଜ ଏହି ବିଦ୍ରୋହର ନେତୃତ୍ୱ ନେଲେ । ଗାଲେରି ଠାରୁ ବିଦ୍ରୋହୀମାନେ କୁଲାଡ଼ ଦିଗେ ଅଗ୍ରସର ହେଲେ । ଏହି ଦୁଇଜଣଙ୍କର ବିଦ୍ରୋହୀମାନଙ୍କ ସହ କୁଳଡ଼ ଗଡ଼କୁ ସନ୍ଧ୍ୟା ଆସି ଆକ୍ରମଣ ଫଳରେ ମାଲକଣ୍ଠ ଭଞ୍ଜ ତାକୁ ମୁକାବିଲା ନ କରି ପାରି ପ୍ରାଣ ଭୟରେ ସପରିବାର ଗଡ ତ୍ୟାଗକରି ନୟାଗଡ଼ ପଳାୟନ କଲେ ।

ତାଙ୍କପରେ ରଣ ଭଞ୍ଜ ସିଂହାସନ ଆରୋହଣ କଲେ । ମାତ୍ର ମାଲକଣ୍ଠ ଭଞ୍ଜ ଶେଷ ପର୍ଯ୍ୟନ୍ତ ତାଙ୍କ ରାଜତ୍ୱକୁ ସ୍ୱୀକାର କରୁନଥିଲେ । ମାଲକଣ୍ଠ ଭଞ୍ଜଙ୍କର ୧୭୦୮ ଖ୍ରୀ: ଅ:ରେ ମୃତ୍ୟୁ ହୋଇଥିଲା ।

ଗୋବିନ୍ଦ ଭଞ୍ଜ ଓ ତାଙ୍କ ପୁତ୍ର ଘନ ଭଞ୍ଜଙ୍କ ଆକ୍ରମଣ ଫଳରେ ମାଲକଣ୍ଠ ଭଞ୍ଜ ପ୍ରାଣଭୟରେ ରାଜ୍ୟ ତ୍ୟାଗକରି ପଳାୟନ କଲାପରେ ଧନଞ୍ଜୟ ଭଞ୍ଜଙ୍କର ଉତ୍ତରାଧିକାରୀ ରୂପେ ମୃତ ଯୁବରାଜ ଗଙ୍ଗାଧର ଭଞ୍ଜଙ୍କ ନାତି (ଶତ୍ରୁଘ୍ନ ଭଞ୍ଜଙ୍କ ପୁତ୍ର) ନାବାଳକ ରଣ ଭଞ୍ଜଙ୍କୁ ୧୭୦୩ ଖ୍ରୀ:ଅ:ରେ ତାଙ୍କ ସ୍ଥାନରେ ରାଜା କରାଗଲା । ତାଙ୍କୁ ପ୍ରଶାସନିକ କ୍ଷେତ୍ରରେ ସାହାଯ୍ୟ କରିବା ପାଇଁ ଗୋବିନ୍ଦ ଭଞ୍ଜ ରହିଲେ ।

ଗୋବିନ୍ଦ ଭଞ୍ଜଙ୍କ ପୁତ୍ର ଘନ ଭଞ୍ଜ ୧୭୦୬ ଖ୍ରୀ:ଅ:ରେ ରଣ ଭଞ୍ଜଙ୍କୁ ଚକ୍ରାନ୍ତ କରି ହତ୍ୟାକଲେ ଓ ନିଜେ ଗୁମୁସର ରାଜ ସିଂହାସନ ଆରୋହଣ କରି ୧୭୦୭ ଖ୍ରୀ:ଅ: ଠାରୁ ୧୭୪୫ ଖ୍ରୀ:ଅ: ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । ସେ ଉପେନ୍ଦ୍ର ଭଞ୍ଜଙ୍କ ସମସାମୟିକ ଓ କବିଥିଲେ ।

ସେଥିପାଇଁ ଉପେନ୍ଦ୍ର ଭଞ୍ଜ ଶେଷ ଜୀବନ ତାଙ୍କ ସହିତ କଟାଇଥିଲେ । ଧନ ଭଂଜଙ୍କ ୧୭୭୫ ଖ୍ରୀ:ଅ:ରେ ମୃତ୍ୟୁପରେ ତାଙ୍କ ପୁତ୍ର କୃଷ୍ଣ ଭଂଜ ରାଜା ହେଲେ । ସେ ୧୭୫୮ ଖ୍ରୀ:ଅ:ରେ ମୁଷା ଖାଁଙ୍କ ସହିତ ବିଷ୍ଣୁଚକ୍ର ଠାରେ ଯୁଦ୍ଧରେ ପରାସ୍ତ କରି ଆସିକାଠାରେ ଏକ ସନ୍ଧି କରିଥିଲେ । ସାତ ହଜାର ପେସ୍‌କେସ୍ ଦେବାପାଇଁ ସ୍ୱୀକୃତ ପ୍ରଦାନ କରି ୧୭୬୩ ଖ୍ରୀ:ଅ:ରେ ଇହଲୀଳା ସମ୍ବରଣ କରିଥିଲେ ।

କୃଷ୍ଣ ଭଂଜଙ୍କର ଦୁଇଗୋଟି ପୁତ୍ର ଯଥା—ଲକ୍ଷ୍ମଣ ଭଂଜ ଓ ବିକ୍ରମ ଭଂଜ । ବିକ୍ରମ ଭଂଜ ନୟାଗଡ଼ ରାଜକନ୍ୟାଙ୍କ ପୁତ୍ରଥିଲେ । ଲକ୍ଷ୍ମଣ ଭଂଜ ପିତାଙ୍କ ସତ୍ୟ ପାଳନ କରି ସାନଭାଇ ବିକ୍ରମ ଭଂଜଙ୍କୁ ରାଜ ସିଂହାସନ ଛାଡ଼ିଦେଇଥିଲେ । ଲକ୍ଷ୍ମଣ ଭଂଜଙ୍କୁ ଅର୍ଥାଭାବ ହେବା ଯୋଗୁଁ ସେ ବିକ୍ରମ ଭଂଜଙ୍କ ସାହାଯ୍ୟ ଲୋଡ଼ିଲେ, ମାତ୍ର ସେ ତାହା ପ୍ରତ୍ୟାଖ୍ୟାନ କଲେ । ସେ ବିଶେଷ ଅପମାନିତ ହୋଇ ଇଂରେଜମାନଙ୍କ ସହିତ ସହଯୋଗ କରି ବିକ୍ରମ ଭଂଜଙ୍କ ବିରୁଦ୍ଧରେ ଚକ୍ରାନ୍ତ କଲେ ।

ଆହୁରି ମଧ୍ୟ ବିକ୍ରମ ଭଂଜ ସୋରଡ଼ାର କଂପାନୀ ଅନୁଗତ ଜମିଦାରଙ୍କୁ ୧୭୭୫ ଖ୍ରୀ:ଅ:ରେ ହତ୍ୟାକରି ସୋରଡ଼ା ଅଧିକାର କଲେ । ଏହା ଫଳରେ ଇଂରେଜ ସୈନ୍ୟମାନେ ସୋରଡ଼ାରେ ଗୋଟିଏ ରକ୍ତାକ୍ତ ଯୁଦ୍ଧରେ (ଇଂରେଜମାନେ) ପରାସ୍ତ ହେଲେ । ଏହାହେଲା ଇଂରେଜମାନଙ୍କର ଗଞ୍ଜାମରେ ପ୍ରଥମ ପଦକ୍ଷେପ । ଏହା ମଧ୍ୟରେ ସେ ଇଂରେଜମାନଙ୍କୁ ପେସ୍‌କେସ୍ ଦେଲେ ନାହିଁ । ଏହାର ଫଳ ସ୍ୱରୂପ ଆସିକାଠାରୁ କପ୍ତାନ ଲେମଣ୍ଟ, ଲକ୍ଷଣ ଭଂଜଙ୍କୁ ସାଙ୍ଗରେ ଧରି ବିଷ୍ଣୁଚକ୍ର ଘାଟେ ଆସି ତାଙ୍କ ସହିତ ୧୭୭୮ ଖ୍ରୀ:ଅ:ରେ କୁଲାଡ଼ଠାରେ ଯୁଦ୍ଧକଲେ । ରାଜା ଯୁଦ୍ଧରେ ପରାସ୍ତ ହୋଇ ଗାଦିଚ୍ୟୁତ ହେଲେ । ରାଜଂଛୁଡ଼ ବନ୍ଦର

ମରଜାକୁଦରେ ନିଜର ପରିବାର ବର୍ଗଙ୍କୁ ରଖି ଚିନାପାଟଣା ଗଲେ । ସେଠାରେ ଲୋକେ ଗଣ୍ଡଗୋଳ କରିବା ଯୋଗୁଁ ୧୭୮୨ ଖ୍ରୀ:ଅ:ରେ ~~ଜର୍ଜ ସାହେବ~~ ଇଂରେଜମାନଙ୍କୁ ଦରଖାସ୍ତକଲେ । ବିଦ୍ରୋହୀଙ୍କୁ ନେଇ ପୁଣି ତାଙ୍କୁ ରାଜା କଲେ ।

୧୭୬୭ ଖ୍ରୀ:ଅ:ରେ ଇଂରେଜମାନେ ଗଞ୍ଜାମ ଅଧିକାର କରିଥିଲେ । ପରେ ଗୋପାଳକିଷ୍ଟୋୟା ପଣ୍ଡିତଙ୍କୁ ପଠାଇ ବିକ୍ରମ ଭଂଜଙ୍କୁ ଗଞ୍ଜାକୁ ନେଇଗଲେ । ସେ ବର୍ଷକୁ ବାରହଜାର ଟଙ୍କା ତଉଜି ପାଇଲେ । ସେ ୧୭୬୩ ଖ୍ରୀ:ଅ: ଠାରୁ ୧୭୮୨ ଖ୍ରୀ:ଅ: ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । ଗଞ୍ଜାରେ ଛ' ବର୍ଷ ଓ କାଟୁରେ ତିନି ବର୍ଷ ରହି ୧୭୯୧ ଖ୍ରୀ:ଅ:ରେ ପ୍ରାଣତ୍ୟାଗ କରିଥିଲେ ।

ବିକ୍ରମ ଭଂଜଙ୍କ ପୁତ୍ର ଯୋଗୀନାଥ ଭଂଜ ପିତାଙ୍କର ତଉଜି ପାଇଥିଲେ । ଶିରବର ପାତ୍ର ଆଦି ମାଳ ଲୋକମାନଙ୍କୁ ଶିକ୍ଷାଦାନକରି ଯୋଗୀନାଥ ଭଂଜଙ୍କୁ ନୂଆଗଡ଼ରୁ ଅଣାଇ ତାହାଙ୍କ ବ୍ୟବହାର୍ଯ୍ୟ କାର୍ଯ୍ୟରେ ନିଯୁକ୍ତ କଲେ । ସେ ଅପୁତ୍ରିକ ହୋଇ ପ୍ରାଣତ୍ୟାଗ କଲେ ।

ଅପାରଗ ଲକ୍ଷ୍ମଣ ଭଂଜ ଇଂରେଜମାନଙ୍କ ସହ ହାତମିଳାଇ, ଏକଲକ୍ଷ ଟଙ୍କା ବାକିଥିବା ପେସକେସ୍ ଦେବା ପାଇଁ ରାଜି ହେବାରୁ ତାଙ୍କୁ ଗୁମୁସର ସିଂହାସନରେ ଅଭିଷିକ୍ତ କରାଗଲା । ଏଥିରେ ଗୁମୁସର ଅଧିବାସୀମାନେ ବିଦ୍ରୋହ କରି ଉଠିଲେ । ସେ ୧୭୮୨ ଖ୍ରୀ: ଅ: ଠାରୁ ୧୭୯୦ ଖ୍ରୀ:ଅ: ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । ୧୭୯୦ ଖ୍ରୀ:ଅ:ରେ ତାଙ୍କର ଅକାଳ ବିୟୋଗ ହେଲା ।

ଦାକ୍ଷିଣାତ୍ୟର ନିଜାମ ସାଲବତ ଜଙ୍ଗଙ୍କୁ ଇଂରେଜମାନେ ଯୁଦ୍ଧରେ ସାହାଯ୍ୟ କରିଥିବା ଯୋଗୁଁ ତାଙ୍କୁ ପୁରସ୍କାର ସ୍ୱରୂପ ଉତ୍ତର ସର୍କାର (କୋରାପୁଟ, ଗଞ୍ଜାମ, ଫୁଲବାଣୀ) ଦେଇଥିଲେ ଓ ପ୍ରତ୍ୟେକ ରାଜ୍ୟରୁ ଖଜଣା ଆଦାୟ କରିବା ପାଇଁ ଚେଷ୍ଟିତ ଥିଲେ । ୧୭୯୯ ଖ୍ରୀ:ଅ:ରେ ଇଂରେଜମାନେ ଗଞ୍ଜାମର ଅନ୍ୟ ଜମିଦାରୀ ଗୁଡ଼ିକକୁ ମଧ୍ୟ ଆୟତ୍ତ କରିବା ପାଇଁ ଚେଷ୍ଟାକଲେ । ମାତ୍ର ଇଂରେଜମାନେ ଗୁମୁସରକୁ ଯୁଦ୍ଧରେ ଜୟ ନ କରିଥିବା ଯୋଗୁଁ ରାଜା ଖଜଣା ଦେବା ଉଚିତ ମନେ କଲେ ନାହିଁ । ଇଂରେଜମାନେ ୧୭୯୫ ଖ୍ରୀ:ଅ:ଠାରୁ ଖଜଣା ଆଦାୟ କରିବାକୁ ଚେଷ୍ଟାକଲେ ମଧ୍ୟ ତାଙ୍କୁ ୧୮୦୦ ଖ୍ରୀ:ଅ: ପର୍ଯ୍ୟନ୍ତ ଗୁମୁସର ଆୟତ୍ତ କରିବା ପାଇଁ ସେନା ପ୍ରେରଣ କରିବାକୁ ପଡ଼ୁଥିଲା ।

ଲକ୍ଷ୍ମଣ ଭଞ୍ଜଙ୍କର ଅକାଳ ବିୟୋଗ ପରେ ତାଙ୍କ ପୁତ୍ର ଶ୍ରୀକର ଭଞ୍ଜ ୧୭୯୧ ଖ୍ରୀ:ଅ:ରେ ରାଜା ହେଲେ ଓ ଇଂରେଜମାନଙ୍କୁ ଏକଲକ୍ଷ ଟଙ୍କା ପେସକେସ୍ ଦେବା ପାଇଁ ରାଜିହେଲେ । ୧୭୯୮ ଖ୍ରୀ:ଅ: ରେ ତାଙ୍କପୁତ୍ର ଧନଞ୍ଜୟ ଭଞ୍ଜଙ୍କୁ ରାଜ୍ୟଭାର ଅର୍ପଣ କରି ସେ ତୀର୍ଥ ଯାତ୍ରାକଲେ । ସେ ଏହା ମଧ୍ୟ କଲେକ୍ଟରର 'ବୌନ' ସାହେବଙ୍କୁ ଜଣାଇଥିଲେ ।

ମାତ୍ର ଧନଞ୍ଜୟ ଭଞ୍ଜ ଇଂରେଜମାନଙ୍କୁ ଖଜଣା ଆଦୌ ଦେଲେ ନାହିଁ । ଖଜଣା ଆଦାୟ କରିବାକୁ ଆସିଥିବା ଇଂରେଜ କର୍ମଚାରୀମାନଙ୍କୁ ହଇରାଣ କଲେ । ଏପରିକି ସେମାନଙ୍କୁ ନିଆଁ ପାଣି ମନା କରି ଦିଆଗଲା । ରାଜ୍ୟରେ ମଧ୍ୟ ସୁଶାସନ କଲେ ନାହିଁ । ନାନା ବେବର୍ତ୍ତା ଏହି ସୁଯୋଗରେ ଖଜଣା ଅପହରଣ କଲେ । ୧୮୦୧ ଖ୍ରୀ:ଅ: ରେ ଶ୍ରୀକର ଭଞ୍ଜ ତୀର୍ଥରୁ ଫେରି ମଧ୍ୟ ଖଜଣା ଦାଖଲ କଲେ ନାହିଁ ।

‘ବୌନ’ ଖଜଣା ଆଦାୟ କରିବା ପାଇଁ ନାନା ପ୍ରକାର ଯତ୍ନକଲେ । ଓ ରଜାଙ୍କୁ ସନ୍ତୁଷ୍ଟ କରିବା ପାଇଁ ଚେଷ୍ଟାକରି ବିଫଳ ହେଲେ । ୧୮୦୧ ଖ୍ରୀ:ଅ:ରେ କପ୍ତାନ ‘ମରଲେ’ ସାମରିକ ଆଇନ ଜାରିକରି ରଜାଙ୍କୁ ଜବତ କରିବା ପାଇଁ ଓ କୁଲଡ଼ ଅବରୋଧ କରିବା ପାଇଁ ଅଗ୍ରସର ହେଲେ, ମାତ୍ର ସେଠାରେ ଥିବା ସେନାବାହିନୀର ସମ୍ମୁଖୀନ ହେବା ପାଇଁ ସାହସ କଲେ ନାହିଁ । ଏହି ପରିସ୍ଥିତିରେ ଧନଞ୍ଜୟ ଭଞ୍ଜ ବାଣପୁର ଠାରୁ ଆସି ଇଂରେଜମାନଙ୍କୁ ପିତାଙ୍କ ବିରୁଦ୍ଧରେ ସହଯୋଗ କଲେ ।

କେତେକ ଦିନ ପରେ ‘ଲେ ସ୍ମିଥ୍’ ସେନାପତିଙ୍କ ଅଧୀନରେ କେତେକ ସୈନ୍ୟଧରି ଗୁମୁସର ରାଜ୍ୟରେ ପହଞ୍ଚିଲେ । ଧନଞ୍ଜୟ ଭଞ୍ଜ ପରାମର୍ଶ ଅନୁଯାୟୀ ସମସ୍ତେ ମିଶି ବିଦ୍ରୋହ ଦମନ ପାଇଁ କୁଲଡଗଡ ଅଭିମୁଖେ ଅଗ୍ରସର ହେଲେ । ଏହା ଦେଖି ଶ୍ରୀକର ଭଞ୍ଜ ନିଜ ପରିବାର ସହ ଦୂର୍ଗାପ୍ରସାଦ ପଳାୟନ କଲେ । ବନ ଜଙ୍ଗଲ ପଥ ନାନା ବିପଦର ଆଶଙ୍କା ଦେଖି ଇଂରେଜମାନେ ଅଧିକ ଦୂର ଅଗ୍ରସର ହେବା ପାଇଁ ସାହସ କଲେ ନାହିଁ ଓ ଆସିକା ଫେରିବା ପାଇଁ ବାଧ୍ୟହେଲେ ।

୧୮୦୪ ଖ୍ରୀ:ଅ:ରେ ଧନଞ୍ଜୟ ଭଞ୍ଜଙ୍କୁ ପୁନର୍ବାର ଇଂରେଜ-ମାନେ ରାଜ ସିଂହାସନରେ ଅଭିଷିକ୍ତ କଲେ । ଅଳସୁ, କମସର, ଦାନ ଗ୍ରାମ ନୟାଗଡ଼ ରଜା ନେଇଥିବା ଯୋଗୁଁ ଯୁଦ୍ଧରେ ପରାସ୍ତ କରି ତାହା ଫେରି ପାଇଲେ । ବୈଶ୍ୟଗଞ୍ଜନାଭଙ୍କର ପ୍ରାଣ ନେଲେ । ଧରାକୋଟରେ ରଘୁନାଥ ସିଂହଙ୍କୁ ରଜାକଲେ, ମଣିଦେବ, ଜଗନ୍ନାଥ ଦେବଙ୍କୁ ବନ୍ଦୀରୁ ମୁକୁଳାଇଥିଲେ ।

ଶ୍ରୀକର ଭଞ୍ଜଙ୍କ ନେତୃତ୍ୱରେ ପାରଳାଖେମୁଣ୍ଡି, ଆଠଗଡ଼, ଧରାକୋଟ, ଖଲ୍ଲିକୋଟ ରାଜା ଓ ଜଳନ୍ତରର ସାନ ପାଟପୋଖରୀ, ପୋଡ଼ାମାରାର ଜଗନ୍ନାଥ ଦେବ ଶେରଗଡଠାରେ ମିଳିତଭାବେ ଯୁଦ୍ଧ ପାଇଁ ପ୍ରସ୍ତୁତ ହେଉଥିବାବେଳେ ଇଂରେଜମାନେ ଖବର ପାଇ ଅବରୋଧ କଲେ । ଏହି ଭଲ୍ଲାକ୍ତ ଯୁଦ୍ଧରେ ଶେରଗଡ଼ ରାଜା ଅଚ୍ୟୁତ ସିଂ ପ୍ରାଣ-ତ୍ୟାଗକଲେ । ଅନ୍ୟମାନେ ଛତ୍ରଭଙ୍ଗ ଦେଇ ପଳାୟନ କଲେ ।

୧୮୦୮ ଖ୍ରୀ:ଅ:ରେ 'ଫ୍ଲେଚର' ତା'ପରେ 'ହାଡ଼ସନ'ଙ୍କ ଅଧିନରେ ଗୁମୁସରର ବଉଲଗଡ ଦେଶଜ ହୋଇଥିଲା । କୁଲଡ଼, ଦୁର୍ଗାପ୍ରସାଦ ଗଡ଼ ଇଂରେଜମାନେ ହସ୍ତଗତ କରିଥିଲେ ମଧ୍ୟ ଗୁମୁସର ବୀର ସେନାମାନେ ତାଙ୍କୁ ପୁନରୁଦ୍ଧାର କରିଥିଲେ । ପରେ ଇଂରେଜସେନା ଓ ଶ୍ରୀକର ଭଞ୍ଜଙ୍କର ସେନାବାହିନୀକୁ ଦୁର୍ଗାପ୍ରସାଦ ଠାରେ ଭେଟି ଯୁଦ୍ଧ ଚାଲିଲା । ଯୁଦ୍ଧରେ ରାଜାଙ୍କର ସୈନ୍ୟମାନେ ଭୟଙ୍କର ତୋପ ମାଡ଼ରେ ଇଂରେଜମାନଙ୍କୁ ପରାସ୍ତକଲେ ।

ଆଉ କେତେ ଦିନ ପରେ ଏକ ସାଲିସ ଜରିଆରେ ପଦ-ଚ୍ୟୁତ ଶ୍ରୀକର ଭଞ୍ଜ (୧୮୧୯—୧୮୩୦)ଙ୍କୁ ଆଉଥରେ ଗୁମୁସରର ରାଜା ରୂପେ ଘୋଷଣା କରାଗଲା ।

ତାଙ୍କ ପୁତ୍ର ଧନଞ୍ଜୟ ଭଞ୍ଜଙ୍କୁ ଭର୍ତ୍ସା ଖଞ୍ଜାଗଲା । ୧୮୧୫ ଖ୍ରୀ:ଅ:ଠାରୁ ୧୮୧୮ ପର୍ଯ୍ୟନ୍ତ ଗୁମୁସରରେ ଅରାଜକତା ଥିଲା ।

ଧନଞ୍ଜୟ ଭଞ୍ଜ ରାଜା ହୋଇ ମନମୁଖି ଶାସନ କରି ଲୋକଙ୍କ ଉପରେ ଅତ୍ୟାଚାର କଲେ । ଶ୍ରୀକରଭଞ୍ଜଙ୍କର ଭାଇ ବୃନ୍ଦାବନଭଞ୍ଜଙ୍କର

କୁମନ୍ତ୍ରଣାରେ ପଡ଼ି ତିନିବର୍ଷ କାଳ ଇଂରେଜମାନଙ୍କୁ ଖଜଣା ଦେଲେ ନାହିଁ ଓ ତାଙ୍କର ଆଦେଶ ଅବମାନନା କରି ଯୁଦ୍ଧପାଇଁ ପ୍ରସ୍ତୁତ ହେଲେ । ପରିଶେଷରେ 'ରସଲ୍' ସାହେବଙ୍କ ଯୁଦ୍ଧରେ ପରାଜିତ ହୋଇ ପରିବାର ସହ ଉଦୟଗିରି ମାଳକୁ ପଳାୟନ କଲେ ।

୧୮୧୪ ଖ୍ରୀ:ଅ:ରେ ଧନଞ୍ଜୟ ଭଞ୍ଜଙ୍କୁ ଗୋଟିଏ ହତ୍ୟା ମକଦ୍ଦମାରେ ଦୋଷୀକରି ଗଞ୍ଜାମପୁରଠାରେ ନଜରବନ୍ଦୀ କରି ରଖି-ଥିଲେ । ୧୮୩୦ ଖ୍ରୀ:ଅ:ରେ ଘୋରଣ୍ଡା ତାଲୁକା ନିଲାମରେ କିଣିକରି ଗୁମୁସରରେ ଯୋଗ କରିଥିଲେ ।

ରାଜା ଧନଞ୍ଜୟ ଭଞ୍ଜଙ୍କ ଦୁଇଗୋଟି ପୁତ୍ର ଯଥା – ବଳଭଦ୍ର ଭଞ୍ଜ ଓ ବ୍ରଜରାଜ ଭଞ୍ଜ (ଅନ୍ୟର ପୁତ୍ର) । କଥିତ ଅଛି ଯେ ବଳଭଦ୍ର ଭଞ୍ଜଙ୍କୁ ତାଙ୍କ ପିତା ଧନଞ୍ଜୟ ଭଞ୍ଜ ଗୋଟିଏ ତୁଚ୍ଛ ଘଟଣାରେ ଉତ୍ୟକ୍ତ ହୋଇ ହତ୍ୟା କରିଥିଲେ ।

ରାଜଗାଦିରେ କେହି ଭଞ୍ଜବଂଶର ରାଜା ନହେବା ଦେଖି ଓ ଇଂରେଜମାନଙ୍କର ଲୁଣ୍ଠନ, କରପୀଡ଼ା ଯୋଗୁଁ ଲୋକେ ବିଦ୍ରୋହୀ ହୋଇ ଉଠିଲେ । କଲେକ୍ଟର 'ବୌନ' ସାହେବ ଶାନ୍ତି ଚେଷ୍ଟାକରି ବିଫଳ ହେଲେ । ଏହି ସମୟରେ ଜଗନ୍ନାଥ ଭଞ୍ଜ ଓ ଦୋହରା ବିଶୋଇ ବୀରମାନେ ଧନଞ୍ଜୟ ଭଞ୍ଜଙ୍କ ପୁତ୍ର ବଳଭଦ୍ର ଭଞ୍ଜଙ୍କୁ ରାଜାକଲେ ଶାନ୍ତି ଆସିବ ବୋଲି ଇଂରେଜମାନଙ୍କୁ ଜଣାଇଲେ । ସେତେବେଳକୁ ବଳଭଦ୍ର ଭଞ୍ଜ ଜୀବିତ ନ ଥିଲେ । ମାତ୍ର ଏମାନେ ଗୋଟିଏ ବାରବର୍ଷର ଝିଅ ପିଲାକୁ ପୁରୁଷ ବେଶକରି ଯୁବରାଜ ବଳଭଦ୍ର ଭଞ୍ଜ ବୋଲି ନାମିତକରି କଲେକ୍ଟରଙ୍କୁ ପ୍ରତାରିତ କରି ରାଜାକରି ବସାଇଥିଲେ । ପରେ

କଲେକ୍ଟର 'ଟ୍ରାଭେରସ୍' ଏହା ଜାଣି ପାରି ସେହି ସ୍ଥାନରେ ଶ୍ରୀକର ଭଞ୍ଜଙ୍କୁ ୧୮୧୯ ଖ୍ରୀ:ଅ: ଠାରୁ ୧୮୩୦ ପର୍ଯ୍ୟନ୍ତ ରାଜା କରିଥିଲେ ।

୧୮୩୨ ଖ୍ରୀ:ଅ:ରେ ସମସ୍ତ ଅନୁଯାୟୀ ଶ୍ରୀକର ଭଞ୍ଜ ରାଜସ୍ୱ ପରିଶୋଧ ନ କରିବା ଯୋଗୁଁ ବୃଦ୍ଧାବସ୍ଥାରେ ତାଙ୍କୁ ଆଉ ଥରେ କ୍ଷମତା ଚ୍ୟୁତ କରାଗଲା । ତାଙ୍କ ପୁତ୍ର ଧନଞ୍ଜୟଙ୍କୁ ପୁନର୍ବାର ୧୮୩୨ ଖ୍ରୀ:ଅ:ରେ ଗୁମୁସରର ରାଜା କରାଗଲା ।

୧୮୩୫ ଖ୍ରୀ:ଅ:ରେ ଇଂରେଜ ସେନା କୁଲଡ଼ା ଗଡ଼କୁ ଆକ୍ରମଣ କରିବା ଖବର ପାଇ ଶ୍ରୀକର ଭଞ୍ଜ ସାତହଜାର ଟଙ୍କା ରାଜସ୍ୱ କୌଶଳ କ୍ରମେ ନେଇଯାଇ କନ୍ଧଙ୍କ ବନ ମଧ୍ୟକୁ ପ୍ରବେଶ କଲେ । ଏଠାରେ ଇଂରେଜମାନଙ୍କ ସହ ଯୁଦ୍ଧ କରୁଥିବା ସମୟରେ ବୀରପରି ସମ୍ମୁଖ ଯୁଦ୍ଧରେ ଗୁଳମାଡରେ ୩୧-୧୨-୧୮୩୫ ଖ୍ରୀ:ଅ:ରେ ପ୍ରାଣ ହରାଇଲେ । ତାଙ୍କର ରାଣୀମାନେ ସତୀ ହୋଇ ଯାଇଥିଲେ ।

ଇଂରେଜ ସେନାପତି 'ରସେଲ' ୧୮୩୬ ଖ୍ରୀ:ଅର ଶେଷ ସମୟକୁ ଶ୍ରୀକର ଭଞ୍ଜଙ୍କ ଦୁଇଭାଇ ବୃନ୍ଦାବନ ଭଞ୍ଜ ଓ ଜଗନ୍ନାଥ ଭଞ୍ଜଙ୍କୁ କୁଲଡ଼, ଦୁର୍ଗାପ୍ରସାଦ ଓ ଗାଲେରୀ ଯୁଦ୍ଧରେ ପରାସ୍ତ କଲେ । ସେମାନେ ଅନ୍ୟ ଉପାୟ ନ ଦେଖି ଅସହାୟ ଅବସ୍ଥାରେ ଜନ୍ମମାଟିର ମୋହ ତ୍ୟାଗକରି ସମ୍ଭବତଃ ନୟାଗଡ ବା ଦଶପଲ୍ଲାରେ ଗୁପ୍ତଭାବେ ଆଶ୍ରୟ ନେଲେ ।

୧୮୩୬ ଖ୍ରୀ:ଅ:ରେ ଗୁମୁସର ଇଂରେଜମାନଙ୍କର ପ୍ରତ୍ୟକ୍ଷ ଶାସନକୁ ଆସିଲା ।

୧୮୬୨ ପର୍ଯ୍ୟନ୍ତ ବୀର ଦୋହରା ବିଦ୍ରୋହୀ, ଓ ପୁତ୍ର ଚକରା ବିଦ୍ରୋହୀ ଦୁହେଁ ଇଂରେଜମାନଙ୍କ ବିରୁଦ୍ଧରେ ଅପୂର୍ବ ଗରିଲା ଯୁଦ୍ଧ ଚଳାଇ ତାଙ୍କର ଭୟ ସଞ୍ଚାର କରିଥିଲେ । ବୀର ଚକରା ଇଂରେଜ ସେନାପତି 'ଜାବନ' ଓ 'ଧୃମେଲଙ୍କୁ' ଦୁର୍ଗାପ୍ରସାଦଠାରେ ହତ୍ୟା କରିଥିଲେ ।

## ଗୁମୁସର ବିଦ୍ରୋହ

ସାମ୍ରାଜ୍ୟବାଦୀ ଇଂରେଜମାନଙ୍କ ବିରୁଦ୍ଧରେ ଏହା ହେଉଛି ଓଡ଼ିଶାର ପ୍ରଥମ ଅଭୂତପୂର୍ବ ସ୍ୱାଧୀନତା ସଂଗ୍ରାମ। ଗୁମୁସର ବିପ୍ଳବୀ ବୀରମାନଙ୍କର ଚମକପ୍ରଦ ସଂଗ୍ରାମ, ଅପୂର୍ବ ବୀରତ୍ୱ ଓ ଅଲୌକିକ ରଣ କୌଶଳ ଇଂରେଜମାନଙ୍କର ମନରେ ଆତଙ୍କ ଜାତ କରିଥିଲା । ତାଙ୍କର ଆଧୁନିକ ଅସ୍ତ୍ର ଶସ୍ତ୍ର, କୁଟନୀତି ଓ ବିଶ୍ୱାସଘାତକତା ଯୋଗୁଁ ଏହି ଗୌରବୋଜ୍ଜ୍ୱଳ ବିପ୍ଳବକୁ ଦମନ କରିବା ପାଇଁ ଆତଙ୍କିତ ସଙ୍ଗେ ଅମାନୁଷିକ ଦମନ ନୀତି ପ୍ରୟୋଗ କରିବା ପାଇଁ ଶ୍ୱେତଲୋକେ ପଛଘୁଞ୍ଚା ଦେଉ ନଥିଲେ ।

'ସମ୍ପତ୍ତିର ଆହରଣ ହେଉଛି ଚୌର୍ଯ୍ୟବୃତ୍ତି' । ସାମନ୍ତ-ବାଦର କବର ଉପରେ ପୁଞ୍ଜିବାଦ ଗଢିଉଠେ । ପୁଞ୍ଜିବାଦ ହେଉଛି ସର୍ବହରାଙ୍କର ଶୋଷଣର ପ୍ରତିମୂର୍ତ୍ତି । ପୁଞ୍ଜିବାଦ ଚଳନ୍ତି ଶାସନକଳକୁ ହାତରେ ରଖି ନିଜର ପ୍ରଭାବ ବିସ୍ତାର କରେ । ପୁଞ୍ଜିବାଦର ବିକଟାଳ ରୂପ ହେଉଛି ସାମ୍ରାଜ୍ୟବାଦ । ନିଜର ଶୋଷଣକୁ ବଜାୟ ରଖିବା ପାଇଁ ଅନ୍ୟଦେଶର ବିପଣୀ ଲୁଟକରେ, ତା'ର ସ୍ୱାଧୀନତାକୁ ଅପ-ହରଣ କରି ସୈନ୍ୟବାହିନୀ ଉପରେ ଭିତ୍ତିରହି ପଶୁବଳ ଉପରେ ନିର୍ଭର କରି ରହେ । ଶୋଷିତ ଏକଜୁଟ ହୋଇ ବଳବାନ ହୁଏ ।

ଶୋଷକର ବିରୁଦ୍ଧରେ ଶ୍ରେଣୀ ସଂଘର୍ଷ ପାଇଁ ପ୍ରସ୍ତୁତ ହୁଏ । ଉଭୟଙ୍କର ସଂଘର୍ଷରେ ପୁଞ୍ଜିବାଦୀ ସମାଜ ଅନ୍ତଃସତ୍ତ୍ୱା ହୋଇ ସମାଜବାଦ ସନ୍ତାନକୁ ପରିପୁଷ୍ଟ କରେ । ପୁଞ୍ଜିବାଦୀ ସମାଜ ଏହି ସନ୍ତାନକୁ ଜନ୍ମ-ଦାନ କରିବା ପାଇଁ ସଚେଷ୍ଟ ହୁଏ ନାହିଁ ଓ ଭ୍ରୂଣକୁ ହତ୍ୟା କରିବା ପାଇଁ ନାନା ପ୍ରକାର ଚେଷ୍ଟା ଧରେ । ଏହି ନବ ଜାତକଙ୍କୁ ସ୍ୱାଗତ କରିବା ପାଇଁ ଶୋଷିତ, ହିଂସା ତଥା ଅହିଂସା ପଥ ବାଛିନେଇ ପରିଶେଷରେ ସାମ୍ୟବାଦ ସନ୍ତାନକୁ ପ୍ରତିଷ୍ଠିତ କରେ ।

ଦେଶରେ ଯେତେବେଳେ ଗଣ ବିପ୍ଳବ ହୁଏ ତା'ର ପୂର୍ବାଭାସ ହେଉଛି--ଶୋଷଣ, ଅତ୍ୟାଚାର, କର ପୀଡ଼ା, ବେକାରୀ, ଗଣତନ୍ତ୍ରର ହତ୍ୟା, ଅର୍ଥନୀତି କ୍ଷେତ୍ରରେ ତାରତମ୍ୟ, ଚଡ଼ାଦର, ମୁଦ୍ରାସ୍ଫୀତି, କଳା-ଟଙ୍କା, କଳାବଜାର, ଗୋଷ୍ଠୀଗତ ସଂଗଠିତ ଦୁର୍ନୀତି ଆଉ ସର୍ବୋଟ ଗଣନେତାର ଅଭାବ ଦେଖାଯାଏ ।

ଗୁମୁସରର ଭଞ୍ଜ ପରିବାର ଯେ କେବଳ କବି ଥିଲେ ତାହା ନୁହେଁ । ସେମାନେ ଥିଲେ ଓଡ଼ିଶାର ବୀର ବିପ୍ଳବୀ ପ୍ରଥମ ସ୍ୱାଧୀନତା ସଂଗ୍ରାମୀ । ଦେଶର ସ୍ୱାଧୀନତା ରକ୍ଷା କରିବା ପାଇଁ ସେମାନେ ଇଂରେଜ ମାନଙ୍କ ବିରୁଦ୍ଧରେ ରକ୍ତାକ୍ତ ଯୁଦ୍ଧରେ ସମ୍ମୁଖୀନ ହୋଇଥିଲେ । ଏହାର ବିଶେଷତ୍ୱ ହେଉଛି ଯେ ଆଦିବାସୀ ମହିଳାମାନେ ପୁରୁଷମାନଙ୍କ ସହିତ ଯୁଦ୍ଧ କ୍ଷେତ୍ରରେ ଯୋଗ ଦେଉଥିଲେ ।

୧୮୦୩ ଖ୍ରୀ:ଅ:ରେ ଇଂରେଜମାନେ ଓଡ଼ିଶା ଅଧିକାର କଲେ । ମାତ୍ର ଗୁମୁସରେ ୧୮୦୩ ଠାରୁ ୧୮୩୬ ଖ୍ରୀ:ଅ: ପର୍ଯ୍ୟନ୍ତ ସ୍ୱାଧୀନତା ରକ୍ଷା କରିବା ପାଇଁ ଇଂରେଜମାନଙ୍କ ବିରୁଦ୍ଧରେ ଅସ୍ତ୍ର ଉତ୍ତୋଳନ କରି ପ୍ରାଣ ପାତ ଲଢ଼ାଇ କରିଥିଲେ ।

ନବାବ ସାଲବତ୍ ଜଙ୍ଗଙ୍କୁ ନବାବ ଆସନ ପାଇଁ ସାହାଯ୍ୟ ଦେଇଥିବାରୁ କୃତଜ୍ଞତାର ନିଦର୍ଶନ ସ୍ୱରୂପ ସେ ସାମରିକ ଭାବରେ ଫରାସୀ ମାନଙ୍କୁ ଉତ୍ତର ସର୍କାର ଅର୍ପଣ କରିଥିଲେ । ଗୁମୁସର ସମେତ ଗଞ୍ଜାମ ଉତ୍ତର ସର୍କାରର ଅନ୍ତର୍ଗତ ଥିଲା । ରାଜା କୃଷ୍ଣଭଞ୍ଜଙ୍କ ସମୟରେ(୧୭୩୫ ଖ୍ରୀ:ଅ:)ଫରାସୀ ସୈନ୍ୟବାହିନୀ ଜେ·ଆରମୀଙ୍କ ସେନାପତିତ୍ୱରେ ଗୁମୁସର ଦଖଲ ପାଇଁ ଗୁମୁସରର ଗଡ଼ଗଡ଼ୁ ଠାରେ ପହଞ୍ଚିଥିଲେ । ଫରାସୀମାନେ କର ଆଦାୟ ପାଇଁ ଅଗ୍ରସର ହେବା ସମୟରେ ରାଜା କୃଷ୍ଣଭଞ୍ଜ ସେଥି-ପ୍ରତି ଭ୍ରୂକ୍ଷେପ କଲେନାହିଁ । ଜେ. ଆରମୀ ଅଗତ୍ୟା ଗଡ଼ଗଡ଼ୁ ଓ ବସ୍ତୁଚ୍ଛନ୍ଦ ଦେଇ ଗୁମୁସର ରାଜଧାନୀ କୁଳାଡ଼ଗଡ଼ ଦଖଲ ପାଇଁ ଚେଷ୍ଟା କଲେ । ତୀବ୍ର ପ୍ରତିରୋଧ ଫଳରେ ଫରାସୀମାନଙ୍କର ବହୁତ ସୈନ୍ୟ ମୃତ ଓ ଆହତ ହେଲେ । ପରେ ରାଜାଙ୍କ ସହ ସନ୍ଧି ସ୍ଥାପନ କରି ପ୍ରତ୍ୟାବର୍ତ୍ତନ ହେବାକୁ ବାଧ ହେଲେ । ୧୭୫୭ ଖ୍ରୀ.ଅ·ରେ ସେ କହିଥିଲେ 'ଇଚ୍ଛା-ପୁର ପ୍ରଦେଶର ଉଣେଇଶି ଜଣ ରାଜାଙ୍କ ମଧ୍ୟରୁ କୃଷ୍ଣଭଞ୍ଜ ଥିଲେ ଅତ୍ୟନ୍ତ ଶକ୍ତିଶାଳୀ ।'

ତା'ପରେ ୧୭୬୬ ଖ୍ରୀ:ଅ:ରେ ଇଂରେଜମାନେ ନିଜାମଙ୍କୁ ସାମରିକ ସାହାଯ୍ୟ ଦେଇଥିବା ଯୋଗୁଁ ତା' ବଦଳରେ ଓଡ଼ିଶାର ଗଞ୍ଜାମ, କୋରାପୁଟ ଦୁଇଟି ଜିଲ୍ଲା ନିଜାମଙ୍କ ଠାରୁ ପାଇଥିଲେ ।

୧୮୦୦ ଠାରୁ ୧୮୩୭ ଖ୍ରୀ:ଅ: ପର୍ଯ୍ୟନ୍ତ ଗୁମୁସର ବିଦ୍ରୋହ ଓଡିଶାର ଏକ ଗୌରବୋଜ୍ଜ୍ୱଳ ଇତିହାସ । ୧୮୦୩ ଖ୍ରୀ:ଅ:ରେ ଓଡ଼ିଶା ଇଂରେଜମାନଙ୍କର ଶାସନାଧୀନ ହୋଇଥିଲେ ମଧ୍ୟ ଆଞ୍ଚଳିକ ରାଜା ମାନଙ୍କର ସ୍ଥାନେ ସ୍ଥାନେ ପ୍ରବଳ ପ୍ରତିରୋଧର ସମ୍ମୁଖୀନ ହେବାକୁ ପଡ଼ିଥିଲା । ୧୭୭୫ ଖ୍ରୀ:ଅ:ରେ ଇଂରେଜମାନେ ଗଞ୍ଜାମରେ ପ୍ରଥମଥର ପାଇଁ ସାମରିକ ହସ୍ତକ୍ଷେପ କରିଥିଲେ । ବିକ୍ରମଭଞ୍ଜ ପୋରଡ଼ାର

ଇଂରେଜ ଅନୁଗତ ଜମିଦାରଙ୍କୁ ୧୭୭୫ଖ୍ରୀ:ଅ:ରେ ହତ୍ୟାକରି ଘୋଇଣ୍ଡା ଅଧିକାର କରିଥିଲେ । ସେଥିପାଇଁ ଇଂରେଜମାନେ ଗଞ୍ଜାମରେ ପ୍ରଥମ ହସ୍ତକ୍ଷେପ ସ୍ୱରୂପ ଆସିକାଠାରୁ ସୈନ୍ୟବାହିନୀ ଘୋଇଣ୍ଡାକୁ ପଠାଇ-ଥିଲେ । କିନ୍ତୁ ବିକ୍ରମଭଞ୍ଜ ଉପୁଜ୍ଞାତ ନ ହୋଇ ଏକ ରକ୍ତାକ୍ତ ଲଢ଼େଇରେ ଇଂରେଜ ସୈନ୍ୟମାନଙ୍କୁ ପରାସ୍ତ କଲେ । ୧୭୬୯ ଖ୍ରୀ:ଅ:ରେ ଇଂରେଜ ମାନେ ଆସିକାଠାରୁ ତାଙ୍କର ସୈନ୍ୟମାନଙ୍କୁ ଆଠଗଡ଼ ରଜାଙ୍କୁ ପରାସ୍ତ କରିବା ପାଇଁ ମଧ୍ୟ ପଠାଇଥିଲେ । ୧୭୭୩ ଖ୍ରୀ:ଅ:ରେ କୃଷ୍ଣଭଞ୍ଜଙ୍କର ମୃତ୍ୟୁ ହୋଇଥିଲା । ଇଂରେଜମାନେ ଗୁମୁସରର ପେସ୍‌କେସ୍ ତିନି ହଜାରରୁ ପାଞ୍ଚ ହଜାରକୁ ବଢ଼ାଇ ଦେଲେ । ସେଥିଯୋଗୁଁ ୧୭୮୫-ଖ୍ରୀ:ଅ:ରେ ବିକ୍ରମଭଞ୍ଜ ଇଂରେଜମାନଙ୍କୁ •ବର୍ଦ୍ଧିତ ରାଜସ୍ୱ ଦେବାପାଇଁ ସେକଠୋକ୍ ମନା କରିଦେଲେ । ଏହା ଫଳରେ ୧୭୮୮ ଖ୍ରୀ:ଅ:ରେ ଆସିକାଠାରେ ଥିବା ସୈନ୍ୟ ବଳରେ ଗୁମୁସର ରାଜ୍ୟର କେତେକ ଅଞ୍ଚଳ ଦଖଲ କରିଥିଲେ ମଧ୍ୟ ବିଦ୍ରୋହୀମାନେ ଘର ଦ୍ୱାର ପୋଡ଼ିଜାଳି ଘନ ଜଙ୍ଗଲ ମଧ୍ୟରେ ଆତ୍ମରକ୍ଷା କରି ଗରିଲା ଯୁଦ୍ଧ ପାଇଁ ପ୍ରସ୍ତୁତ ହେଲେ ।

ଏହି ସମୟରେ ଇଂରେଜ ସୈନ୍ୟମାନେ ମାରାତ୍ମକ ମ୍ୟାଲେରିଆ ଜ୍ୱରରେ ପୀଡ଼ିତ ହେବା ସଙ୍ଗେ ସଙ୍ଗେ ଘୋର ଖାଦ୍ୟାଭାବର ଶିକାର ହେଲେ । ଏହି ସୁଯୋଗ ନେଇ ବିକ୍ରମଭଞ୍ଜ ଏକ ଅତର୍କିତ ଆକ୍ରମଣ କରି ବିଷ୍ଣୁଚକ୍ରଠାରେ ୨୩ ଜଣ ଗୋରା ସୈନ୍ୟଙ୍କୁ ହତ୍ୟାକଲେ । ଏହା ପରେ ଇଂରେଜ ସେନା ବହୁ ସଂଖ୍ୟାରେ ଆସି ବିକ୍ରମଭଞ୍ଜଙ୍କୁ କୁଲଡ଼-ଠାରେ ପରାସ୍ତ କଲେ । ବିକ୍ରମଭଞ୍ଜ ଗୁପ୍ତରେ ସୁଦୂର ଦକ୍ଷିଣକୁ ପଳାୟନ କଲେ । ଏହି ସ୍ଥାନରେ ତାଙ୍କର ଭାଇ ଲକ୍ଷ୍ମଣଭଞ୍ଜଙ୍କୁ (୧୭୮୨-୧୭୯୦ ଖ୍ରୀ:ଅ:) ଗୁମୁସରର ରାଜା ରୂପେ ଇଂରେଜମାନେ ସ୍ୱୀକାର କଲେ । ୧୭୮୮ ଖ୍ରୀ:ଅ:ରେ ଲକ୍ଷ୍ମଣ ଭଞ୍ଜଙ୍କ ପରେ ତାଙ୍କ ପୁତ୍ର ଶ୍ରୀକର ଭଞ୍ଜ

(୧୭୯୦—୧୭୯୯ ଖ୍ରୀ: ଅ:) ଗୁମୁସର ରାଜ ସିଂହାସନ ଆରୋହଣ କଲେ ।

୧୭୯୯ଖ୍ରୀ:ଅ:ରେ ଇଂରେଜମାନେ ଗଞ୍ଜାମର ଅନ୍ୟାନ୍ୟ ଜମିଦାରୀଗୁଡ଼ିକୁ ଆୟତ୍ତ କରିବା ଅବସରରେ ପୁନର୍ବାର ଶ୍ରୀକର ଭଞ୍ଜଙ୍କ ନେତୃତ୍ୱରେ ବିଦ୍ରୋହୀମାନେ ଜାଗି ଉଠିଲେ । ଏହି ବିଦ୍ରୋହ ଗଞ୍ଜାମର ବହୁ ଅଞ୍ଚଳକୁ ପ୍ରସାରିତ ହେଲା । ଏହି ସମୟରେ ଜଳନ୍ତର ଗଡ଼ର ସ୍ଥାନ ପାଟଯୋଶୀ, ଦ୍ରାପଗିରିର ଜଗନ୍ନାଥ ଦେବ ଦ୍ରଷ୍ଟିତ ବିଶାଖାପାଟନା ବନ୍ଦୀଶାଳାରୁ କୌଶଳକ୍ରମେ ଖସିଯାଇ ଏହି ବିଦ୍ରୋହ କାର୍ଯ୍ୟରେ ହସ୍ତ ସଂଯୋଗ କଲେ । ଶ୍ରୀକରଭଞ୍ଜ ବନ ମଧ୍ୟରେ କନ୍ଧ ସୈନ୍ୟମାନଙ୍କୁ ଯୁଦ୍ଧ ପାଇଁ ତାଲିମ ଦେଲେ । ଆଠଗଡ଼ର ସୈନ୍ୟମାନେ ମଧ୍ୟ ଏଥିରେ ଯୋଗ ଦାନ କରିଥିଲେ । ମିଳିତଭାବେ ଏହି ସମସ୍ତ ବିଦ୍ରୋହୀମାନେ ଶେରଗଡଠାରେ ଏକତ୍ର ଥିବା ସମୟରେ ଇଂରେଜମାନେ ଏ ଖବର ପାଇ ଶେରଗଡ଼ ଅବରୋଧ କଲେ । ଏହା ଏକ ଭୟଙ୍କର ଯୁଦ୍ଧରେ ପରିଣତ ହେଲା । ଶେରଗଡ଼ ରାଜା ଅଚ୍ୟୁତ ସିଂହ ଭୟରେ ଏଥିରେ ମୃତ୍ୟୁବରଣ କଲେ । ସୈନ୍ୟମାନେ ଛତ୍ରଭଙ୍ଗ ଦେବାରୁ ପ୍ରାଣ ଭୟରେ ଜଗନ୍ନାଥଦେବ ବିଶାଖାପାଟଣା ଓ ଶ୍ରୀକରଭଞ୍ଜ କେତେକ ଅନୁଚର ସହ ଗୁମୁସରରେ ପଶିଗଲେ ।

ଏହି ଘଟଣା ଫଳରେ ଧରାକୋଟ, ଆଠଗଡ, ଖଲ୍ଲିକୋଟ, ପାରଳାଖେମୁଣ୍ଡିରେ ମୁଣ୍ଡ ଟେକିଥିବା ବିଦ୍ରୋହ ଉପରେ କିଛି ସମୟ ଶାନ୍ତ ରହିବାକୁ ବାଧ୍ୟ ହୋଇଥିଲେ ।

୧୮୦୧ ଖ୍ରୀ:ଅ:ରେ କର୍ଣ୍ଣେଲ ମାର୍ଲେ ଗୁମୁସରରେ ସାମରିକ ଆଇନ ଜାରିକରି ରାଜସ୍ୱ ଜବରଦସ୍ତି ଆଦାୟ କରିବାକୁ ସୈନ୍ୟମାନଙ୍କୁ

ନିର୍ଦ୍ଦେଶ ଦେଲେ । ସେତିକିବେଳେ ଦୁର୍ଗାପ୍ରସାଦଠାରେ ଥିବା କେତେକ ସରକାରୀ ସୈନ୍ୟଙ୍କୁ ବିଦ୍ରୋହୀମାନେ ହତ୍ୟା କଲେ । ତା'ର ଫଳସ୍ୱରୂପ ଗାଲେରୀଠାରେ ଗୋରା ସୈନ୍ୟମାନେ ୧୪ ଜଣ ବିଦ୍ରୋହୀମାନଙ୍କୁ ଗୁଳି କରି ହତ୍ୟାକଲେ ଓ ଶ୍ରୀକରଭଞ୍ଜଙ୍କୁ ଆସ୍କା ପର୍ଯ୍ୟନ୍ତ ତଡି ନେଇଥିଲେ । ବିଦ୍ରୋହୀ ନେତା ଶ୍ରୀକରଭଞ୍ଜଙ୍କୁ ଧରିବା ପାଇଁ ସମସ୍ତ ଚେଷ୍ଟା ବିଫଳ ହେଲା ।

ପରିଶେଷରେ ଇଂରେଜମାନେ ଶ୍ରୀକରଭଞ୍ଜଙ୍କର ପୁତ୍ର ଧନଞ୍ଜୟ ଭଞ୍ଜଙ୍କୁ ରାଜା ରୂପେ ଗ୍ରହଣ କଲେ । ବିଶାଖାପାଟଣା, ଜଳନ୍ଧର, ପାରଳାଖେମୁଣ୍ଡି, ପ୍ରତାପଗିରି (ପୋଡାମାରି)ର ଜମିଦାରମାନେ ପଦଚ୍ୟୁତ ହେଲେ ଓ ସେମାନଙ୍କୁ ଧରାଇଦେଲେ ୫ ହଜାର ଟଙ୍କା ପୁରସ୍କାର ଦେବାପାଇଁ ଘୋଷଣା କଲେ । ଇତିମଧ୍ୟରେ ଶ୍ରୀକରଭଞ୍ଜ ଗୁମୁସର ରାଜପ୍ରାସାଦରେ ଆତ୍ମଗୋପନ କରି ରହିଲେ ।

୧୮୦୪ ଖ୍ରୀ:ଅ:ରେ ଗାଲେରୀ, କେକଳିବା ଓ ଅନ୍ୟାନ୍ୟ ସ୍ଥାନରେ ବିଦ୍ରୋହର ଅଗ୍ନି ପ୍ରସାରିତ ହେଲା । ୧୮୦୮ ଖ୍ରୀ:ଅ:ରେ ଗୁମୁସର, ଧରାକୋଟ, ଖଲିକୋଟ, ଚିକିଟି ଓ ଆଠଗଡ଼ ଜମିଦାରୀର କେତେକ ଅଞ୍ଚଳ ଇଂରେଜମାନେ ନିଜ ଅଧୀନକୁ ଆଣିଲେ । ୧୮୧୦ ଖ୍ରୀ:ଅ:ରେ ମହୁରୀରାଜ୍ୟ ନିଲାମରେ ଉଠିଗଲା ।

୧୮୧୪ ଖ୍ରୀ:ଅ ରେ ଧନଞ୍ଜୟ ଭଞ୍ଜଙ୍କୁ ଗୋଟିଏ ନରହତ୍ୟା ଅଭିଯୋଗ ମକଦ୍ଦମାରେ ଦୋଷୀ ସାବ୍ୟସ୍ତ କରି ଗିରଫ କରି ଚିଙ୍ଗଲପୁଟ ଠାରେ ନଜର ବନ୍ଦୀ ଭାବେ ରଖାଗଲା । (୧୮୧୫ ଠାରୁ ୧୮୧୮ ଖ୍ରୀ:ଅ: ପର୍ଯ୍ୟନ୍ତ ଗୁମୁସର ଅରାଜକ ଥିଲା) ।

ଆଜ କେତେଦିନ ପରେ ଏକ ସାଲିସ୍ ଜରିଆରେ ପଦଚ୍ୟୁତ ଭଞ୍ଜ ରାଜା ଶ୍ରୀକରଭଞ୍ଜ (ଧନଞ୍ଜୟଭଞ୍ଜଙ୍କ ପିତା)ଙ୍କୁ ଆଉଥରେ ଗୁମୁସରର ରାଜା ରୂପେ ଘୋଷଣା କରାଗଲା ଓ ତାଙ୍କ ପୁତ୍ର ଧନଞ୍ଜୟ ଭଞ୍ଜଙ୍କୁ ଭରା ବନ୍ଦୋବସ୍ତ କରାଗଲା । ୧୮୩୨ ଖ୍ରୀ:ଅ:ର ସମୟ ଅନୁସାରେ ରାଜସ୍ୱ ପରିଶୋଧ ନ କରିବା ଯୋଗୁଁ ବୃଦ୍ଧାବସ୍ଥାରେ ତାଙ୍କୁ ଆଉଥରେ କ୍ଷମତାଚ୍ୟୁତ କରାଗଲା । ପୁଣି ଧନଞ୍ଜୟଭଞ୍ଜଙ୍କୁ ଚିଙ୍ଗଲପୁଟ ଜେଲରୁ ମୁକ୍ତକରି ପୁନର୍ବାର ଗୁମୁସର ରାଜ ସିଂହାସନରେ ଅଭିଷେକ୍ତ କରାଗଲା ।

ଗୁମୁସର ରାଜଭକ୍ତ ପ୍ରଜାମାନେ ରାଜ-ପରିବାର ଲୋକଙ୍କ ଉପରେ ଅତ୍ୟାଚାର ଦେଖିଲେ କାଳେ ରାଜ୍ୟରେ ଅସନ୍ତୋଷ କୁହୁଳି ଉଠିବ, ସେଥିପାଇଁ ରାଜବଂଶର ଶେଷ ବଂଶଧର ସମସ୍ତଙ୍କୁ ନେଇ ବନ୍ଦୀ କଲେ । ଇଂରେଜମାନେ ଶେଷ ରାଜା ଧନଞ୍ଜୟ ଭଞ୍ଜଙ୍କର ପରିବାର-ବର୍ଗଙ୍କୁ ଯଥା ଜଗନ୍ନାଥ ଭଞ୍ଜ,ବଳଭଦ୍ର ଭଞ୍ଜ,ବ୍ରଜରାଜ ଭଞ୍ଜଙ୍କୁ ଭେଲୋର ଜେଲରେ ଅଟକ ରଖିଲେ । ବୃନ୍ଦାବନ ଭଞ୍ଜଙ୍କର ପରିବାରକୁ ବିଶାଖା-ପାଟଣା ଜେଲକୁ ନିଆଗଲା । ପରେ ନିଜ ସ୍ଥାନ ହ୍ୱିଂଜଲକାଟ୍‌ରେ ରଖିବା ପାଇଁ ହୁକୁମ ହେଲା । ବଳଭଦ୍ର ଭଞ୍ଜଙ୍କୁ ପରେ ଇଚ୍ଛାପୁରରେ ଅଟକ ବନ୍ଦୀ ରୂପେ ରଖାଗଲା । ବନମାଳି ଭଞ୍ଜଙ୍କୁ ବିଜୟନଗର ଓ ରାମ ଭଞ୍ଜଙ୍କୁ ସିକାକୁଲମରେ, ପିଣ୍ଡିକ ଭଞ୍ଜ ଓ ବାସୁଦେବ ଭଞ୍ଜଙ୍କୁ ଆସିକା ଜେଲରେ ଅଟକବନ୍ଦୀ, ନିମକୋଳି ଭଞ୍ଜଙ୍କୁ ଗଞ୍ଜାମ ଜେଲରେ ଅଟକବନ୍ଦୀ କରି ରଖାଗଲା ।

ଇଂରେଜମାନେ ଜନସାଧାରଣଙ୍କ ମଧ୍ୟରେ ଭୟ ଜାତ କରିବା ପାଇଁ ଓ ବିଦ୍ରୋହୀମାନଙ୍କୁ ସାହାଯ୍ୟ ନ କରିବା ପାଇଁ ପ୍ରାୟ ଦଶଜଣଙ୍କୁ ଯାବଜ୍ଜୀବନ କାରାଦଣ୍ଡ ଦେଇଥିଲେ ।

ଏହି ଗୁମୁସରର ବିଦ୍ରୋହ ଦମନ କରିବା ପାଇଁ ତଥା ଆତଙ୍କରାଜ ସୃଷ୍ଟି କରିବା ପାଇଁ ଇଂରେଜମାନେ ପଞ୍ଚଶୃଙ୍ଖଶି ଜଣଙ୍କୁ ଫାଶି ଦେଇଥିଲେ ।

ଗୁମୁସରର ବିପ୍ଳବୀ ବୀରମାନଙ୍କର ବିଦ୍ରୋହ ଏତେ ବ୍ୟାପକ ଥିଲା ଯେ, ବିଭିନ୍ନ ରଣାଙ୍ଗନକୁ ସାମନା କରିବା ପାଇଁ ତେତିଶି ଜଣ ସେନାନାୟକଙ୍କୁ ପଠାଯାଇଥିଲା ।

ଗୁମୁସର ବିଦ୍ରୋହକୁ ପଣ୍ଡ କରିବା ପାଇଁ ବହୁ ଦେଶ-ଦ୍ରୋହୀ ଯଥା—ଆଠଗଡ଼, କରଡ଼ା, ସୋରଡ଼ା, ଦଶପଲ୍ଲା, ବୌଦ୍ଧ, ନୟାଗଡ଼ର ରାଜାମାନେ ଇଂରେଜମାନଙ୍କୁ ସାହାଯ୍ୟ କରିଥିଲେ । ପ୍ରଧାନ ବିଦ୍ରୋହୀ ଶ୍ୟାମ ବିଶୋଇ ମରଣଶେଷରେ ଇଂରେଜମାନଙ୍କର ଆନୁଗତ୍ୟ ସ୍ୱୀକାର କଲେ ।

ସ୍ୱାଧୀନତା ରକ୍ଷା କରିବା ପାଇଁ ଗୁମୁସର ରାଜଭକ୍ତ ବୀର-ମାନେ, ଇଂରେଜମାନଙ୍କ ବିରୁଦ୍ଧରେ ବାରମ୍ବାର ବିଦ୍ରୋହ କରି ହୃଦ ସ୍ପନ୍ଦନ ସୃଷ୍ଟି କଲେ । ଇଂରେଜ ସେନାନାୟକ କ୍ୟାମ୍ପବେଲ ଲେଖିଛନ୍ତି, 'ଆମେ ଯେତେବେଳେ ଗୁମୁସର ସେନାର ସାମନା କରୁ ସେତେବେଳେ ସେମାନେ କ୍ଷିପ୍ର ଗତିରେ ମାଡ଼ିଆସି ଆକ୍ରମଣ କରନ୍ତି । ସଂଗ୍ରାମ ଭୟାବହ ହୋଇ ଯୁଦ୍ଧକ୍ଷେତ୍ର ରକ୍ତାକ୍ତ ହୋଇଉଠେ ।'

କଲେକ୍ଟର୍ ଷ୍ଟିଭେନସନ୍ ଗୁମୁସର ଦଖଲ ଆଶା ତ୍ୟାଗ କରିବାକୁ ଇଂରେଜ ଗଭର୍ଣ୍ଣରଙ୍କୁ ଏକାଧିକ ପତ୍ର ଦେଇଥିଲେ । 'ଗୁମୁସର ଲଢ଼ୁଆ ଦୁର୍ଦ୍ଧର୍ଷ ଯୋଦ୍ଧାମାନଙ୍କର ଗରିଲା ଯୁଦ୍ଧ ଯୋଗୁଁ ତାଙ୍କୁ ମାର

ହୁଏ ନାହିଁ କି ଧରି ହୁଏ ନାହିଁ । ଏହାକୁ ଦଖଲ କରିବାକୁ ହେଲେ ସୁଦକ୍ଷ ସାମରିକ ସେନାପତି ସହ ଅଧିକ ସୈନ୍ୟ ଦିଆଯାଉ । ତାହା ନ ହେଲେ ଗୁମୁସର ରାଜ୍ୟ ଦଖଲ ଆଶା କରିବା ବୃଥା । ଧନ, ଜନ କ୍ଷୟକ୍ଷତି କରି ଅକାତରରେ ଦୁଃଖ କଷ୍ଟ ସହିବା ଅପେକ୍ଷା ରାଜବଂଶର କୌଣସି ଜଣଙ୍କୁ ଶାସନ ଭାର ଅର୍ପଣ କରି ଅଚିରେ ଗୁମୁସର ତ୍ୟାଗ କରିବା ଶ୍ରେୟସ୍କର ।'

ଏକଦା ରସେଲ ସାହେବ ବିପଦରେ ପଡ଼ି ପ୍ରତିହିଂସାରେ ଜର୍ଜରିତ ଓ ଭୟଭୀତ ହୋଇ କହିଥିଲେ, ଯଦି ମୋର ସଙ୍ଗେ ସଙ୍ଗେ ଶାସ୍ତି ଦେବାର ଅଧିକାର ଥାନ୍ତା ତାହାହେଲେ ଏ ଗୁମୁସର ବିପ୍ଳବୀ-ମାନଙ୍କୁ ସମୁଚିତ ଶାସ୍ତି ଦିଆଯାଇ ପାରନ୍ତା ।



# କବିସୂର୍ଯ୍ୟ ବଳଦେବ ରଥ

## ରାଘୁଗୁରୁ ମହାପାତ୍ର

ଚତୁର୍ଦ୍ଦଶ ଶତାବ୍ଦୀର ମଧ୍ୟ ଭାଗଠାରୁ ସପ୍ତଦଶ ଶତାବ୍ଦୀର ମଧ୍ୟ ଭାଗ ପର୍ଯ୍ୟନ୍ତ ଓଡ଼ିଶା ଇତିହାସରେ ବିପ୍ଳବ, ଲୁଣ୍ଠନ, ଅତ୍ୟାଚାର ଓ ରକ୍ତପାତର ଧାରା ବହି ଯାଇଥିଲା । ଶାନ୍ତି, ନିରାପତ୍ତା ବିପନ୍ନ ହୋଇଥିଲା । ଆଫଗାନ୍‌ଙ୍କ ପରେ ମୋଗଲମାନଙ୍କ ହିନ୍ଦୁ ବିଦ୍ୱେଷ, ଭୁଲ୍ ଦାକ୍ଷିଣାତ୍ୟ ନୀତି ଓ ଅତ୍ୟାଚାର ଯୋଗୁଁ ମୋଗଲ ସାମ୍ରାଜ୍ୟର ସୂର୍ଯ୍ୟ ଅସ୍ତମିତ ହୋଇଥିଲା । ମରହଟ୍ଟାମାନେ ଏମାନଙ୍କର ଶାସନକୁ ବ୍ୟତିବ୍ୟସ୍ତ କରୁଥିଲେ । କେନ୍ଦ୍ର ଶାସନ ଦୁର୍ବଳ ହେବା ଯୋଗୁଁ ରାଜା, ଜମିଦାରମାନେ ନିଜ ସୀମା ଭିତରେ ଅଖଣ୍ଡ ରାଜତ୍ୱ କରୁଥିଲେ । ଗୃହ ବିବାଦ ଚରମ ସୀମାରେ ଉପନୀତ ହୋଇଥିଲା । ଏହାର ସୁଯୋଗ ନେଇ ଓଡିଶାରେ ଇଂରେଜମାନେ କୂଟନୈତିକ ଅନୁପ୍ରବେଶ କରି ହତ୍ୟା, ଲୁଣ୍ଠନ, ନିର୍ଯ୍ୟାତନା ଚଳାଇ ଆମର ସ୍ୱାଧୀନତା ଲୋପ କରିଥିଲେ । ଜାତୀୟ ଜୀବନ ବିପର୍ଯ୍ୟସ୍ତ ହୋଇ ଧର୍ମ, ସମାଜ, ସଂସ୍କୃତିର ପତନ ଘଟିଲା । ପଡ଼ୋଶୀ ରାଜ୍ୟ ଆମର ଭାଷା ଓ ସାହିତ୍ୟକୁ ଲୋପ କରିଦେବା ପାଇଁ ଯେଉଁ ହୀନ ଚକ୍ରାନ୍ତ କରି ଘନ ଅନ୍ଧକାର ରାଶି ସୃଷ୍ଟି କଲେ ଠିକ୍ ସେତିକି ବେଳେ ବଳଦେବ ରଥ ୧୭୭୯ ଖ୍ରୀ:ଅ: ମାଘ ଶୁକ୍ଳ ପଞ୍ଚମୀ ଦିନ ଗଞ୍ଜାମଜିଲ୍ଲା ଆଠଗଡ଼ଠାରେ ଅନ୍ଧକାରକୁ ଚିରି ପ୍ରଭାତୀ କାକଳୀ-ସଙ୍ଗୀତର ଛନ୍ଦ ନେଇ, ଉଷାର ରକ୍ତିମ ଆଭା ଉକୁଟାଇ

ସୂର୍ଯ୍ୟ ସ୍ୱରୂପ ଜନ୍ମଗ୍ରହଣ କରିଥିଲେ । ତାଙ୍କର ସାହିତ୍ୟ ଓ ସଙ୍ଗୀତ ମଣି କାଞ୍ଚନର ସଂଯୋଗ ପରି ଅତ୍ୟନ୍ତ ଚିତ୍ତାକର୍ଷକ ।

ଉତ୍କଳଘଣ୍ଟ ଯଦୁମଣି ମହାପାତ୍ର ମଧ୍ୟ ୧୭୮୧ ଖ୍ରୀ:ଅ:ରେ ଆଠ-ଗଡ଼ରେ ଶୁଭକ୍ଷଣରେ ଜନ୍ମଗ୍ରହଣ କରିଥିଲେ । ଆଠଗଡ଼ର ସୁରମ୍ୟ ପ୍ରାକୃତିକ ବିଭବ ଏହି ଦୁଇ ଜଣଙ୍କୁ କବି କରିବାରେ ସୁବର୍ଣ୍ଣ ସୁଯୋଗ ଦେଇଥିଲା । ସମସାମୟିକ ବୈଷ୍ଣବ କବି ଗୋପାଳକୃଷ୍ଣ ପଟ୍ଟନାୟକ ମଧ୍ୟ ୧୭୭୬ ଖ୍ରୀ:ଅ:ରେ ପାରଳାଖେମୁଣ୍ଡିରେ ଜନ୍ମଗ୍ରହଣ କରିଥିଲେ । ବଳଦେବ ନୟାଗଡ ଠାରେ ଯଦୁମଣିଙ୍କୁ ଓ ପାରଳାଖେମୁଣ୍ଡି ଠାରେ ଗୋପାଳକୃଷ୍ଣଙ୍କୁ ସାକ୍ଷାତ କରିବାର ସୁଯୋଗ ପାଇଥିଲେ ।

ବଳଦେବଙ୍କ ପିତା ଉଜ୍ଜ୍ୱଳ ରଥ ୧୭୩୫ ଖ୍ରୀ:ଅ:ରେ ଜନ୍ମ ଗ୍ରହଣ କରିଥିଲେ । ସେ ପୁରୀ ଜିଲ୍ଲାର ମଣିପୁର ରଥଙ୍କର ବଂଶଧର ଥିଲେ । ଉଜ୍ଜ୍ୱଳରଥ ବଡ଼ଖେମୁଣ୍ଡି ରାଜା ପୁରୁଷୋତ୍ତମ ଅନଙ୍ଗ ଭୀମ-ଦେବଙ୍କ (୧୭୬୮—୧୭୭୬ ଖ୍ରୀ ଅ:) ସଭା ପଣ୍ଡିତ ଥିଲେ । 'କବିରାଜ-ବ୍ରହ୍ମା' ଉପାଧି ପାଇଥିଲେ । ରାଜାଙ୍କର ମୃତ୍ୟୁ ପରେ ସେ ଯେଉଁ ଆର୍ଥିକ ସାହାଯ୍ୟ ପାଉଥିଲେ ତାହା ବନ୍ଦ ହୋଇଗଲା । ସେଥିପାଇଁ ଉଜ୍ଜ୍ୱଳ-ରଥଙ୍କୁ ଚୌପାଠୀରେ ଗୋଟିଏ ଗୃହଶାଳୀ କରି ଜୀବନଯାପନ କରିବାକୁ ପଡିଥିଲା । ତାଙ୍କର ବଡପୁଅ ହରିହର ୧୭୫୯ ଖ୍ରୀ:ଅ:ରେ ଜନ୍ମଗ୍ରହଣ କରିଥିଲେ । ସେ ୪୮ ବର୍ଷ ବୟସରେ ମୃତଦାର ହୋଇ ଆଉ ବିବାହ କରିବାକୁ ଅମଙ୍ଗ ହେଲେ । ଏକମାତ୍ର କନ୍ୟା ସୁଲକ୍ଷଣା ବିଧବା ହୋଇ-ଗଲେ । ଉଜ୍ଜ୍ୱଳରଥ ନିଜର ବଂଶରକ୍ଷା କରିବା ପାଇଁ ଇଷ୍ଟଦେବ ବଳଦେବଙ୍କୁ ଆରାଧନା କରିବା ଫଳରେ ତାଙ୍କ ସ୍ତ୍ରୀ କବି ବଳଦେବଙ୍କୁ ଗର୍ଭରେ ଧାରଣ କଲେ । ଇଷ୍ଟଦେବଙ୍କ ନାମାନୁସାରେ ତାଙ୍କର ନାମ

ରହିଲା 'ବଳଦେବ'। ଆହୁରି ମଧ୍ୟ ଲୋକାଗ୍ରର ମତରେ ବ୍ରାହ୍ମଣ ପରି-ବାରରେ କ୍ଷତ୍ରିୟ ସନ୍ତାନ ନିଜ ଘରେ ଜନ୍ମଗ୍ରହଣ କରିବା ବିଧି ନଥିଲା। ସେଥିପାଇଁ ଏହି ଦୁର୍ଦ୍ଦିନ ମଧ୍ୟରେ ଆସନ୍ନ ପ୍ରସବା ସ୍ତ୍ରୀଙ୍କୁ ଭବିଷ୍ୟତ ସନ୍ତାନର ସୁଖ, ମଙ୍ଗଳ ପାଇଁ ଆଠଗଡ଼ ନିବାସୀ ତାଙ୍କ ଶ୍ୱଶୁର ବିପ୍ରବର ହୋତାଙ୍କ ଅନୁରୋଧ କ୍ରମେ ଆଠଗଡ଼କୁ ପଠାଇ ଦେଇ-ଥିଲେ। ସେଇଠାରେ କ କବି ଜନ୍ମ ନେଇଥିଲେ।

ପୂର୍ବ ରାଜା ମୁକୁନ୍ଦଦେବ କବି ବଳଦେବରଥଙ୍କୁ ଯେଉଁ ସନନ୍ଦ ଦେଇଥିଲେ—ସେଥିରେ ଉଲ୍ଲେଖ ଅଛି ଯେ—

"........ ଆଠଗଡ଼ ନିବାସୀ ବଳଦେବ ରଥଙ୍କୁ କବିସମ୍ରାଟ ରାଜଗୁରୁ ମହାପାତ୍ର ଦେ......" କବିସମ୍ରାଟ ଗ୍ରନ୍ଥାବଳୀ ପୃଷ୍ଠା-୩୮।

ଆଉ କେତେକ ବିଶିଷ୍ଟ ଲେଖକ ଓ ସମାଲୋଚକଙ୍କ ମତରେ ବଳଦେବରଥ ବଡ଼ଖେମୁଣ୍ଡିରେ ବା ନିକଟସ୍ଥ ବିଜୟନଗର ଗଡ଼ଠାରେ ଜନ୍ମଗ୍ରହଣ କରିଥିଲେ।

ବଡଖେମୁଣ୍ଡିର ବିପ୍ଳବୀ ରାଜଭକ୍ତ ପ୍ରଜାମାନେ ଇଂରେଜ ମାନଙ୍କର ଅଧିନତା ସ୍ୱୀକାର ନ କରି ସମସ୍ତେ ବିପ୍ଳବ କରିଥିଲେ। ସେଥିରେ ପରାସ୍ତ ହେବା ପରେ ବଡ଼ଖେମୁଣ୍ଡିର ପ୍ରାଚୀନ ଦୁର୍ଗ 'ବିଜୟନଗର ଗଡ଼' ଧୂଳିସାତ ହୋଇଯାଇଛି। ଏହି ଗଡର ପତନ ପରେ ନୂତନ ଗଡ଼ ଡିଗପହଣ୍ଡିକୁ ସପରିବାର ଆସି ଏଠାରେ ଦକ୍ଷିଣ ଉପକଣ୍ଠବର୍ତ୍ତୀ 'ବରପଡ଼ିଆ' ଠାରେ 'ଖେମୁଣ୍ଡି ଚତୁଷ୍ପାଠୀ' ପୁନଃ ସ୍ଥାପନ କରିଥିଲେ। ବର୍ତ୍ତମାନ ସେହି ସ୍ଥାନରେ ଖେମୁଣ୍ଡି କଲେଜ ସ୍ଥାପନ କରାଯାଇଛି। ବଡଖେମୁଣ୍ଡି ଉଚ୍ଚ ବିଦ୍ୟାଳୟ ସାମନା ପଡ଼ିଆ-

ରେ ଉଜ୍ଜ୍ୱଳରଥ ନିଜ ପରିବାରର ବସବାସ ପାଇଁ କୁଟୀର ରଚନା କରିଥିଲେ । ଏହି କୁଟୀରରେ କବିଙ୍କର ପ୍ରତିଭା ଅନୁଶୀମା ଉଦ୍ଭାସିତ ହୋଇଥିଲା ।

ବଳଦେବ ୫ ବର୍ଷ ସମୟରେ ନିଜ ପିତାଙ୍କ ନିକଟରେ ବିଦ୍ୟା ଆରମ୍ଭ କଲେ । ପ୍ରଥମେ ଓଡ଼ିଆ ଶିକ୍ଷା କାଳରେ ସଂସ୍କୃତ ବ୍ୟାକରଣ ଓ ଅମରକୋଷ ଶିକ୍ଷା ଲାଭ କରିଥିଲେ ।

କବିଙ୍କୁ ଯେତେବେଳେ ୯ ବର୍ଷ ବୟସ ତାଙ୍କର ବ୍ରତ ଉପନୟନ ବିଜୟନଗର ଗଡ଼ (ବଡ଼ଖେମୁଣ୍ଡି) ଠାରେ ହୋଇଥିଲା । ଏହାର ୪ ମାସ ପରେ କବିଙ୍କୁ ୧୦ ବର୍ଷ ବୟସ ସମୟରେ ତାଙ୍କ ମାତା ଚିହ୍ନଲୀଳା ସମ୍ବରଣ କରିଥିଲେ ।

ମାତୃଚ୍ଛେଦଜନିତ ପୁତ୍ରର ଯତ୍ନାଭାବ ଯୋଗୁଁ ପିତା ଉଜ୍ଜ୍ୱଳରଥ ବିବ୍ରତ ହୋଇପଡ଼ିଲେ । ପରିଶେଷରେ ଠିକ୍ କଲେ ଯେ ତାଙ୍କୁ ଅଜାଙ୍କ ଘରକୁ ପଠାଇ ଦେବାପାଇଁ । ମାତୃହୀନ ନାତିର ନିରାଶ୍ରୟ ଅବସ୍ଥା ଦେଖି ଅଜା ନିଜ ପୁତ୍ରର ହୋତା ନିଜଘରେ ଆଠଗଡ଼ ହେମଗିରି ସାହିକୁ ୧୧ ବର୍ଷର ବାଳକ ବଳଦେବଙ୍କୁ ନେଇଗଲେ । ସେଠାରେ ସେ ସଂସ୍କୃତ, କାବ୍ୟ, ଅଳଙ୍କାର, ଦର୍ଶନ, ଶ୍ରୁତି, କାମଶାସ୍ତ୍ର ଇତ୍ୟାଦି ଯତ୍ନ ସହକାରେ ପଢ଼ାଇଥିଲେ । 'ତୁଳସୀ ଦୁଇ ପତ୍ରରୁ ବାସେ' । ଏଠାରେ ଅସାଧାରଣ ଧୀଶକ୍ତି, କବି ପ୍ରତିଭା ବିଶେଷଭାବେ ବିକଶିତ ହୋଇ ଉଠିଥିଲା । ଏହି ଅବସରରେ ସେ କବି ସମ୍ରାଟ ଉପେନ୍ଦ୍ର-ଭଞ୍ଜଙ୍କର ସାହିତ୍ୟ ଅଧ୍ୟୟନ କରିବା ପାଇଁ ବିଶେଷ ସୁଯୋଗ ପାଇ ପାରିଥିଲେ ।

ଅସାଧାରଣ ଅଲୌକିକ କାର୍ଯ୍ୟ ସାଧନା ପାଇଁ ଦୈବୀଶକ୍ତିର ପ୍ରୟୋଜନ ହୋଇଥାଏ । କଥିତ ଅଛି ଯେ କବିଙ୍କର ଅଜା ଜଣେ ସିଦ୍ଧ ତାନ୍ତ୍ରିକ ଥିଲେ ଓ ଅଦ୍ଭୁତ ସାଧନା କରି ବହୁତ ଅଲୌକିକ କାର୍ଯ୍ୟ କରି ପାରୁଥିଲେ । ଏହା ଦ୍ୱାରା କବିଙ୍କର ମନରେ ଦୃଢ଼ ଧାରଣା ହେଲା ଯେ ମନ୍ତ୍ର, ଯନ୍ତ୍ର ଓ ଦେବୀ ସାଧନା ଦ୍ୱାରା ଅନେକ କିଛି କରି ହେବ । ସେ ଅଜାଙ୍କ ଜରିଆରେ ତାନ୍ତ୍ରିକ ଶକ୍ତି ମାଧ୍ୟମରେ ଇଷ୍ଟଦେବୀ ଦୁର୍ଗାଙ୍କ ସ୍ତନରୁ ଦୁଗ୍ଧ ପାନ କରିବା ଫଳରେ ତାଙ୍କର ଦୈବୀଶକ୍ତି ଲାଭ ହୋଇଥିଲା । ସେହି ଦିନଠାରୁ ଅଲୌକିକ ପ୍ରତିଭା ବଳରେ ସେ ରସାତ୍ମକ କବିତା ଲେଖିବାର ଆରମ୍ଭ କରିଥିଲେ ।

୧୭୯୬ ଖ୍ରୀ:ଅ:ରେ କିଶୋର ବୟସରେ, ପୁରୀ ବାସେଲୀସାହି ନିବାସୀ ରାମକୃଷ୍ଣ ମିଶ୍ରଙ୍କ କନ୍ୟା ରତ୍ନମଣିଙ୍କୁ ବିବାହ କରିଥିଲେ । ବଳଦେବଙ୍କର ବିବାହର ଛ'ମାସ ପରେ ପିତା ପରଲୋକ ଗମନ କଲେ । ଯାହା ଫଳରେ ତାଙ୍କର ପରିବାରର ସମସ୍ତେ ମ୍ରିୟମାଣ ହୋଇ ପଡ଼ିଲେ । ରାଜଦତ୍ତ ଅନୁଗ୍ରହ ଯାହା କିଛି ଥିଲା ସେ ସବୁ ହରାଇ ବସିଲେ । ସମସ୍ତେ ଶୋକସାଗରରେ ଭାସି ଜନ୍ମମାଟିର ମାୟା ବନ୍ଧନ ତୁଟିବାକୁ ବସିଲା ।

ଦୁଃଖ କେବେହେଲେ ଏକାକୀ ଆସେ ନାହିଁ । ତାର ସାଙ୍ଗସାଥି ମାନଙ୍କୁ ନେଇ ଆସେ । ଏହି ଦୁର୍ଦ୍ଦିନରେ ୧୭୯୮ ଖ୍ରୀ:ଅ:ରେ, ବଡ଼ଭାଇ ହରିହର (ମୃତଦାର) ସାନଭାଇ ବଳଦେବ, ଭାଇବୋହୂ ରତ୍ନମଣି, ବିଧବା ଭଉଣୀ ସୁଲକ୍ଷଣାଙ୍କର ଭରଣ ପୋଷଣ ପାଇଁ ବଡ଼ଖେମୁଣ୍ଡି ପରିତ୍ୟାଗ କରି ବାଧ୍ୟ ହୋଇ ଜଳନ୍ତର ରାଜାଙ୍କ ନିକଟରେ ଆଶ୍ରୟ ନେଲେ ।

ଏହି ସମୟରେ ୧୭୯୭ଖ୍ରୀ:ଅରେ ଜଳନ୍ତରରେ ଶ୍ରୀ ରାମଚନ୍ଦ୍ର ଶ୍ରେଷ୍ଠରାୟ ରାଜ ସିଂହାସନ ପାଇଥିଲେ । ସେ ଜଣେ ସାହିତ୍ୟ ପ୍ରେମୀ ରାଜାଥିଲେ । ସେ କବିଙ୍କର ସୁଲଳିତ କଣ୍ଠରେ ଗୀତ, କବିତା, ସରସ-ତାରେ ମୁଗ୍ଧ ହୋଇ, ତାଙ୍କର ବିରାଟ ପ୍ରତିଭାକୁ ସମ୍ମାନ ଦେବା ପାଇଁ ରାଜ ସଭାରେ ୧୭୯୮ ଖ୍ରୀ:ଅ:ରେ 'କବିସୂର୍ଯ୍ୟ' ଉପାଧି ପ୍ରଦାନ କରିଥିଲେ । ଦରବାରରେ ରାଜକବି ଓ ପ୍ରଧାନ ପ୍ରଶାସକ ରୂପେ ସ୍ଥାନ ଅଳଂକୃତ କରିଥିଲେ । ଏଠାରେ ଭଞ୍ଜଙ୍କର ଲାବଣ୍ୟବତୀ ଅନୁକରଣରେ ରାଜାଙ୍କର ପାଳିତା କନ୍ୟା ଚନ୍ଦ୍ରକଳା ନାମରେ 'ଚନ୍ଦ୍ରକଳା କାବ୍ୟ' ରଚନା କରିଥିଲେ । କବିଙ୍କର ଯଶ ପ୍ରତ୍ୟୁଷ ସୂର୍ଯ୍ୟପରି ପ୍ରତିମୟ ହୋଇଉଠିଲା । ରାଜା ରାମଚନ୍ଦ୍ର ଶ୍ରେଷ୍ଠରାୟ ବଳଦେବଙ୍କର ରଚନା-ବଳୀର ପ୍ରବଳ ଉତ୍ସାହ ଦାତାଥିଲେ । ଜଳନ୍ତରରେ ସେ ବାରବର୍ଷ କାଳାତିପାତ କରିଥିଲେ ।

କବିସୂର୍ଯ୍ୟଙ୍କର ଯଶରାଶି ଚତୁର୍ଦ୍ଦିଗେ ବିଚ୍ଛୁରିତ ହୋଇ ଉଠିଲା । ୧୮୧୦ ଖ୍ରୀ:ଅ:ରେ ଆଠଗଡ଼ର ରାଜା ବାଲୁଙ୍କେଶ୍ୱର ହରି-ଚନ୍ଦନ ତାଙ୍କ ପ୍ରତି ଆକୃଷ୍ଟ ହୋଇ କବିଙ୍କୁ ନିଜ ରାଜ୍ୟକୁ ସସମ୍ମାନରେ ନିମନ୍ତ୍ରଣ କଲେ । ସେ ପୂର୍ବ ପରିଚିତ ଅଜାଘର ଗାଁକୁ ଆସିବା ପାଇଁ ବିଶେଷ ଖୁସି ହେଲେ । ଆଠଗଡ଼ର ବିଖ୍ୟାତ ପଣ୍ଡିତ ରାଜା ତାଙ୍କୁ ଆଦରରେ ରଖି ରାଜସଭାରେ ସଂସ୍କୃତ, ସଙ୍ଗୀତର ଆଲୋଚନା ଚଳାଇ ଥିଲେ । କବିଙ୍କୁ ସମ୍ମାନର ସହିତ ୧୮୧୦ ଖ୍ରୀ:ଅ:ରେ 'କବିସୂର୍ଯ୍ୟ ରାୟ-ଗୁରୁ' ଉପାଧିରେ ଭୂଷିତ କଲେ । କବି ଏଠାରେ କିଶୋର ଚନ୍ଦ୍ରାନନ ଚମ୍ପୂ ରଚନା କରି କୃଷ୍ଣଭକ୍ତ ରାଜାଙ୍କୁ ଭଣିତ କରିଥିଲେ । ଏହାର ପରି ଉତ୍କୃଷ୍ଟ ସାହିତ୍ୟ ଉତ୍କଳ ସାହିତ୍ୟ ରାଜ୍ୟରେ ଏକାନ୍ତ ଦୁର୍ଲ୍ଲଭ । ପ୍ରକୃତି ରୂପିଣୀ ରାଧାଙ୍କ ସଙ୍ଗେ ପରମ ପୁରୁଷ କୃଷ୍ଣଙ୍କର ମିଳନ

ଏଥିରେ ବର୍ଣ୍ଣନା ହୋଇଅଛି । ଏହା ରାଧାକୃଷ୍ଣଙ୍କ ନାମରେ ସମର୍ପଣ କରିଥିବା ଯୋଗୁଁ ସେ 'ତୁଳସୀ ଚଉତିଶା' କବି ନାମରେ ପରିଚିତ । 'ଚମ୍ପୂ' ସଙ୍ଗୀତ ଆଠଗଡ଼ର ନିଜସ୍ୱ । କବି ପ୍ରାୟ ୧୨ ବର୍ଷ ଏଠାରେ ଅତିବାହିତ କରିଥିଲେ । କବିସୂର୍ଯ୍ୟ ହିଁ ଓଡ଼ିଶାର ଶ୍ରେଷ୍ଠ ସଙ୍ଗୀତ ପ୍ରବର୍ତ୍ତକ । ତାଙ୍କର ସେଠାରେ ସଙ୍ଗୀତଜ୍ଞ ବନ୍ଧୁ ହିସାବରେ ରାଜମଣି-ପାତ୍ର, ମଦନମଣି ଓ ନାରାୟଣ ଜେନା ଥିଲେ । କିଛିଦିନ ମଧ୍ୟ କବିସୂର୍ଯ୍ୟ ପାରିକୁଦ ଯାଇ ରାଜା ନୀଳାଦ୍ରିବିହାରୀ ହରିଚନ୍ଦନଙ୍କ ରାଜ ସଭାରେ କେତୋଟି କବିତା ରଚନା କରି ତାଙ୍କ ନାମରେ ଭଣିତ କରିଥିଲେ ।

କବିସୂର୍ଯ୍ୟଙ୍କ ପୂର୍ବ ପୁରୁଷମାନେ ରଥ ସାମନ୍ତ ବଂଶଧର ପୁରୀ ଜିଲ୍ଲାରୁ ଗଞ୍ଜାମକୁ ଆସିଥିଲେ । ତାପରେ ପୁରୀରେ ତାଙ୍କର ଶ୍ୱଶୁରଘର । ସେତେବେଳକୁ ତାଙ୍କର ବଡ଼ ଝିଅର ବିବାହ ବୟସ ହୋଇ ସାରି-ଥିଲା । ବରପାତ୍ର ଖୋଜିବାକୁ ପଡ଼ିବା ଓ ବଡ଼ ଠାକୁରଙ୍କ ଆକର୍ଷଣ ଯୋଗୁଁ ସେ ସ୍ଥିର କଲେ । ଏହାର ସମସ୍ତ ବ୍ୟବସ୍ଥା ଆଠଗଡ଼ ରାଜା କରିଦେଲେ । ପୂର୍ବେ ମୋଗଲମାନଙ୍କର ଅତ୍ୟାଚାରରୁ ରକ୍ଷା କରିବା ପାଇଁ ଆଠଗଡ଼ ରାଜା ବଡ଼ଠାକୁର, ଠାକୁର ରାଜାଙ୍କୁ ଶରଣ ଦେଇ ଆଶ୍ରୟ ଦେଇଥିଲେ । ସେଥିପାଇଁ ପ୍ରତି ଏକାଦଶୀ ଦିନ ଶ୍ରୀମନ୍ଦିରରେ ମହାପ୍ରସାଦ ଉଠିଲାବେଳେ 'ଶରଣ ରକ୍ଷଣ ମାନ ଉଦ୍ଧାରଣ, ଜୟ ଜୟ ହରିଚନ୍ଦନ' ବୋଲି ଡାକ ପଡ଼େ । ଏବେ ମଧ୍ୟ ଆଠଗଡ଼ର ପାଣ୍ଡିଚ-ପଡ଼ା ମାଳର ମାଝିଠାରେ ବଡଠାକୁରଙ୍କର ଆଶ୍ରୟସ୍ଥଳୀ ମନ୍ଦିରଗୁଡ଼ିକ ତା'ର ମୂକସାକ୍ଷୀ ରୂପେ ବିଦ୍ୟମାନ । ଏହା ପର୍ଯ୍ୟଟନ କେନ୍ଦ୍ରଟି ଲୋକ ଲୋଚନର ବାହାରେ ରହି ଅବହେଳିତ ଅବସ୍ଥାରେ ରହିଅଛି ।

୧୮୧୫ ଖ୍ରୀ:ଅ: ବେଳକୁ ପୁରୀରେ ମୁକୁନ୍ଦଦେବ ରାଜାଥିଲେ ।

ସେ କବିଙ୍କର ପ୍ରତିଭାରେ ମୁଗ୍ଧ ହୋଇ, ଆଠଗଡ଼ର ପୂର୍ବ ମମତା ଫଳରେ କବିଙ୍କୁ "କବିସୂର୍ଯ୍ୟ ବିପ୍ରଗୁରୁ ମହାଚାର୍ଯ୍ୟ" ଉପାଧି ଓ ସ୍ୱତନ୍ତ୍ର ସନନ୍ଦ ୧୮୧୫ ଖ୍ରୀ:ଅ:ରେ ପ୍ରଦାନ କରିଥିଲେ । ସେଠାରେ କବିସୂର୍ଯ୍ୟ ମହାବାହୁ ଜଣାଣ, ଜଗନ୍ନାଥ ଜଣାଣ, ସର୍ପ ଜଣାଣ ଇତ୍ୟାଦି ରଚନା କରିଥିଲେ । ପୁରୀରେ ସେ ୫ ମାସ କାଳ ସମ୍ମାନର ସହ କାଳାତିପାତ କରି ଆଠଗଡ଼ ବାଟେ ଜଳନ୍ତରକୁ ଫେରିଥିଲେ । କାରଣ ତାଙ୍କର ପରିବାରବର୍ଗ ଜଳନ୍ତରଠାରେ ରହୁଥିଲେ । ଜଳନ୍ତରଠାରେ ନିଜର କନ୍ୟାକୁ ଜଣେ କୁଳୀନ ବ୍ରାହ୍ମଣ ପରିବାରରେ ବିବାହ ଦେଇଥିଲେ ।

ହଠାତ୍ ରାଜା ରାମଚନ୍ଦ୍ର ଛୋଟରାୟଙ୍କର ମୃତ୍ୟୁ ହୋଇଗଲା । କବି ଆଉ ଜଳନ୍ତରରେ ରହିବା ପାଇଁ ଇଚ୍ଛା ପ୍ରକାଶ କଲେ ନାହିଁ । ତେଣୁ ୧୮୧୦ ଖ୍ରୀ:ଅ:ରେ ସେ ସପରିବାର ଆଠଗଡ଼କୁ ଫେରିଲେ ।

ଆଠଗଡ଼ର ରାଜା ବାଲୁଙ୍କେଶ୍ୱର ଜଗଦ୍ଦେବଙ୍କ ରାଜତ୍ୱ ବେଳେ କବିସୂର୍ଯ୍ୟଙ୍କ ଅବସ୍ଥାନ ସମୟରେ, ଆଠଗଡ଼ ଇଂରେଜମାନଙ୍କର ଅନୁଗତ ଥିଲେ । ସେଥିଯୋଗୁଁ ଆଠଗଡ଼ ପରେ କବିସୂର୍ଯ୍ୟଙ୍କୁ ଜଣେ ଓଡ଼ିଆ ସାହିତ୍ୟ ଅନୁରାଗୀ ଇଂରେଜ କଲେକ୍ଟରଙ୍କ ସୁପାରିଶ କ୍ରମେ ମଞ୍ଜୁଷାର ନାବାଳକ ରାଜା କୃଷ୍ଣଚନ୍ଦ୍ର ନରେନ୍ଦ୍ରଦେବଙ୍କର ପ୍ରଧାନ ପରିଚାଳକ (୧୮୨୨—୧୮୩୦ ଖ୍ରୀ:ଅ:) ହୋଇ ରହିଥିଲେ ।

ପାର୍ଶ୍ୱ ପ୍ରଶାସନିକ ଅଭିଜ୍ଞତା ଯୋଗୁଁ ୧୮୩୦ ଖ୍ରୀ:ଅ:ରେ ପାରଳାଖେମୁଣ୍ଡିର ଅସମର୍ଥ, ଇନ୍ଦ୍ରିୟବିଳାସୀ ରାଜା ପଦ୍ମନାଭ ଦେବଙ୍କ ଅଭିଭାବକ ଶିକ୍ଷକ ରୂପେ, ଇଂରେଜମାନଙ୍କଠାରୁ ନିଯୁକ୍ତି ପାଇଲେ । ଅଭିଭାବକ ରୂପେ ସେ ଦେବାନ କାର୍ଯ୍ୟ ବି କରୁଥିଲେ । ସେଠାରେ

ଇଂରେଜମାନଙ୍କୁ ପ୍ରଜା ବିଦ୍ରୋହ ଦମନ କରିବାରେ ସାହାଯ୍ୟ ନ କରି-ବାରୁ ତାଙ୍କର ପ୍ରୀତିଭାଜନ ନ ହୋଇ ଗୃହବାସରୁ ୧୮୩୩ ଖ୍ରୀ:ଅ:ରେ ଅବ୍ୟାହତି ନେଇଥିଲେ ।

ଶେଷ ଜୀବନଟି ବ୍ରହ୍ମପୁର ବାଲିଜାପେଣ୍ଠ ସାହିରେ କଟିଥିଲା । ଜ୍ୟେଷ୍ଠଭ୍ରାତା ହରିହର ଏଠାରେ ପ୍ରାଣତ୍ୟାଗ କରିଥିଲେ । ପ୍ରଥମ ପୁତ୍ର ରଘୁନାଥର ୨୫ ବର୍ଷ ବୟସରେ ଅକାଳ ମରଣ ତାଙ୍କର ଗୋଟିଏ ଦୁଃଖଦାୟକ ଘଟଣା ହୋଇଥିଲା । ଗୋଟିଏ କନ୍ୟାକୁ ସେ ସୁପାତ୍ରରେ ଦାନ କରିଥିଲେ । ପରିଶେଷରେ କବି ଭୁମୁନାଥଙ୍କୁ ଉପାସନା କରି ବିଶ୍ୱନାଥ ନାମରେ ଗୋଟିଏ ପୁତ୍ର ପାଇଥିଲେ ।

କବି ଆଠଗଡ଼ର ଭୂସମ୍ପତ୍ତିର ତଦାରଖ କରିବାପାଇଁ ବହୁତ ସମୟ ଆଠଗଡ଼କୁ ଆସୁଥିଲେ । ସେଠାରେ ରହଣି ସମୟରେ ବିଷମ ବସନ୍ତରେ ପୀଡ଼ିତ ହୋଇ ଚିକିତ୍ସା ଓ ସେବା ପାଇଁ ବ୍ରହ୍ମପୁରକୁ ଆସିଲେ । ମାତ୍ର ୧୮୪୫ ଖ୍ରୀ:ଅ: ବୈଶାଖ ଶୁକ୍ଳପକ୍ଷ ଅଷ୍ଟମୀ ତିଥିଯୁକ୍ତ ଦିନରେ ସେ ଇହଲୀଳା ସମ୍ବରଣ କଲେ ।

ତାଙ୍କର ପାରିବାରିକ ଜୀବନ ସୁଖ ଶାନ୍ତିରେ କଟିଥିଲା । ଜ୍ୟେଷ୍ଠଭାଇ ହରିହରଙ୍କ ସହ ଏକତ୍ର ଶେଷ ପର୍ଯ୍ୟନ୍ତ ରହିଥିଲେ । କବିସୂର୍ଯ୍ୟ ଯେପରି ଗୌରବୋଜ୍ଜ୍ୱଳ ଜୀବନଯାପନ କରିଥିଲେ, ଓଡ଼ିଆ କବିଙ୍କ ମଧ୍ୟରେ ଖୁବ୍ କମ୍ କବିଙ୍କ ଭାଗ୍ୟରେ ତାହା ଘଟିଛି ।

କବିସୂର୍ଯ୍ୟଙ୍କର ମୃତ୍ୟୁ ପରେ ଆଠଗଡ଼ ରାଜା ବାଲୁଙ୍କଗିରି ବିଶେଷ ମର୍ମାହତ ହୋଇଥିଲେ ଓ ଔର୍ଦ୍ଧ୍ୱଦୈହିକ କ୍ରିୟା ପାଇଁ ପ୍ରଚୁର

ଅର୍ଥ ସାହାଯ୍ୟ କରିଥିଲେ । ତାଙ୍କର ମୃତ୍ୟୁ ବେଳକୁ କନିଷ୍ଠ ପୁତ୍ର ବିଶ୍ୱନାଥଙ୍କୁ ୧୦ ବର୍ଷ ହୋଇଥିଲା । ତାଙ୍କର ଶିକ୍ଷାଦାନ ପାଇଁ ମଧ୍ୟ ବିଶେଷ ଯତ୍ନ ନେଇଥିଲେ । ୧୮୫୧ ଖ୍ରୀ:ଅରେ ରାଜାଙ୍କ ମୃତ୍ୟୁ ହେବାରୁ ତାଙ୍କ ପୁତ୍ର ରାମଚନ୍ଦ୍ର ଜଗଦ୍ଦେବ ରାଜା ହେଲେ । ୧୮୫୪ ଖ୍ରୀ:ଅ:ରେ ଆଠଗଡ଼ ରାଜସ୍ୱ ବାକିଆ ଯୋଗୁଁ ନିଲାମ ହେଲା । ଖଲିକୋଟ ରାଜା ନାରାୟଣ ମର୍ଦ୍ଦରାଜ ଏହା ନିଲାମରେ କିଣିଥିଲେ ।

ବିଶ୍ୱନାଥ ରଥଙ୍କର ୫୦ ବର୍ଷ ବୟସରେ ମୃତ୍ୟୁ ହୋଇଥିଲା । ସେ ସୁପଣ୍ଡିତ ଥିଲେ । ବିଶ୍ୱନାଥଙ୍କର ମୃତ୍ୟୁ ପରେ ତାଙ୍କ ପୁତ୍ର ନିଃସହାୟ ଅବସ୍ଥାରେ ବ୍ରହ୍ମପୁର ତ୍ୟାଗକରି ଆସିକା ନିକଟବର୍ତ୍ତୀ ଲାଲଶାସନରେ ବାସ କଲେ । ସେ ମଧ୍ୟ ପଣ୍ଡିତ ଓ କବି ଥିଲେ । ଗଣେଶ୍ୱର ନାମରେ ଏକପୁତ୍ର ଓ ୨ ଗୋଟି କନ୍ୟାର ପିତା ଥିଲେ ।

କବିସୂର୍ଯ୍ୟ—(୧) କିଶୋର ଚନ୍ଦ୍ରାନନ ଚମ୍ପୂ (୨) ଚନ୍ଦ୍ରକଳା (୩) ରତ୍ନାକର ଚମ୍ପୂ (୪) ଚଉପଦୀ ରତ୍ନାକର ଚମ୍ପୂ (୫) ଚଉପଦୀ ଚନ୍ଦ୍ରୋଦୟ (୬) କବିସୂର୍ଯ୍ୟ କବିତା ସୀତା (୭) ସଙ୍ଗୀତ କଳ୍ପଲତା (୮) କବିରବି ଗୀତଗଙ୍ଗାମ୍ବୁ (୯) ଭକ୍ତିଗୀତିକା (୧୦) ହାସ୍ୟ କଲ୍ଲୋଳ (୧୧) ଛାନ୍ଦ ଓ ଚଉତିଶା (୧୨) ଭ୍ରମଣ (୧୩) ସ୍ତୁତି ଓ ଭଜନ (୧୪) ଫୁଲ ମନାସ, ଫଳ ମନାସ, ଅଳଙ୍କାର ମନାସ (୧୫) ମହାବାହୁ ଜଣାଣ, ଜଗନ୍ନାଥ ଜଣାଣ, ସର୍ପ ଜଣାଣ, (୧୬) ହାସ୍ୟ ବ୍ୟଙ୍ଗାତ୍ମକ ରଚନା ଓ ଚଉତିଶା ବିଚିତ୍ର ରଚନା କରିଥିଲେ । ଉପରୋକ୍ତ ଲେଖାଗୁଡ଼ିକ ପ୍ରକାଶିତ ହୋଇଛି । ତାଙ୍କର ଆହୁରି ଅନେକ ରଚନା ପ୍ରକାଶ ପାଇନାହିଁ ।

କବିଙ୍କର 'ହାସ୍ୟକଲ୍ଲୋଳ' ଓଡ଼ିଆ ସାହିତ୍ୟର ଏକ ଅମୂଲ୍ୟ ସମ୍ପଦ । ତାଙ୍କର (ମହାବାହୁ, ଜଗନ୍ନାଥ, ସର୍ପ ଜଣାଣ) ଆମର ଓଡ଼ିଆ ସାହିତ୍ୟକୁ ବିଶେଷ ଭାବେ ସମୃଦ୍ଧ କରିଛି । କବି ସଂସ୍କୃତ ଓ ଓଡ଼ିଆ ଭାଷାରେ ସୁପଣ୍ଡିତ ଥିଲେ ମଧ୍ୟ ତେଲୁଗୁ, ପାର୍ଶି, ବଙ୍ଗାଳୀ, ହିନ୍ଦୀ ଭାଷାରେ ତାଙ୍କର ଜ୍ଞାନ ଥିଲା ।

କବି ବଳଦେବ ରଥ ତାଙ୍କର କାବ୍ୟ କବିତାଗୁଡିକ ଆଠଗଡ଼ ରାଜା, ଜଳନ୍ତର ରାଜା, ସୁରଙ୍ଗି ରାଜା, ଚିକିଟି ରାଜା ଓ ପାରଳୁଦ ରାଜାଙ୍କ ନାମରେ ଗୀତ ଭଣିତ କରିଛନ୍ତି ।

କବି ସମୃଦ୍ଧ ଓ ଗୌରବୋଜ୍ଜଳ ଜୀବନଯାପନ କରିଥିଲେ । ତାଙ୍କର ଖ୍ୟାତି ଓ ଲୋକ ପ୍ରିୟତା ଶୀର୍ଷ ସ୍ଥାନୀୟ ଥିଲା । ଏହିପରି କ୍ୱଚିତ ଓଡ଼ିଆ କବିଙ୍କ ଭାଗ୍ୟରେ ଘଟିଥିବ । ନାରୀରୂପ ବର୍ଣ୍ଣନାରେ ତାଙ୍କର ଲେଖନୀ ପ୍ରଗଲ୍‌ଭ ହୋଇ ଉଠିଛି । ମାନବିକ ପ୍ରେମ ଅପେକ୍ଷା ତାଙ୍କର କବିତାରେ ଅଙ୍ଗଭୋଗର ଦାରୁଣ ପିପାସା ଲକ୍ଷ କରିଛି । କବି ଓଡ଼ିଆ ରୀତି ଯୁଗର ଶେଷ ଦୀପ୍ତିମନ୍ତ ଆଲୋକ ସ୍ତମ୍ଭ । ତାଙ୍କ ଠାରେ ସାହିତ୍ୟ, ସଙ୍ଗୀତର ସମନ୍ୱୟ ଘଟିଥିଲା ।

ତାଙ୍କର ପାଣ୍ଡିତ୍ୟ, ସରଳତା, ପ୍ରଶାସନିକ ଦକ୍ଷତା, ସାହସ, ବାସ୍ତବ ଜ୍ଞାନ, ଦୂରଦୃଷ୍ଟି, ସୁମଧୁର ବ୍ୟବହାର, ସୁଲଳିତ କଣ୍ଠ ଓ ସୁନ୍ଦର ଗଠନ କବିଙ୍କର ବ୍ୟକ୍ତିତ୍ୱକୁ ବଳିଷ୍ଠ କରିଥିଲା । ସେଥିପାଇଁ ତାଙ୍କ ଉପରେ ଯଶଖ୍ୟାତି, ପ୍ରତିପତ୍ତି ଆଦର ସମ୍ମାନ ଅଜାଡ଼ି ହୋଇ ପଡ଼ିଥିଲା । ପ୍ରଶାସନିକ ଭାବେ ଗାମ୍ଭୀର୍ଯ୍ୟ ଓ କଠୋରତା ତାଙ୍କ ଚରିତ୍ରରେ ଦେଖାଯାଉଥିଲା । ତାଙ୍କର ପାଣ୍ଡିତ୍ୟ ପାଇଁ ସେ କେବେହେଲେ

ଗର୍ବ କରୁ ନଥିଲେ । ତାଙ୍କର ସୌମ୍ୟବପୁ, ସମ୍ମୋହକ ନୟନବେଶ ସମସ୍ତଙ୍କୁ ଆକର୍ଷଣ କରୁଥିଲା । ତାଙ୍କର ଅକାତର ସାହାଯ୍ୟରେ ନାନା ଭାବରେ ସେହି ସମୟରେ ବହୁଲୋକ ଉପକୃତ ହୋଇଛନ୍ତି । ସେ ଗଣ-ତନ୍ତ୍ରର ପକ୍ଷପାତୀ ଥାଇ ବହୁବାର ସେ ରାଜସଭାରେ ସମସ୍ତଙ୍କ ଉପଦେଶ ନେଇ ଜନକଲ୍ୟାଣରେ ଲାଗି ପଡ଼ୁଥିଲେ । ପ୍ରଜାରଞ୍ଜନ ପାଇଁ କୂପ ଖନନ, କୃଷିର ଉନ୍ନତି ପାଇଁ ଜଳଧାର ନିର୍ମାଣ କରିଥିଲେ । ସେ ବହୁ ଦେବ ମନ୍ଦିର ମଧ୍ୟ ସଂସ୍କାର କରିଛନ୍ତି ।

କବିସୂର୍ଯ୍ୟ ସୌନ୍ଦର୍ଯ୍ୟର ଉପାସକ ଓ ଯୌବନର ମୁଗ୍‌ଧ ପୂଜାରୀ ଥିଲେ । ତାଙ୍କର କବି ମାନସ ଖୋଜି ବୁଲିଛି ଆଭିଜାତ୍ୟଭରା ରୂପ ପସରାକୁ । ଯେଉଁଥିରେ ବାଛୁଛନ୍ତି ବଷ୍ଟେର ହୋଇ ନବଯୌବନା, ରାଜଶିଶୁ କୁରଙ୍ଗୀଦୃଶା, ତନୁପାତଳୀ, ଚନ୍ଦ୍ରବଦନା, ଚମ୍ପକଦେହା, ଯାମଳ-ଭୂଧର ପୀନ ପୟୋଧରା, ଗଜାଳସା, ଖେଳାଲୋଲା ଖଞ୍ଜନାକ୍ଷୀ, କୃଷ୍ଣକୁଞ୍ଚିତ ଚାମରକେଶା, ଡାଳିମ୍ବ ମଞ୍ଜୁଳ ଦଶନା, ପରିଣତ ବିମ୍ବାଧରା ସୁଶ୍ରୀ ପୁଲକିତ କଠିନ ଉନ୍ନତ ଉରଜକୁ ଶତମୁଖରେ ପ୍ରଶଂସା କରି-ବାରେ ଭୁଲି ନାହାନ୍ତି । ବିପରୀତ ରତି କ୍ରିୟାରେ ନାରୀ ଅଙ୍ଗଭଙ୍ଗୀର ଚିତ୍ରଣରେ ସେ ଅମୃତଭରା ହୋଇଛନ୍ତି ।

ତାଙ୍କର ବାକ୍‌ପଟୁତା ଦ୍ୱାରା ସେ ସମସ୍ତଙ୍କୁ ପରାସ୍ତ କରୁ-ଥିଲେ । ଅନେକ [illegible] ମତରେ ସେ [illegible] ପୂଜା ଆରାଧନା କରି କାଳାତିପାତ କରୁଥିଲେ । ଶାନ୍ତ ପରିବେଶ ମଧ୍ୟରେ ସୁସ୍ଥ, ସବଳ ଅବସ୍ଥାରେ ସ୍ୱର୍ଗାରୋହଣ କରିଥିଲେ ।

●

# ଉତ୍କଳ-ଘଣ୍ଟ ଯଦୁମଣି ମହାପାତ୍ର

ଆଜିର ଓଡ଼ିଶା ଅଞ୍ଚଳରେ କଳିଙ୍ଗ, ଉଡ୍ର ଓ କୋଶଳ ରୂପେ ବିଭକ୍ତ ହୋଇଥିଲା । ୧୫୯୨ ଖ୍ରୀ:ଅ:ରେ ଆକବର ଓଡ଼ିଶା ଅଧିକାର କରିଥିଲେ । ୧୫୬୮ ଖ୍ରୀ:ଅ:ରେ କଳିଙ୍ଗ ଭୋଇବଂଶୀୟ ରାଜାମାନଙ୍କ କାଳରେ ଓଡ଼ିଶା ସ୍ୱାଧିନତା ହରାଇଥିଲା । ରାଜା ମୁକୁନ୍ଦଦେବ ଉତ୍କଳର ଶେଷ ସ୍ୱାଧୀନ ଗଜପତି ରାଜାଥିଲେ । ୧୫୬୮ ଠାରୁ ୧୫୯୨ ଖ୍ରୀ:ଅ: ପର୍ଯ୍ୟନ୍ତ ଓଡ଼ିଶାରେ ଏପରିକି ଆଫଗାନ ଓ ମୋଗଲ ଭିତରେ, ତା'ପରେ ମୋଗଲ ଓ ମରହଟ୍ଟା ଭିତରେ, ଓଡ଼ିଶାକୁ ଅଧିକାର କରିବା ପାଇଁ ସଂଘର୍ଷ ଲାଗି ରହିଥିଲା । ସେଥିପାଇଁ ଓଡ଼ିଶାକୁ ମୋଗଲମାନଙ୍କର ହିନ୍ଦୁ ବିଦ୍ୱେଷ ନୀତି ଦ୍ୱାରା ଅତ୍ୟାଚରିତ ହେବାକୁ ପଡ଼ିଥିଲା । ମରହଟ୍ଟା-ମାନେ ଏମାନଙ୍କୁ ପ୍ରତ୍ୟେକ ସ୍ଥଳରେ ପ୍ରତିରୋଧ କରୁଥିଲେ । ଏହାର ସୁଯୋଗ ନେଇ ଇଂରେଜମାନେ କୂଟନୈତିକ ଅନୁପ୍ରବେଶ କରି ନିର୍ଯ୍ୟାତନା ଚଳାଇଥିଲେ । ବ୍ରିଟିଶ୍ ସାମ୍ରାଜ୍ୟବାଦ ବିରୁଦ୍ଧରେ ସଶସ୍ତ୍ର ସଂଗ୍ରାମ ଚଳାଇ ସମ୍ବଲପୁରରେ ସୁରେନ୍ଦ୍ର ସାଏ, ଖୋର୍ଦ୍ଧାରେ ବକ୍ସି ଜଗବନ୍ଧୁ, ଗଞ୍ଜାମରେ ବନମଭଞ୍ଜ, ଶ୍ରୀକରଭଞ୍ଜ ଓ ତାଙ୍କର ସେନାପତି ଦୋହରା ବିଷୋଇ ଇଂରେଜମାନଙ୍କର ହୃତ୍‌କମ୍ପନ ସୃଷ୍ଟି କରିଥିଲେ । ଇଂରେଜମାନେ ୧୮୦୩ ଖ୍ରୀ:ଅ:ରେ ଓଡ଼ିଶା ଅଧିକାର କରି-ଥିଲେ ମଧ୍ୟ ୧୭୯୯ ଠାରୁ ୧୮୩୭ ଖ୍ରୀ:ଅ: ପର୍ଯ୍ୟନ୍ତ ଗଂଜାମକୁ ନିଜର ଶାସନ ଅଧିକାରକୁ ଆଣି ପାରି ନଥିଲେ । ଏହି ପ୍ରବଳ ପ୍ରତାପୀ ବୀର ଜାତିର ମେରୁଦଣ୍ଡ ଭାଙ୍ଗି ଦେବାପାଇଁ ଓଡ଼ିଶାକୁ ବଙ୍ଗ, ବିହାର ଓ ଆନ୍ଧ୍ର ସଙ୍ଗେ ଭାଗ ଭାଗ କରି ମିଶାଇ ଦେଇଥିଲେ । ଗଞ୍ଜାମ ଆନ୍ଧ୍ର

ପ୍ରଦେଶ ସଙ୍ଗରେ ସାମିଲ ହୋଇ ରହିଥିଲା । ୧୯୩୬ ଖ୍ରୀ:ଅ: ର ଏହା ଏକତ୍ର ହୋଇ ଓଡ଼ିଶା ପ୍ରଦେଶ ରୂପେ ଘୋଷିତ ହେଲା ।

ଗଞ୍ଜାମର ସାହିତ୍ୟ କ୍ଷେତ୍ରରେ ଅବଦାନ ଅସୀମ । ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ପାଇଁ ଏହାର ପ୍ରେରଣା, ଉଦ୍ୟମ ଅତୁଳନୀୟ । ସ୍ୱାଧୀନତା ସଂଗ୍ରାମରେ ଏହି ତ୍ୟାଗ ଇତିହାସରେ ସ୍ୱର୍ଣ୍ଣାକ୍ଷରରେ ଲିପି-ବଦ୍ଧ ହୋଇ ରହିବ ।

୧୬୭୭ ଖ୍ରୀ:ଅ:ରେ କବିସମ୍ରାଟ ଉପେନ୍ଦ୍ର ଭଞ୍ଜ, ୧୭୮୯ ଖ୍ରୀ:ଅ:ରେ କବିସୂର୍ଯ୍ୟ ବଳଦେବ ରଥ, ୧୭୮୧ ଖ୍ରୀ:ଅ:ରେ ଉତ୍କଳ-ଘଣ୍ଟ ଯଦୁମଣି ମହାପାତ୍ର, ୧୭୨୭ ଖ୍ରୀ:ଅ:ରେ ବୈଷ୍ଣବ ଭକ୍ତକବି ଗୋପାଳ-କୃଷ୍ଣ ଗଞ୍ଜାମରେ ଜନ୍ମଗ୍ରହଣ କରି ଉତ୍କଳଭାରତୀର ମୁଖ ଉଜ୍ଜ୍ୱଳ କରିଥିଲେ । ସେଥିପାଇଁ ଅତୀତରେ ଗଂଜାମ ଜିଲ୍ଲା ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଅଗ୍ରଣୀ ଥିଲା । ଏହା କେହି ଅସ୍ୱୀକାର କରି ପାରିବେ ନାହିଁ ।

ଜୀବନ ଯୁଦ୍ଧରେ ଅନ୍ତରକୁ ସରସ ସୁନ୍ଦର ଓ ମାନସିକ କ୍ଳାନ୍ତି ଅପନୋଦନ ପାଇଁ ହାସ୍ୟ ରସର ବିଶେଷ ପ୍ରୟୋଜନ ହୋଇଥାଏ । ହାସ୍ୟ ରସିକ କବି ଉତ୍କଳ-ଘଣ୍ଟ ଯଦୁମଣି ମହାପାତ୍ର ପୌଷ ଶୁକ୍ଳ ତ୍ରୟୋଦଶୀ ସୋମବାର ତା ୧୮-୧-୧୭୮୧ ରିଖରେ ଗଂଜାମଜିଲ୍ଲା ଆଠଗଡ଼ ଗ୍ରାମରେ ଗୋଟିଖିଉକା ସାହିରେ ଜନ୍ମଗ୍ରହଣ କରିଥିଲେ । କବିସୂର୍ଯ୍ୟ ବଳଦେବ ରଥ ଓ ଯଦୁମଣି ମହାପାତ୍ର ସମସାମୟିକ କବି ଥିଲେ । ଏହି ଦୁଇ ଜଣଙ୍କର ବାଲ୍ୟ ଜୀବନ ଆଠଗଡ଼ରେ ଅତିବାହିତ ହୋଇଥିଲା । ଏହାର ମନୋରମ ପ୍ରାକୃତିକ ବିଭବ ଏମାନଙ୍କୁ କବି କରିବାରେ ପ୍ରେରଣା ଦେଇଥିଲା ଓ ଉପେନ୍ଦ୍ର ଭଞ୍ଜଙ୍କର କାବ୍ୟ କବିତାର

ପ୍ରଭାବ ଉତ୍ତାଙ୍କ ଉପରେ ପଡ଼ିଥିଲା । ଆଠଗଡ଼ର ପଦ୍ମଗଡ଼ିଆ ହୃଡ଼ ଉପରେ 'ଯଦୁକୃଷ୍ଣ' ମୂର୍ତ୍ତି ପୂଜାକରି ତାଙ୍କର ଆଶିଷ ଫଳରେ ତାଙ୍କୁ ପାଇଥିବା ଯୋଗୁଁ କବିଙ୍କୁ 'ଯଦୁମଣି' ନାମରେ ପରିଚିତ କରା ଯାଇ-ଥିଲା । କବିଙ୍କର ପିତାଙ୍କ ନାମ ମୁକୁନ୍ଦ ଓ ମାତାଙ୍କ ନାମ ଶୋଭାବତୀ ଏବଂ ସାନ ମା'ଙ୍କର ନାମ ଦୁଲଣା ଥିଲା ।

ଯଦୁମଣିଙ୍କର ପୂର୍ବ ବଂଶଧରମାନେ ଚଞ୍ଚାମରେ ମନ୍ଦିର, ମୂର୍ତ୍ତି, ମଣ୍ଡନ, ମୂର୍ତ୍ତିଗଢ଼ କରି ଜୀବନ ପରିପୋଷଣ କରୁଥିଲେ । ଆଠଗଡ଼ ରାଜା ଜଗନ୍ନାଥ ହରିଚନ୍ଦନ ଜଗଦ୍ଦେବ ରଘୁମଣି ମହାପାତ୍ରଙ୍କୁ ମଥୁରାରୁ ଶାଢ଼ୀ, ପୌରିଷ ଦେଇ ରାଧାବଲ୍ଲଭ ମୂର୍ତ୍ତି ଖୋଦନ କରାଇ ଜାଗିର ଜମି ଦାନ କରିଥିଲେ । ତାଙ୍କ ପରେ ତାଙ୍କ ପୁତ୍ର ମଧୁସୂଦନ ହରିଚନ୍ଦନ ଜଗଦ୍ଦେବ ଯେତେବେଳେ ରାଜା ହେଲେ, ରଘୁମଣିଙ୍କ ଜାଗିର ଜମିର ସନନ୍ଦ ନଥିବା ଯୋଗୁଁ ରାଜା ନିଜ ଲୋକଙ୍କର କୁମନ୍ତ୍ରଣାରେ ପଡ଼ି ଉକ୍ତ ଜମିକୁ ଖାରଜ କରିଦେଲେ । ରଘୁମଣି ମର୍ମାହତ ହୋଇ ନିଜ ସ୍ତ୍ରୀ ଦୁଲଣାଙ୍କୁ ଧରି ଆଠଗଡ଼ ପରିତ୍ୟାଗ କରି ରଣପୁର ରାଜା ନରେନ୍ଦ୍ରଙ୍କର ଆଶ୍ରୟରେ ରହି ସୁନାଖଲା ଗ୍ରାମରେ ଶେଷରେ ପ୍ରାଣତ୍ୟାଗ କରିଥିଲେ । ତା ପରେ ତାଙ୍କର ଯୁବକ ପୁତ୍ର ମୁକୁନ୍ଦ ମହାପାତ୍ର ବହୁକଷ୍ଟ ସ୍ୱୀକାର କରି ବିଧବା ମାତା ଦୁଲଣାଙ୍କୁ ଧରି ମଧୁସୂଦନ ହରିଚନ୍ଦନ ଜଗଦ୍ଦେବଙ୍କ ପୁତ୍ର ବୃନ୍ଦାବନ ଜଗଦ୍ଦେବଙ୍କ ଆଶ୍ରୟରେ ଆଠଗଡ଼ରେ ନେଇଥିଲେ । ରାଜା ଦୟାଳୁ ଓ ପରୋପକାରୀ ଥିବା ଯୋଗୁଁ ମୁକୁନ୍ଦ ବେଶ୍ ଚଳି ଯାଉଥିଲେ । ସେ ରଣପୁର ଗଡ଼ର ଯୋଷୀରତ୍ନଙ୍କ କନ୍ୟା ଶୋଭାଦେଇଙ୍କୁ ବିବାହ କରିଥିଲେ । ଶୋଭାବତୀ ଯେପରି ରୂପବତୀ ସେପରି ଗୁଣବତୀ ଥିଲେ ।

ଆଠଗଡ଼ରେ ଯଦୁମଣି ୪ ବର୍ଷ ୪ ମାସ ୫ ଦିନରେ ଖଡ଼ି

ତାଙ୍କ ସ୍ତ୍ରୀଙ୍କ ନାମ ଥିଲା ମୁକ୍ତାଦେଈ । ତାଙ୍କର ରୂପସୀ କନ୍ୟାର ନାମ ଅଞ୍ଜନା । ୧୭୮୯ ଖ୍ରୀ:ଅ:ରେ ଅଞ୍ଜନା ଜନ୍ମଗ୍ରହଣ କରିଥିଲେ । କିଶୋରୀ ଅବସ୍ଥାରେ ସେ ଯଦୁମଣିଙ୍କୁ କୋଡ଼ିଏବର୍ଷ ବୟସ ସମୟରେ ୧୮୦୧ ଖ୍ରୀ:ଅ:ରେ ବିବାହ କରିଥିଲେ । ପ୍ରଲୁବ୍‌ଧା ହୋଇ ଭାବପ୍ରବଣତାରେ ସୁକୁମାରୀ ପତିସୋହାଗିନୀ ଅଞ୍ଜନା କବିଙ୍କର ପାଦ ତଳେ ଦେହ ପ୍ରାଣ ଅର୍ପଣ କରିଥିଲେ ନୀଳକଣ୍ଠ ମନ୍ଦିରର ବକୁଳବନ ଅନ୍ତରାଳରେ । ତାପରେ କବି ଅଷ୍ଟମଙ୍ଗଳାରେ ଲୁଚିବାକୁ ଯାଇ ପୁରୀ ବାହାରିଗଲେ । ଚକ୍ରତୀର୍ଥଠାରେ ସେ ହରିହରନନ୍ଦଙ୍କ ପାଖରେ ଆଶ୍ରୟ ନେଇ ଅନେକ ଦିନ କାଳାତିପାତ କରି ସଂସ୍କୃତକାବ୍ୟ, କବିତା ପଢ଼ିବା ଓ ଚର୍ଚ୍ଚା କରିବା ପାଇଁ ବିଶେଷ ସୁଯୋଗ ପାଇଥିଲେ ।

ପୁରୀରେ ରହଣି ସମୟରେ ରସିକା ରମଣି ମନୋରମା ସଙ୍ଗେ ଆତ୍ମୀୟତା ହୋଇ ତାଙ୍କ ସହିତ ପ୍ରାୟ ୬ ମାସ ବାଘମାରିଠାରେ ବିତାଇଥିଲେ । ବହୁତ ଖୋଜିବା ପରେ ସୁହୃଦୟ ଜାମାତାଙ୍କୁ ବାଘମାରି ଠାରେ ପାଇ କିଛି ଦିନ ପରେ ମୁକୁନ୍ଦ ଓ ଶୋଭଙ୍କ ଜମାଦାର ଅଞ୍ଜନାଙ୍କୁ ବହୁ ଆଡମ୍ବରରେ ସ୍ୱାମୀ ଗୃହକୁ ପଠାଇ ଥିଲେ । ତରୁଣୀ ଅଞ୍ଜନାଙ୍କ ସହ ପ୍ରେମପାଶରେ ଆବଦ୍ଧ ହୋଇ ସବୁ ଭୁଲିଯାଇ ଶୃଙ୍ଖଳିତ ଜୀବନ ଯାପନ କରିଥିଲେ ।

ଯଦୁମଣି ପିଲାଦିନେ ଓଡିଆ ଓ ସଂସ୍କୃତ ଶିକ୍ଷା କରିଥିଲେ । ତାଙ୍କ ଉପରେ ଭଞ୍ଜଙ୍କର କାବ୍ୟ କବିତାର ପ୍ରଭାବ ଓ ସଂସ୍କୃତରେ ମାଘଙ୍କର ପ୍ରଭାବ ପଡିଥିଲା । ସେ ବ୍ୟାକରଣ, ଅଳଙ୍କାର ଶାସ୍ତ୍ର, ଭେଷଜ ଶାସ୍ତ୍ର ଓ କାମ ସୂତ୍ର ଶାସ୍ତ୍ରରେ ଦକ୍ଷତା ହାସଲ କରିଥିଲେ । ଉପମା, ଅନୁପ୍ରାସ, ଯମକ, ଶ୍ଳେଷ, ଅଦ୍‌ଭୁତୋପମା, ଅନ୍ତର୍ଲାପି, ବହିର୍ଲାପି କାବ୍ୟ କବିତାର ସୌନ୍ଦର୍ଯ୍ୟ ବୃଦ୍ଧି କରିଛନ୍ତି । ତାଙ୍କର ସଙ୍ଗୀତମାନଙ୍କରେ

ତାଳ, ଲୟ, ସ୍ୱରର ସମନ୍ୱୟ ଘଟିଛି । ପ୍ରକୃତରେ ଉପେନ୍ଦ୍ର ଭଞ୍ଜଙ୍କୁ ତାଙ୍କର ପ୍ରକୃତ କବି ଗୁରୁଥିଲେ । ତାଙ୍କର କବିତା ଭିତରୁ ନୟାଗଡ ରାଜାଙ୍କ ନାମରେ ଭଣିତରେ ଛ'ଗୋଟି, ଖଣ୍ଡପଡ଼ା ରାଜାଙ୍କ ଛ'ଗୋଟି, ନିଜ ସ୍ତ୍ରୀ ନାମରେ ସାତଗୋଟି, ଅନ୍ୟପ୍ରତି ତିନିଗୋଟି, ଘଟଣା ଚକ୍ରରେ ଦୁଇଟିଗୋଟି ହୋଇଅଛି । ଓଡ଼ିଶାରେ ସେ କେବଳ ଜଣେ ହାସ୍ୟ ରସିକ କବି ଓ ଅଦ୍ୱିତୀୟ ଶିଳ୍ପୀ । ତାଙ୍କର ବ୍ୟଙ୍ଗ ରଚନା ପାଇଁ ସେ ପୁରପଲ୍ଲୀରେ ପରିଚିତ ଓ ସମାଦୃତ । ସେ ଗୋପାଳଙ୍କ ମତ୍ ଓଡ଼ିଶାର ବହୁ ଦରବାରରେ ପ୍ରତ୍ୟୁତ୍ପନ୍ନମତି ଆଶୁକବି, ହାସ୍ୟରସର ବୟସ୍ୟରୂପେ ସମ୍ମାନିତ ।

ପିଲାଦିନେ ପ୍ରଥମେ ସେ ଗ୍ଳୋଟ ଗ୍ଳୋଟ କବିତା ଲେଖୁଥିଲେ । ପରେ ନୟାଗଡ ରାଜା ବିନାୟକ ସିଂହ ମାନଧାତାଙ୍କର ପୃଷ୍ଠପୋଷକ-ତାରେ ତାଙ୍କର ଲେଖା ଚରମ ସୀମାରେ ଉପନୀତ ହୋଇ ପ୍ରଶଂସିତ ହୋଇଥିଲା । ତାଙ୍କର ରଚନା ଭିତରେ ପ୍ରଥମେ ସେ ହାସ୍ୟରସାତ୍ମକ କବିତାବଳୀ ଲେଖି ବିଶେଷ ପରିଚିତ ହେଲେ । ପରେ ସେ ପାଟ-ମହାଦେଇ କୃମୁଦିନୀଙ୍କର ପ୍ରେରଣାରେ ଉତ୍ସାହିତ ହୋଇ ରାମାୟଣର କଥାବସ୍ତୁ ନେଇ 'ରାଘବ ବିଳାସ' ୧୮୧୭ ଖ୍ରୀ:ଅ:ରେ ଲେଖି ରାଜା ବିନାୟକ ନାମରେ ଭଣିତ କରିଥିଲେ । ଏହାର ୫୨ ଛାନ୍ଦରୁ ୨୪ଟି ସଂଗୃହୀତ ହୋଇଛି । ୧୮୫୦ ଖ୍ରୀ:ଅ:ରେ ତାଙ୍କର ଦ୍ୱିତୀୟ କାବ୍ୟ 'ପ୍ରବନ୍ଧ ପୂର୍ଣ୍ଣଚନ୍ଦ୍ର' କୃଷ୍ଣ ରୁକ୍ମିଣୀଙ୍କ ବିବାହ ବୃତ୍ତାନ୍ତନେଇ ଲେଖିଥିଲେ । ଗୌଡୀୟ ଧର୍ମାକାଂକ୍ଷା ନେଇ ସେ କୃଷ୍ଣ ଚରିତ ଲେଖି କବି ହିସାବରେ ଅତି ଶ୍ରେଷ୍ଠ ଆସନ ଉତ୍କଳ ସାହିତ୍ୟରେ ଲାଭ କରି-ଛନ୍ତି । ଅତୀତରେ ବ୍ରାହ୍ମଣ ସମାଜର ପ୍ରତିପତ୍ତି ବିଶେଷ ଭାବରେ ଥିଲା । ସେ ପାଳ ବଡ଼େଇ ଜାତିରେ ଜନ୍ମ ହୋଇଥିବାରୁ ଅତି ନମ୍ର

ଭାବରେପ୍ରଥମେ ଲେଖିଛନ୍ତି—

'ଶୁଦ୍ଧ ମୂର୍ଖ ଏ ହୋଇଛୁ ବାହାର
ରୌଦ୍ରତା ବଦ୍ଧ କେହି ନ ଧରର
ବଧି ଦଧିଲୁଦ ଉଚ୍ଛିଷ୍ଟ ଜଣା
ଶିବେ ବାଜେ ଚନ୍ଦ୍ରଚୂଡ଼ ବାଜଣା ସେ
ପଦ୍ମା-ପତିଙ୍କର ପଦ ସେ
ସମ୍ଭବ ସମ୍ପଦ ପଦାର୍ଥରେ ବ୍ୟର୍ଥ ଖଣ୍ଡିବାର ଅପବାଦ ସେ' ।

ସେ ଅସଂଖ୍ୟ ଚୌପଦୀ ଲେଖି ଲୋକପ୍ରିୟ ହୋଇ ପାରିଥିଲେ ତାହା 'ଚଉପଦୀ ମାଳା' ନାମରେ ପରିଚିତ । ଏହା କେତୋଟି ଅନବଦ୍ୟ କବିତାର ସମଷ୍ଟି । ୭୮ଗୋଟି କବିତା ମଧ୍ୟରୁ ୪ଗୋଟି କବିତା ଭଜନ ଭାବରେ ଗ୍ରହଣ କରାଯାଇଛି ।

'ସେ ଯେ ଜାତିର ବନ୍ଧାଣୀ କମ୍ବା କେବଳ ଜଣେ ହାସ୍ୟରସର କବି ନଥିଲେ, କିନ୍ତୁ ସେ ଜଣେ ସାତ-କାବ୍ୟର ଶ୍ରେଷ୍ଠ ବନ୍ଧାଣୀ ଥିଲେ' ।

ଯଦୁମଣିଙ୍କର ପାରିବାରିକ ଜୀବନ ଦୁଃଖ ଦୈନ୍ୟରେ ଜର୍ଜ୍ଜରିତ । କିନ୍ତୁ ଏହା ତାଙ୍କ କବି ପ୍ରତିଭାକୁ ମ୍ଳାନ କରି ପାରି ନଥିଲା । ସେ ୫ବର୍ଷ ସମୟରେ ୧୭୮୭ ଖ୍ରୀ: ଅ:ରେ ସ୍ନେହମୟୀ 'ଦୁଲ୍ଲଣୀ' ସାନ୍ତମାଙ୍କୁ ହରାଇ ବହୁତ ବିକଳ ହେଉଥିଲେ । ୧୦ ବର୍ଷ ସମୟରେ ଅର୍ଥାଭାବ ଯୋଗୁଁ ଆଠଗଡ଼ରୁ ନୟାଗଡ଼ ବାହାରି ଯାଇଥିଲେ । ପରବର୍ତ୍ତୀ ଜୀବନରେ ଖଞ୍ଜନାଙ୍କୁ ବିବାହ କରି କିଛୁଦିନ ସୁଖରେ କଟାଇଥିଲେ । କେତୋଟି ମଧୁମୟ ଦିବସ ସୁଖ ଶାନ୍ତିରେ କଟିବାପରେ ୧୮୦୩ଖ୍ରୀ:ଅ:ରେ

ଖଞ୍ଜନାଙ୍କ କୋଳରେ ପୁନ 'କପିଧ୍ୱଜ' ଶୋଭା ପାଇଲା । ମାତ୍ର ୫ବର୍ଷ ପରେ ତାଙ୍କୁ ସେ ଶୋକ ସାଗରରେ ଅକାଳରେ ଭସାଇ ଦେଇ ଗଲେ । ଏହା କବିଙ୍କର ମନ ଗଢ଼ନ ଉପରେ ଗଭୀରରେଖା ଟାଣି ଦେଇଥିଲା । ଆଗରୁ ୧୮୦୩ ଖ୍ରୀ:ଅ.ରେ ମା' ଶୋଭା ଇହଧାମ ତ୍ୟାଗ କରିଥିଲେ । ଏହାପରେ ତାଙ୍କର ବାପା ମୁକୁନ୍ଦ ୧୮୦୮ ଖ୍ରୀ:ଅରେ ପ୍ରାଣ-ତ୍ୟାଗ କରିଥିଲେ । ୧୮୧୪ ଖ୍ରୀ:ଅ:ରେ ତାଙ୍କର ଗୋଟିଏ ଝିଅ ଜନ୍ମଗ୍ରହଣ କରିଥିଲା । ତା'ର ନାମ ରମା । ୧୮୩୨ ଖ୍ରୀ:ଅ:ରେ ଖଣ୍ଡ-ପଡ଼ା ନିବାସୀ ପିତୃମାତୃହୀନ ନରସିଂହ ଗୁଣ୍ଡୀନ୍ଦ୍ରଙ୍କୁ ଘର ଜ୍ୱାଇଁକରି ଆଣିଥିଲେ । କବିଙ୍କର 'ତାଳଧ୍ୱଜ' ନାମରେ ୧୮୩୨ ଖ୍ରୀ:ଅ:ରେ ଗୋଟିଏ ନାତି ହୋଇଥିଲା । ସେ ତାଙ୍କୁ ପୁତ୍ର କରିଥିଲେ । କମଳା ତାଙ୍କର ନାତୁଣୀବୋହୂ ହୋଇ ୧୮୫୨ ଖ୍ରୀ:ଅ:ରେ ଆସିଥିଲେ । ୧୮୦୯ ଖ୍ରୀ:ଅ:ରେ କବି ରୁଗ୍ଣ ହୋଇ ପଡ଼ିଲେ । ଏହାପରି ଦୁରବସ୍ଥା ସମୟରେ ଶ୍ୱଶୁର, ବାଘମାରି ସଙ୍ଗାତଭାଉଜ ମନୋରମା, ସଙ୍ଗାତ ଘନବନ୍ଧୁ ପ୍ରଧାନଙ୍କ ସ୍ତ୍ରୀ ବାଣୀ ବହୁତ ଅର୍ଥ ସାହାଯ୍ୟ କରି ଉଭୟଙ୍କର ବିପତ୍ତିରୁ ଉଦ୍ଧାର କରିଥିଲେ ।

କବି ପତ୍ନୀ ଖଞ୍ଜନା ଅନନ୍ୟ ସୁନ୍ଦରୀ ଓ ଗୁଣବତୀ ଥିଲେ । ତାଙ୍କର କୋମଳ ବ୍ୟବହାରରେ ସେ ସମସ୍ତଙ୍କୁ ସମ୍ମୋହିତ କରି ପାରୁ-ଥିଲେ । ସେ ମଧ୍ୟ ସଙ୍ଗୀତ ନୃତ୍ୟକଳାରେ କୁଶଳୀ ଥିଲେ । ତାଙ୍କର ଅର୍ମାୟୁ ପରେ ପରବର୍ତ୍ତୀ ଜୀବନରେ କବିଙ୍କୁ ଶୃଙ୍ଖଳିତ କରି କବି-ତ୍ୱର ବିକାଶରେ ପ୍ରେରଣା ଯୋଗାଇଥିଲେ । ଖଞ୍ଜନାଙ୍କ ସେବା ଓ ତ୍ୟାଗ ଫଳରେ ଘରୋଇ ଜୀବନ ଶାନ୍ତିରେ ଚାଲୁଥିଲା । ତାଙ୍କ ବାପା ଅତି ଖାନଦାନୀ ପରିବାର ଯୋଗୁଁ ସେ ବହୁବାର ସେଠାରୁ ବହୁତ ଥର ଅର୍ଥ ସାହାଯ୍ୟ ପାଇବା ଯୋଗୁଁ ଅର୍ଥାଭାବର ଦାରୁଣ କଷ୍ଟ ବାଧ୍ୟ

ନଥିଲା । ଘରର ପରିଚାଳନାରେ ସେ ଶ୍ୱଶୁର ଓ ପତିଙ୍କ ଭିତରେ ଭାରସାମ୍ୟ ରକ୍ଷା କରୁଥିଲେ । ଖଞ୍ଜନାଙ୍କର ବିଶ୍ୱମୋହିନୀ ରୂପ ଓ ଅମାୟିକ ବ୍ୟବହାରରେ ପାଟରାଣୀ କୁମୁଦିନୀ ଅତ୍ୟନ୍ତ ପ୍ରୀତ ହୋଇ ତାଙ୍କର ଗଳାର ହାର ପ୍ରଦାନ କରିଥିଲେ ।

ପୁତ୍ର କପିଧ୍ୱଜର ମରଣରେ ଖଞ୍ଜନା ବିଶେଷ ମର୍ମାହତ ହୋଇ କବିଙ୍କ ସହିତ ବଡ଼ ଠାକୁରଙ୍କ ଦର୍ଶନ କରିବା ପାଇଁ ପୁରୀ ଯାଇଥିଲେ । ତାଙ୍କର ମତ ଥିଲା 'ଗୃହ ଅଙ୍ଗନ ଗୋଟିଏ ସାଧନା । ସେଠାରେ ସଂଯମ, ସେବା ଓ ସହିଷ୍ଣୁତା ସାଧନା କରିବାକୁ ହେବ ।

କବିସୂର୍ଯ୍ୟ ଓ ଯଦୁମଣି ଦୁହେଁ ସମସାମୟିକ କବି । ଉଭୟେ ଅଠଗଡ଼ରେ ଜନ୍ମ ଗ୍ରହଣ କରି ପିଲାଦିନେ ଲାଳିତ ପାଳିତ ହୋଇଥିଲେ । ପରବର୍ତ୍ତୀ କାଳରେ ଯଦୁମଣିଙ୍କ ସଙ୍ଗେ କବିସୂର୍ଯ୍ୟଙ୍କର ୧୮୧୫ ଖ୍ରୀ:ଅ:ରେ ପୁରୀ ଓ ନୟାଗଡ଼ଠାରେ ସୌହାର୍ଦ୍ଦ୍ୟପୂର୍ଣ୍ଣ ମିଳନ ହୋଇଥିଲା ।

୧୮୧୦ ଖ୍ରୀ:ଅ:ରେ ଖଲିକୋଟର ପଣ୍ଡିତ ବିହିବାଳ, ଚକ୍ରପାଣି ପଟ୍ଟନାୟକ ନୟାଗଡ଼ ରାଜସଭାରେ ପହଞ୍ଚିଥିଲେ । ଯଦୁମଣି ଓ ପଟ୍ଟନାୟକ ମଧ୍ୟରେ ପ୍ରତିଯୋଗିତା ହୋଇଥିଲା । ପ୍ରୌଢ଼ ଚକ୍ରପାଣି ପ୍ରଶ୍ନ କଲେ—

କବା ପ୍ରଶଂସିବା　　　　ପ୍ରଶଂସା ପଦକୀ
ଅଛିବୋଲି ବଳା ରୀତିରେ

ଯଦୁମଣି ଉତ୍ତର ଦେଲେ—

ମୂକ କରିଅଛି　　　　ଯେ ବାଳା ମଣିର
ଶ୍ରୀ ଚରଣେ ବଳା ରୀତିରେ

ଅନ୍ୟ ପ୍ରଶ୍ନ କଲେ ଯେ—ଏକ ପଦକୁ ବାମରୁ ଦକ୍ଷିଣ ଓ ଦକ୍ଷିଣରୁ ବାମକୁ ପଢ଼ିଲେ ସମାନ ଅର୍ଥ ହେବ ।

ଯଦୁମଣି କହିଲେ—'କଡାକୁ କାଣି ଗଣିକାକୁ ଡାକ' ।
ଚକ୍ରପାଣି ଖୁସିହୋଇ କହିଲେ, ଯଦୁମଣି ! ତୁମେ ମୋର ପ୍ରିୟତମ ଅନୁଜ । ମୁଁ ତୁମ ପାଖରେ ହାରିଲି ।

କବି ଦଶପଲ୍ଲା, ଖଣ୍ଡପଡ଼ା, ବୌଦ୍ଧ, ଖଲ୍ଲିକୋଟ, ରଣପୁର, ଆଠଗଡ଼, ମୟୂରଭଞ୍ଜ, ନରସିଂହପୁର, ତିଗିରିଆ, ବଡମ୍ବା, ଅନୁଗୁଳ ଓ ଢେଙ୍କାନାଳ ରାଜସଭାରେ ବିଶେଷଭାବେ ସମ୍ମାନିତ ହୋଇଥିଲେ ।

ଯଦୁମଣି ପିଲାଦିନରୁ ବାପାଙ୍କୁ ଚିତ୍ର, ମୂର୍ତ୍ତି ତିଆରି କରିବାରେ ସାହାଯ୍ୟ କରୁଥିଲେ । ତାଙ୍କର ଚିତ୍ରପଟ ଶ୍ରେଷ୍ଠତାର ଯୋଗୁଁ ସମସ୍ତଙ୍କ ଠାରେ ସେ ବିଶେଷ ସମ୍ମାନ ପାଉଥିଲେ । ଏପରିକି ରାଜା, ରାଣୀ ବିଶେଷ ପ୍ରୀତ ହୋଇଥିଲେ । ପିଲାଦିନରୁ ସେ ଶ୍ରେଷ୍ଠ ଶ୍ରେଷ୍ଠ କବିତା, ବ୍ୟଙ୍ଗ କବିତା ଲେଖି କବି ରୂପେ ପରିଚିତ ଥିଲେ । ପଣ୍ଡିତ ସଭାରେ ଚକ୍ରପାଣି ପଟ୍ଟନାୟକ ଯଦୁମଣିଙ୍କ ସହିତ ପରିଚିତ ହେବା ଯୋଗୁଁ ରାଜା ବିନାୟକ ମାନଧାତା ତାଙ୍କର ଧୀଶକ୍ତିର ପରିଚୟ ପାଇ ତାଙ୍କୁ ରାଜ ସଭାରେ ଯଥାଯୋଗ୍ୟ ଆସନ ଦାନ କଲେ । ତାଙ୍କର ଭରଣପୋଷଣ ପାଇଁ ଦୁଇବାଟି ଜମି ଜାଗିର ସ୍ୱରୂପରେ ଦାନ କଲେ । ରାଣୀ କୁମୁଦମ୍ବା ତାଙ୍କର ଚିତ୍ରବିଦ୍ୟାରେ ଅତି ଆନନ୍ଦ ଲାଭ କରି ତାଙ୍କୁ 'ରାଘବ ବିଳାସ' ଲେଖିବା ପାଇଁ ପ୍ରେରଣା ଦେଇଥିଲେ । ରାଜା ବିନାୟକ ମାନଧାତା-ଙ୍କର ଉଦାରତା ଓ ଗୁଣର ସମାଦର ଯୋଗୁଁ କବିଙ୍କର କବିତ୍ୱ ଶକ୍ତି ଚରମ ସୀମାରେ ଉପନୀତ ହୋଇଥିଲା । କବିଙ୍କର ସୁନାମ ଚତୁର୍ଦ୍ଦିଗେ ବ୍ୟାପିବାରେ ଲାଗିଲା । ଫଳରେ ତାଙ୍କ ବିରୁଦ୍ଧରେ ବହୁତ ଷଡ଼ଯନ୍ତ୍ର

ସୃଷ୍ଟିପାତ ହୋଇଥିଲା । ସେ ସାହସର ସହିତ ସମ୍ମୁଖୀନ ହୋଇ ବିଜୟଲାଭ କରିଥିଲେ । ପରବର୍ତ୍ତୀରେ 'ପ୍ରବନ୍ଧ ପୂର୍ଣ୍ଣଚନ୍ଦ୍ର' ରଚନା କରି ଓଡ଼ିଶାର ଜଣେ ବରିଷ୍ଠ କବି ରୂପେ ଗଣ୍ୟ ହେଲେ ।

ଯଦୁମଣି ଯଦ୍ୟପି ଦାରିଦ୍ର୍ୟର କଷାଘାତରେ ସର୍ବଦା ଜର୍ଜରିତ, ତଥାପି ସେ ସମ୍ମାନସ୍ତ ଓ ନ୍ୟାୟ ପରାୟଣ ଥିଲେ । କାହାରି ନିକଟରେ ସମ୍ମାନ ଓ ମହତ୍ତ୍ୱ ବିକ୍ରୟ କରି ନିଜର ମସ୍ତକ କଦାପି ଅବନତ କରି ନଥିଲେ । ଏବେ ମଧ୍ୟ ସମଗ୍ର ଓଡ଼ିଶାରେ ତାଙ୍କୁ କେବଳ ଅଦ୍ୱିତୀୟ ହାସ୍ୟରସିକ କବି ଭାବରେ ଗ୍ରହଣ କରାଯାଉଛି । ତାଙ୍କର ପ୍ରତ୍ୟୁତ୍ପନ୍ନ ମତି ଯୋଗୁଁ କବିତାଗୁଡ଼ିକ ଓଡ଼ିଆ ସାହିତ୍ୟର ଶୋଭାର ଭଣ୍ଡାର ହୋଇଛି । ସେ ମଧ୍ୟ ରସିକାଗ୍ରଗଣ୍ୟ ଥିଲେ । କବିଙ୍କର ସୁନ୍ଦର, ସୁଠାମ ଶରୀର, ସୁଲଳିତ କଣ୍ଠ ଓ ଅଟଳ ବାକ୍ଚାତୁରୀ ତାଙ୍କର ପ୍ରତିଭାମୟ ଜୀବନକୁ ଗୌରବରେ ମଣ୍ଡିତ କରିଥିଲା । କାନରେ କୁଣ୍ଡଳ, ମୁଣ୍ଡରେ ସଭାବାଳ, ବୁଦ୍ଧିଦୀପ୍ତ କପାଳ, ଗୌରବର୍ଣ୍ଣ ଅଙ୍ଗଶ୍ରୀ ଓ ସମ୍ମୋହକ ନୟନ ବେନି ତାଙ୍କର ବ୍ୟକ୍ତିତ୍ୱକୁ ଜନସମାଜରେ ବିଶେଷ ଆକୃଷ୍ଟ କରାଇ ପାରିଥିଲା । ସେ ଯେପରି ହାସ୍ୟରସିକ ସେହିପରି ସାହସୀ ଓ କଟୁସତ୍ୟ କହିବାରେ କେବେ ଭୁଲି ନାହାଁନ୍ତି । ତାଙ୍କର ସୁଲଳିତ କଣ୍ଠରେ ଭଜନସଙ୍ଗୀତ ଗାଇ ସେ ସମସ୍ତଙ୍କୁ ମୁଗ୍ଧ କରୁଥିଲେ ଓ ସମସ୍ତେ ତାଙ୍କୁ ଶୁଣିବାକୁ ରହୁଥିଲେ ।

ପୁତ୍ର ଶୋକରେ ଅଭିଭୂତ ହୋଇ ସେ ଧର୍ମ ଦିଗକୁ ମନ ବଳାଇ ଗୁରୁଗୋସାଇଁ ନିରଞ୍ଜନ ମହାପାତ୍ରଙ୍କଠାରୁ ଗୁରୁମନ୍ତ୍ର ଗ୍ରହଣ କରି ଗୌଡ଼ୀୟଧର୍ମ ଦୀକ୍ଷା ନେଇଥିଲେ । ସେ ଥିଲେ ଜଣେ ଅସାଧାରଣ ଚିତ୍ରକର ଓ ସୁନ୍ଦର କାଠମୂର୍ତ୍ତି ନିର୍ମାତା ।

ଇଂରେଜମାନଙ୍କର ଅନୁପ୍ରବେଶ ବିରୁଦ୍ଧରେ ଓଡିଶାର ପାଇକ ବିଦ୍ରୋହ ୧୮୧୭ ଖ୍ରୀ:ଅ:ରେ ହୋଇଥିଲା । ତା'ର ସେନାପତି ଥିଲେ ବକ୍ସି ଜଗବନ୍ଧୁ ବିଦ୍ୟାଧର । ବକ୍ସି ବିଦ୍ରୋହର ଧାର ଏ ବିପ୍ଳବ ଚଳାଇ ଥିଲେ । ଯଦୁମଣି ତାଙ୍କୁ ସାମୟିକ ସାହାଯ୍ୟ କରିଥିଲେ । ୧୮୫୧ରେ ନୟାଗଡରେ ମେଳି ହୋଇଥିଲା । କବିର ବୁଦ୍ଧି ବଳରେ ତାହାକୁ ଦମନ କରିବାରେ ଅଙ୍ଗୁଳି ନିର୍ଦ୍ଦେଶ ଦେଇ ଥିଲେ । ସେ ଦୀନ ଦୁଃଖୀମାନଙ୍କୁ ଅକାତରେ ସାହାଯ୍ୟ କରୁଥିଲେ ଓ ତାଙ୍କର ବନ୍ଧୁ ଥିଲେ । ରାଜା ବିନାୟକ ଓ ରାଣୀ କୁମୁଦମାଙ୍କ ବିୟୋଗ ପରେ ତାଙ୍କର ଦୁର୍ଭାଗ୍ୟର ସମୟ ଉପସ୍ଥିତ ହୋଇଥିଲା ।

ଯଦୁମଣି ଜୀବନର ଶେଷ ସମୟ ପର୍ଯ୍ୟନ୍ତ ସବଳ ଓ କର୍ମପ୍ରବଣ ଥିଲେ । ତାଙ୍କର ଅଙ୍ଗ ସୌଷ୍ଠବ, ମାଧୁର୍ଯ୍ୟ ଅକ୍ଷୁର୍ଣ୍ଣ ଥିଲା ।

୧୮୬୪ ଖ୍ରୀ:ଅ:ରେ ଖଞ୍ଜଣା ୭୫ ବର୍ଷ ବୟସରେ ନାତି ବାଳକୃଷ୍ଣକୁ କୋଳରେ ଧରି, ବୋହୂଠାରୁ ପୁରାଣ ଶୁଣିବା ସମୟରେ ଇହଲୀଳା ସମ୍ବରଣ କରିଥିଲେ । କବି ତାଙ୍କ ବିଚ୍ଛେଦରେ ପାଗଳ ପରି କାନ୍ଦି ଉଠିଥିଲେ ।

ତା ୨-୭-୧୮୬୬ ଖ୍ରୀ:ଅ:ରେ ରଥରେ ଶ୍ରୀଜଗନ୍ନାଥ ବିଜେ କରିଥିବା ସମୟରେ କବି ସ୍ୱର୍ଗାରୋହଣ କରିଥିଲେ ।

୧୫୪୦ ଖ୍ରୀ:ଅ:ରେ ପ୍ରତାପରୁଦ୍ର ଦେବଙ୍କର ମୃତ୍ୟୁ ହୁଏ । ତାଙ୍କର ଥାଟ ସେନାପତି ବେଳୁଝଷଡିବର ସିଂହଙ୍କ ପୁତ୍ର ଚନ୍ଦୁନାଥ ଗୁମୁସର ରାଜାଙ୍କଠାରୁ ଆଠଗଡ଼ ପାଇ ରାଜତ୍ୱ କରୁଥିଲେ । ତାଙ୍କର ଅଷ୍ଟମ ପୁରୁଷ ହେଉଛନ୍ତି ରଘୁନାଥ ଜଗଦ୍ଦେବ । ଆଠଗଡ଼ ହିଁ ଉତ୍କଳୀୟ ସଙ୍ଗୀତ ଚର୍ଚ୍ଚାର ପ୍ରାଥମିକ ଲୀଳା କ୍ଷେତ୍ର । ସଂଗୀତ

ଆଲୋଚନାରେ ଆଠଗଡ଼ ରାଜଧାନୀ ବିଶେଷ ସମ୍ମାନର ଅଧିକାରୀ ଥିଲା । ଏହି ରାଜଦରବାର କବିସୂର୍ଯ୍ୟ, ଯଦୁମଣି, ରଘୁନାଥ ରାଜଗୁରୁ, ବସୁ-ପ୍ରହରାଜ ଓ ଜିପୁରୀ ହୋତା ଚାନ୍ଦିକଙ୍କ ଦ୍ୱାରା ପରିଶୋଭିତ ହୋଇ ଥିଲା ।

ଖୋର୍ଦ୍ଧା ରାଜବଂଶ ସଂଗେ ଆଠଗଡ଼ ରାଜବଂଶର ବନ୍ଧୁତା ଓ ଆତ୍ମୀୟତା ପୁରୁଷାନୁକ୍ରମେ ଥିଲା । ଖୋର୍ଦ୍ଧା ରାଜା ବାଣପୁର ରାଜାଙ୍କୁ ରାଜ୍ୟରୁ ବିତାଡ଼ିତ କରିବା ସମୟରେ ଆଠଗଡ଼ ରାଜା ରଘୁନାଥ ହରି-ଚନ୍ଦନ ତାଙ୍କର ସେନାପତି ଥିଲେ । ମୁକୁନ୍ଦଦେବ (୧୭୯୮—୧୮୧୭ ଖ୍ରୀ:ଅ:) ଆଠଗଡ ରାଜା ବୃନ୍ଦାବନ ହରିଚନ୍ଦନଙ୍କୁ ଶାଢୀ ବାନ୍ଧି ଦର୍ଶନ ଶୋଧ ବ୍ୟବସ୍ଥା କରିଥିଲେ ।

ଆଠଗଡ଼ର ଅନ୍ୟନାମ ହେଉଛି 'ଶରଣ ଧରଣୀ' । ବୀର କିଶୋରଦେବ ତାଙ୍କର କୁମାର ଅବସ୍ଥାରେ (୧୭୩୬—୧୭୮୦ ଖ୍ରୀ:ଅ:) ତାଙ୍କର ଅଧିକାଂଶ ସମୟ ଆଠଗଡ଼ରେ କଟାଇଥିଲେ । ତକୀଖାଁର ଆକ୍ରମଣ ଭୟରେ ୧୭୩୨ ଖ୍ରୀ:ଅ:ରେ ବଡ଼ଠାକୁରଙ୍କୁ ରାଜା ଗୋବିନ୍ଦ ହରିଚନ୍ଦନ ଆଶ୍ରୟ ଦେଇଥିଲେ । ୧୮୦୩ ଖ୍ରୀ:ଅ:ରେ ରାଜା ମୁକୁନ୍ଦ-ଦେବ ଇଂରେଜମାନଙ୍କ ଭୟରେ ଆଠଗଡ଼ରେ ଆଶ୍ରୟ ନେଇଥିଲେ । ଉପେନ୍ଦ୍ର ଭଞ୍ଜଙ୍କ ପିତା ନୀଳକଣ୍ଠଭଞ୍ଜ ରାଜ୍ୟରୁ ବିତାଡ଼ିତ ପରେ ଏଠାରେ ଆଶ୍ରୟ ନେଇଥିଲେ । ଶ୍ରୀକରଭଞ୍ଜ ମଧ୍ୟ ରାଜ୍ୟରେ ଅଶାନ୍ତି ରହିଥିବା ଯୋଗୁଁ ଏଠାରେ ରହିଥିଲେ । ୧୮୧୯—୧୮୨୪ ଖ୍ରୀ:ଅ: ମଧ୍ୟରେ ବିପ୍ଳବୀ ପାଇକ ନେତା ବକ୍ସି ଜଗବନ୍ଧୁ ଏଠାରେ ଆତ୍ମଗୋପନ କରିଥିଲେ । କାରଣ ଶେରଗଡ଼ ରାଜା ବକ୍ସିଙ୍କର ଶ୍ୱଶୁର ଥିଲେ । ବକଆ ରାଜସ୍ୱ ଯୋଗୁଁ ୧୮୫୪ ଖ୍ରୀ:ଅ:ରେ ଆଠଗଡକୁ ନିଲାମରେ ଝଲକୋଟ ରାଜା ନାରାୟଣ ମର୍ଦ୍ଦରାଜ କ୍ରୟ କରିଥିଲେ ।

# ଉତ୍କଳଲ ଗୋପାଳକୃଷ୍ଣ

ଭାରତରେ ମୋଗଲ ସାମ୍ରାଜ୍ୟର ରବି ଅସ୍ତମିତ ହେବା ପରେ ବଣିଆପାଣି ବ୍ରିଟିଶ୍ ସାମ୍ରାଜ୍ୟବାଦ ବାଣିଜ୍ୟ କରିବା ପାଇଁ ଆସି ଆମଦେଶରେ କୂଟନୈତିକ ଅନୁପ୍ରବେଶ କରି ଅନ୍ୟାୟ ଅତ୍ୟାଚାର କରିବାରେ ପ୍ରାଣପଣେ ଲଗି ପଡ଼ିଥିଲେ ।

ଓଡ଼ିଶାରେ ୧୫୬୮ ଖ୍ରୀ:ଅ:ରେ ମୁକୁନ୍ଦଦେବ ବଙ୍ଗ ନବାବଙ୍କ ଦ୍ୱାରା ପରାସ୍ତ ହେଲେ । ଓଡ଼ିଶା ଆଫଗାନମାନଙ୍କର ଶାସନାଧୀନ ହୋଇଥିଲା । ଆଫଗାନ ଓ ମୋଗଲମାନଙ୍କ ଭିତରେ ୧୫୬୮ ଠାରୁ ୧୫୯୨ ଖ୍ରୀ:ଅ: ପର୍ଯ୍ୟନ୍ତ ସଙ୍ଘର୍ଷ ଲଗି ରହିଥିଲା । ୧୫୭୬ ଖ୍ରୀ:ଅ:ରେ ମୋଗଲ ଶାସକମାନେ ଓଡ଼ିଶାକୁ ଅଧିକାର କଲେ । ୧୫୯୨ ଠାରୁ ୧୭୫୧ ଖ୍ରୀ:ଅ: ପର୍ଯ୍ୟନ୍ତ ଓଡ଼ିଶାରେ ମୋଗଲ ରାଜତ୍ୱ ଥିଲା । ଓଡ଼ିଶାର ଦିବ୍ୟସିଂହଦେବ ୧୬୮୮—୧୭୧୫ ଖ୍ରୀ:ଅ: ପର୍ଯ୍ୟନ୍ତ ରାଜାଥିଲେ । ୧୭୭୦ ଠାରୁ ୧୭୭୪ ପର୍ଯ୍ୟନ୍ତ ନିରବଚ୍ଛିନ୍ନଭାବେ ମୋଗଲ ଓ ମରହଟ୍ଟାମାନଙ୍କ ଭିତରେ ସଂଘର୍ଷ ଲଗି ରହିଥିଲା । ୧୭୫୭ ଖ୍ରୀ:ଅ:ରେ ମରହଟ୍ଟାମାନଙ୍କର ଓଡ଼ିଶାରେ ଶାସନ ଆରମ୍ଭ ହେଲା । ମରହଟ୍ଟା ଓ ଆଲିବର୍ଦ୍ଦିଖାଁଙ୍କ ମଧ୍ୟରେ ବାରମ୍ବାର ସଂଘର୍ଷ ଲଗି ରହିଥିଲା । ମରହଟ୍ଟାମାନେ ବଙ୍ଗଳାରୁ ବିତାଡ଼ିତ ହୋଇ ଓଡ଼ିଶାକୁ ଆସିଲେ । ୧୭୫୧ ଖ୍ରୀ:ଅ:ରେ ମରହଟ୍ଟା ସେନାପତି ରଘୁଜୀଭୋନ୍‌ସଲ୍ ଚୋଟିଏ ସନ୍ଧିକଲେ ଯେ, ବଙ୍ଗ, ବିହାର, ଓଡ଼ିଶାର ଚୌଥ ଆଲିବର୍ଦ୍ଦିଖାଁ

କାପ୍ତ ମିତଭାବେ ଭୋନସେଲଙ୍କୁ ଦେବେ । ସୁବର୍ଣ୍ଣରେଖା ନଦୀ ପର୍ଯ୍ୟନ୍ତ କଟକ ପ୍ରଦେଶ ମରହଟ୍ଟାମାନଙ୍କୁ ଛାଡ଼ି ଦିଆଗଲା ।

୧୭୫୧ ଖ୍ରୀ:ଅ:ରେ ଉତ୍ତର ଓଡ଼ିଶାରେ ମରହଟ୍ଟା ରାଜତ୍ୱ ପ୍ରଚଳିତ ହୋଇଥିଲେ ମଧ୍ୟ ଦକ୍ଷିଣ ଓଡ଼ିଶାରେ ମୁସଲମାନମାନଙ୍କର ପ୍ରଭାବ ଲୋପ ପାଇ ନଥିଲା । ୧୮୦୩ ଖ୍ରୀ:ଅ: ପର୍ଯ୍ୟନ୍ତ ଉତ୍ତର ଓଡ଼ିଶାର ଉପକୂଳବର୍ତ୍ତୀ ଅଞ୍ଚଳରେ ମରହଟ୍ଟା ରାଜତ୍ୱ ଥିଲା । ପଶ୍ଚିମ ଓଡ଼ିଶାର ଆଜି ଅଧିକ ପ୍ରାୟ ୧୫ ବର୍ଷ ପର୍ଯ୍ୟନ୍ତ ଥିଲେ ମଧ୍ୟ ଦକ୍ଷିଣ ଓଡ଼ିଶାରେ ମୁସଲମାନମାନଙ୍କର ପ୍ରଭାବ ସମ୍ପୂର୍ଣ୍ଣଭାବେ ଲୋପ ପାଇ ନଥିଲା ।

୧୭୬୫ ଖ୍ରୀ:ଅ: ଅଗଷ୍ଟ ୧୨ ତାରିଖ ଆହ୍ଲାବାଦ ଚୁକ୍ତି ଅନୁଯାୟୀ ଇଂରେଜମାନଙ୍କୁ ମୋଗଲ ସମ୍ରାଟ ଶାହାଆଲମ ବଙ୍ଗ, ବିହାର ଓ ଓଡ଼ିଶାରେ ଦିଓ୍ୱାନୀ କ୍ଷମତା ହସ୍ତାନ୍ତର କଲେ । ୧୭୬୬ ଖ୍ରୀ:ଅ:ରେ ଗଞ୍ଜାମ, କୋରାପୁଟ ସମେତ ଶ୍ରୀକାକୁଲମ୍, ରାଜମହେନ୍ଦ୍ରୀ, ଏଲୋର ଓ ଗୁଣ୍ଟୁର ଆଦି ଉତ୍ତର ସରକାରଗୁଡ଼ିକ ଇଂରେଜମାନେ ଦାନ ସ୍ୱରୂପରେ ନିଜାମଙ୍କଠାରୁ ସାମରିକ ସାହାଯ୍ୟ ବଦଳରେ ପାଇଲେ ।

ଉତ୍ତର ଓଡ଼ିଶାରେ ମରହଟ୍ଟାମାନଙ୍କର ଶାସନ ନାମକୁ-ମାତ୍ର ଥିଲା । ମରହଟ୍ଟାମାନଙ୍କ ମଧ୍ୟରେ ଅନ୍ତର୍ବିବାଦ, ଦୁର୍ନୀତି ଓ ସର୍ବସାଧାରଣଙ୍କୁ ଶୋଷଣ ପ୍ରବୃତ୍ତି ମରହଟ୍ଟାଶାସନକୁ ଅତି ଦୁର୍ବଳ କରି ଦେଇଥିଲା । ଓଡ଼ିଶାରେ ସେତେବେଳର ମରହଟ୍ଟା ଶାସକମାନେ ଅତି ଦୁର୍ବଳ ଥିବା କଥା ଜଣା ପଡ଼ୁଥିଲା । ମରହଟ୍ଟାମାନେ ପ୍ରାୟ ୬୦ ବର୍ଷ କାଳ ଓଡ଼ିଶାରେ କ୍ଷମତା ବିସ୍ତାର କରିଥିଲେ ମଧ୍ୟ ଏହାକୁ କେତେକ

ସ୍ୱୀକାର କରୁ ନଥିଲେ । ମରହଟ୍ଟାମାନଙ୍କର ଇଂରେଜ ଆକ୍ରମଣକୁ ପ୍ରତିରୋଧ କରିବା ପାଇଁ ଯଥେଷ୍ଟ ଶକ୍ତି ନଥିଲା । କାରଣ ଇଂରେଜ ମାନଙ୍କ ସାମରିକ ଶକ୍ତି ଯଥେଷ୍ଟ ବୃଦ୍ଧି ପାଇଥିଲା ।

ଇଂରେଜମାନେ ସାମରିକ ଶକ୍ତି ଦ୍ୱାରା ମରହଟ୍ଟାମାନଙ୍କ ବିରୁଦ୍ଧରେ ଦକ୍ଷିଣ ଗଞ୍ଜାମ, ଉତ୍ତର ବାଲେଶ୍ୱର, ଓ ଜଳେଶ୍ୱର ଆଡ଼୍ ସ୍ଥଳ ପଥରେ ଆକ୍ରମଣ କଲେ । ଶେଷରେ ମରହଟ୍ଟାମାନେ ୧୮୦୩ ଖ୍ରୀ:ଅ:ରେ ବାରବାଟି ଦୁର୍ଗ ଭିତରେ ଶେଷ ପ୍ରତିରୋଧ କରି ପରାସ୍ତ ହେଲେ । ରଘୁଜୀଭୋସଲେ ଦେଓଗାଁ ଚୁକ୍ତି ଅନୁଯାୟୀ ବନ୍ଦର ଓ ବାଲେଶ୍ୱର ସହିତ କଟକ ପ୍ରଦେଶକୁ ଇଂରେଜମାନଙ୍କୁ ହସ୍ତାନ୍ତର କଲେ । ଏହା ଫଳରେ ୧୬ଗୋଟି କରଦ ରାଜ୍ୟ, ଗଡଜାତ ଅଞ୍ଚଳ ଇଂରେଜମାନଙ୍କ ଶାସନାଧୀନ ହେଲା । କଲିକତା ଠାରୁ ଇଂରେଜ-ମାନେ ବାଲେଶ୍ୱର ପର୍ଯ୍ୟନ୍ତ ଅଧିକାର କରିଥିଲେ ।

୧୭୬୫ ଖ୍ରୀ:ଅ:ରେ ଇଂରେଜମାନେ ସୋରଡ଼ା ରାଜ୍ୟକୁ ସାହାଯ୍ୟ କରିବା ପାଇଁ ଗଞ୍ଜାମରେ ପ୍ରଥମ ସାମରିକ ହସ୍ତକ୍ଷେପ କଲେ । ୧୭୬୯ ଖ୍ରୀ:ଅ:ରେ ଋଷିକା ଠାରୁ ଆଠଗଡ଼ ରାଜାଙ୍କୁ ପରାସ୍ତ କରିବା ପାଇଁ ସେନା ପ୍ରେରଣ କରିଥିଲେ । ୧୭୭୮ରେ ବଡ଼ଖେମୁଣ୍ଡି ଓ ଇଂରେଜ ମାନଙ୍କ ଭିତରେ ସଂଘର୍ଷ ହୋଇଥିଲା । ୧୭୯୯ରେ ଇଂରେଜମାନେ ଗଞ୍ଜାମର ଜମିଦାରିଗୁଡ଼ିକ ହସ୍ତଗତ କରି ରାଜସ୍ୱ ଆଦାୟ କରିବାପାଇଁ ଚେଷ୍ଟା କଲେ । ୧୮୦୧ରେ ପାରଳାଖେମୁଣ୍ଡିର ପାଇକ ନେତା ଜଗନ୍ନାଥଦେଓ ଓ ଘୁମୁସରର ରାଜା ଶ୍ରୀକରଭଂଜ, ବିଜୟନଗରର ରାଜା ମଣିଦେଓ ଏବଂ ଶେରଗଡ଼ ରାଜା ଅଚ୍ୟୁତ ସିଂ ଏକତ୍ର ହୋଇ ଇଂରେଜମାନଙ୍କ ବିରୁଦ୍ଧରେ ଶେରଗଡ଼ଠାରେ ଯୁଦ୍ଧ କଲେ । ରକ୍ତାକ୍ତ

ଯୁଦ୍ଧରେ ବହୁତ ଇଂରେଜ ସୈନ୍ୟ ପ୍ରାଣ ହରାଇଲେ । ଗୁଳମାଣ୍ଡରେ ଶେରଗଡ଼ ରାଜା ଅଚ୍ୟୁତ ସିଂ ପ୍ରାଣ ହରାଇଲେ । ଦେଶ ଦ୍ରୋହ ବିଦ୍ରୋହୀମାନେ ପଳାୟନ କରିଥିଲେ ଏବଂ ଭବିଷ୍ୟତ ଆକ୍ରମଣ ପାଇଁ ପ୍ରସ୍ତୁତ ହେଲେ ।

୧୮୦୩ ଖ୍ରୀ: ଅ:ରେ ଇଂରେଜମାନେ ଗଞ୍ଜାମ ବାଟେ କର୍ଣ୍ଣେଲ ହାରକୋର୍ଟଙ୍କ ଅଧିନାୟକରେ ଓଡ଼ିଶା ଭିତରେ ପଶି ପ୍ରଥମେ ପୁରୀଜିଲ୍ଲା ଦଖଲ କଲେ । ତାଳକା ନିକଟବର୍ତ୍ତୀ ଅଞ୍ଚଳଗୁଡ଼ିକ ଯଥା ଅରଖକୁଦ, ମାଲୁଦ, ନରସିଂହ ପାଟଣା, ବ୍ରହ୍ମଗିରି ପ୍ରଭୃତି ପ୍ରଥମେ ଦଖଲ କରିସାରି ପୁରୀରେ ପହଞ୍ଚିଲେ ।

ପାରଳାଖେମୁଣ୍ଡି ରାଜା ଗଜପତି ଦେବ ଇଂରେଜମାନଙ୍କର ବିରୋଧିତା କରିବା ଯୋଗୁଁ ତାଙ୍କୁ ଓ ତାଙ୍କର ପୁଅ ପୁରୁଷୋତ୍ତମ ଦେବଙ୍କୁ ବନ୍ଦୀ କଲେ । ଏହା ଫଳରେ ସମସ୍ତ ପାରଳାଖେମୁଣ୍ଡିରେ ଚନ୍ଦ୍ରବରାଜା ନାରାୟଣ ଦେଓଙ୍କ ନେତୃତ୍ୱରେ ବିଦ୍ରୋହ ଆରମ୍ଭ ହେଲା । ତାହା କ୍ରମେ କ୍ରମେ ଗୁରୁଆଡ଼େ ବ୍ୟାପିବାକୁ ଲାଗିଲା । ବିଦ୍ରୋହୀମାନେ ଟିକାଲି ଓ ହାଡେଲ ଦଖଲକଲେ ଓ ଇଂରେଜ ସେନାଛାଉଣୀ ଉପରେ ଅତର୍କିତ ଆକ୍ରମଣ କରି ସେନାଧ୍ୟକ୍ଷଙ୍କୁ ବନ୍ଦୀ କଲେ ।

୧୮୦୪ ଖ୍ରୀ:ଅ:ରେ ଜୟୀ ରାଜଗୁରୁ ଇଂରେଜମାନଙ୍କ ବିରୁଦ୍ଧରେ ଖୋର୍ଦ୍ଧାରେ ବିଦ୍ରୋହକରି ମୃତ୍ୟୁବରଣ କରିଥିଲେ । ୧୮୧୭ ଖ୍ରୀ:ଅ:ରେ ବକ୍ସି ଜଗବନ୍ଧୁ ଖୋର୍ଦ୍ଧାରେ ପାଇକ ବିଦ୍ରୋହକରି ଇଂରେଜମାନଙ୍କର ହୃତ ସ୍ପନ୍ଦନ ସୃଷ୍ଟି କରିଥିଲେ । ସୁରେନ୍ଦ୍ର ସାଏ ୧୮୨୭ ଠାରୁ ୧୮୪୦ ଖ୍ରୀ.ଅ. ପର୍ଯ୍ୟନ୍ତ ସମ୍ବଲପୁରରେ ଲୋମହର୍ଷକାରୀ ଯୁଦ୍ଧ ଚଳାଇଥିଲେ । ୧୮୩୬ ଖ୍ରୀ. ଅ. ଠାରୁ ଗୁମୁସରରେ ବୀର ଚକରା

ବର୍ଷୋଇ ଓ ତାଙ୍କ ପୁତ୍ର ଦୋହର ବର୍ଷୋଇ ୧୮୫୭ ପର୍ଯ୍ୟନ୍ତ ଉତ୍କଳ ବିଦ୍ରୋହ କରି ମୃତ୍ୟୁ ପର୍ଯ୍ୟନ୍ତ ଆତ୍ମସମର୍ପଣ କରି ନ ଥିଲେ । ଭଞ୍ଜରାଜା ଶ୍ରୀକର ଭଞ୍ଜଙ୍କ ଢ଼ୁମୁସରର ଗୌରବୋଜ୍ଜ୍ୱଳ ବିପ୍ଳବ ଇତିହାସରେ ସ୍ୱର୍ଣ୍ଣାକ୍ଷରରେ ଲେଖାଅଛି । ସିଂହଭୂମିର ଅର୍ଜ୍ଜୁନ ସିଂ ଓ ଜଗୁଦେବାନ୍, ଖାର ସାମୁଣ୍ଡାଙ୍କ ବିପ୍ଳବ ଓଡ଼ିଶା ଇତିହାସର ବିସ୍ମୃତ ପୃଷ୍ଠାରେ ଅବହେଳିତ ହୋଇ ରହିଗଲା ।

## ଧର୍ମ ଓ ଭକ୍ତିବାଦ

ଭାରତ ବର୍ଷରେ ଆର୍ଯ୍ୟ ସଭ୍ୟତା ପ୍ରଥମେ ସିନ୍ଧୁ ନଦୀର ଅବବାହିକାରେ ପ୍ରାୟ ୮ ହଜାର ବର୍ଷ ପୂର୍ବେ ଜନ୍ମଲାଭ କରିଥିଲା । ଆର୍ଯ୍ୟ ସଂସ୍କୃତିର ଶେଷ ରଚନା ହେଉଛି 'ବେଦ' ଯାହାକି ୫ ହଜାର ବର୍ଷ ପୂର୍ବେ ରଚନା ହୋଇଥିଲା । ଏଥିରୁ ହିନ୍ଦୁ ଆର୍ଯ୍ୟମାନଙ୍କର ବହୁତ କଥା ଜଣାପଡ଼େ । ବୌଦ୍ଧଧର୍ମ ପ୍ରାୟ ୨ ହଜାର ପଞ୍ଚଶତ ବର୍ଷ ପୂର୍ବେ ପ୍ରଭାବ ବିସ୍ତାର କରିଥିଲା । ପୃଥିବୀରେ ଖ୍ରୀଷ୍ଟଧର୍ମର ପ୍ରଚାର ଓ ପ୍ରସାର କେବଳ ୨ ହଜାର ବର୍ଷ ପୂର୍ବର କଥା ଏବଂ ମୁସଲମାନ-ମାନଙ୍କର ଧର୍ମ ୧୫ ଶହ ବର୍ଷ ପୂର୍ବେ କ୍ରମାଗତଭାବେ ପ୍ରଚଳିତ ହୋଇଥିଲା ।

ଧର୍ମଗୁରୁ ମହାବୀର— ଜୈନଧର୍ମ ଖ୍ରୀ:ପୂ: ୫୪୦ ।
ବୁଦ୍ଧଦେବ — ବୌଦ୍ଧଧର୍ମ ଖ୍ରୀ ପୂ: ୫୬୩ ।
ମହମ୍ମଦ — ମୁସଲମାନ ଧର୍ମ ୫୭୦ ଖ୍ରୀ:ଅ: ।
ରାମାନନ୍ଦ — ବୈଷ୍ଣବଧର୍ମ ୧୨୨୯ ଖ୍ରୀ:ଅ: ।
ତାଙ୍କଶିଷ୍ୟ କବୀର— „ ୧୪୪୦ ଖ୍ରୀ:ଅ: ।
ନାନକ — ଶିଖ ଧର୍ମ ୧୪୬୯ ଖ୍ରୀ:ଅ: ।

ଶ୍ରୀ ଚୈତନ୍ୟ (ଗୌଡ଼ୀୟ ବୈଷ୍ଣବଧର୍ମ) ୧୪୮୬ ଖ୍ରୀ:ଅ:ରେ ଜନ୍ମଗ୍ରହଣ କରିଥିଲେ ।

ଭାରତରେ ସନାତନ ହିନ୍ଦୁଧର୍ମରେ ସ୍ଖଳନ, ବ୍ରାହ୍ମଣ୍ୟଧର୍ମ-ରେ ବ୍ୟଭିଚାର ଦେଖା ଦେବାରୁ ବୌଦ୍ଧଧର୍ମ ବିସ୍ତାର ଲାଭ କଲା । ସେଥିପାଇଁ ସଂସ୍କାରକ ମହାତ୍ମା ବୁଦ୍ଧଙ୍କୁ ଧର୍ମର ବିପ୍ଳବୀ ସନ୍ତାନ ରୂପେ ନାମିତ କରାଗଲା । ବୌଦ୍ଧମାନେ ବେଦକୁ ବହୁ କ୍ଷେତ୍ରରେ ମାନୁ ନଥିଲେ । ପୁତ୍ତଳିକା ପୂଜା ଓ ପଶୁବଳୀର ବିରୋଧ କରୁଥିଲେ । ସେମାନଙ୍କର ଜାତିଭେଦ ନଥିଲା । ସ୍ତ୍ରୀମାନଙ୍କୁ ଉଚ୍ଚ ଆସନ ଦେଉ-ଥିଲେ । ପରିଶେଷରେ ବୌଦ୍ଧଧର୍ମ 'ମହାଯାନ ଓ ହୀନଯାନ' ରୂପେ ବିଭକ୍ତ ହେଲା । ଏହା ଭିତରୁ ତାନ୍ତ୍ରିକଧର୍ମ, ଶୈବଧର୍ମ, ଶାକ୍ତଧର୍ମ, ବୈଷ୍ଣବଧର୍ମ ଆଦିର ମତବାଦ ହିନ୍ଦୁ ଓ ବୌଦ୍ଧଧର୍ମର ସମ୍ମିଶ୍ରଣରେ ଜାତ ହେଲା । ଶୈବ ଓ ଶାକ୍ତ ଧର୍ମରେ ଶିବ ଓ ଶକ୍ତିର ଉପାସନା ହେଲା । ଶକ୍ତି ବା ଦୁର୍ଗାଙ୍କ ସ୍ଥାନରେ ନାନା ଯୋଗିନୀଙ୍କୁ ଓ ବୈଷ୍ଣବ ଧର୍ମରେ ସେପରି ରାଧା ଓ କୃଷ୍ଣଙ୍କର ପୂଜା କରାଗଲା ।

ବୌଦ୍ଧଧର୍ମରେ ଯୌନ ପ୍ରବୃତ୍ତିକୁ ନିପୀଡ଼ିତ କରି ଶୀଳ-ସଂଯମ ଜୀବନଯାପନ ଥିଲା ପ୍ରଥମ କଥା । ମାତ୍ର ବୌଦ୍ଧ ସହଜସାଧନା ଧର୍ମରେ ତା'ର ବିପରୀତ ପ୍ରତିକ୍ରିୟା ଦେଖାଦେଲା । ବୌଦ୍ଧ-ସହଜିଆର 'ମହାସୁଖ', ବୈଷ୍ଣବ ସହଜିଆର 'ମହାଭାବ ବା ରସଲୀଳା' ଚେତନା ବୈଷ୍ଣବ ଭକ୍ତି ଧର୍ମକୁ ପ୍ରଭାବିତ କରିଥିଲା ।

ଶ୍ରୀ ଚୈତନ୍ୟଙ୍କର ପ୍ରଚାରିତ 'ପ୍ରେମଧର୍ମ'ରେ ରାଧାକୃଷ୍ଣ ପ୍ରେମିକା ବା ପ୍ରେମିକ ମୂର୍ତ୍ତି । ସେମାନେ ପ୍ରକୃତି ଓ ପୁରୁଷ । ବୈଷ୍ଣବ ଧର୍ମରେ ବିଶେଷ କଥା ହେଲା ଗୋପୀଭାବାପନ୍ନ ହୋଇ ଆତ୍ମ ସମର୍ପଣ କରିବାକୁ ହୁଏ ।

## ଶ୍ରୀ ଚୈତନ୍ୟଦେବ

ଶ୍ରୀ ଚୈତନ୍ୟଦେବ ୨୪ ବର୍ଷ ବୟସରେ ସନ୍ୟାସ ଗ୍ରହଣ କରି ୧୫୦୯ ଖ୍ରୀ:ଅ:ରେ ପୁରୀକୁ ଆସିଥିଲେ । ସେତେବେଳେ ତାଙ୍କ ଧର୍ମର ପ୍ରଚାର ଓ ପ୍ରସାର ଘଟି ନଥିଲା । ଏହାପରେ ସେ ବିଭିନ୍ନ ବୈଷ୍ଣବପୀଠ ତୀର୍ଥ ଭ୍ରମଣ ପାଇଁ ଭାରତର ବହୁ ସ୍ଥାନକୁ ପରିଭ୍ରମଣ କରି ୧୫୧୯ରେ ପୁରୀ ଫେରିଲେ । ରାୟ ରାମାନନ୍ଦ ତାଙ୍କପାଇଁ କ୍ଷେତ୍ର ପ୍ରସ୍ତୁତ କରିଥିଲେ । ସେ ୧୫୧୫ ଠାରୁ ୧୫୩୩ ଖ୍ରୀ:ଅ: ପର୍ଯ୍ୟନ୍ତ ପୁରୀ-ରେ ରହିଥିଲେ ଓ ରାଜା ପ୍ରତାପ ରୁଦ୍ରଦେବଙ୍କ ପୃଷ୍ଠପୋଷକତା ଲାଭ କରିଥିଲେ । ତାଙ୍କର 'ପଞ୍ଚସଖା' ତାଙ୍କୁ ଧର୍ମ ପ୍ରଚାରରେ ବହୁତ ସାହାଯ୍ୟ କରି ଓଡ଼ିଆ ସାହିତ୍ୟରେ ଉନ୍ନତ କରିଥିଲେ । ମଧ୍ୟଯୁଗର ଶେଷ ବେଳକୁ ଓଡ଼ିଶାରେ ଶୈବ ଧର୍ମକୁ ବୈଷ୍ଣବଧର୍ମ କବଳିତ କଲା । କେତେକ କବି ସୀତା ରାମ, ରାମ-କୃଷ୍ଣଙ୍କର ଲୌକିକ କଥାବସ୍ତୁକୁ ଶୃଙ୍ଗାର ରସର ପୁଟ ଦେଇ ତାଙ୍କର ଲୀଳା ଖେଳାକୁ ବର୍ଣ୍ଣନା କରିବା ପାଇଁ ବିଶେଷ ପ୍ରାଧାନ୍ୟ ଦେଇଥିଲେ । ଏହା ଫଳରେ ଭାରତୀୟ ସାହିତ୍ୟ କ୍ଷେତ୍ରରେ ଓଡ଼ିଆ ବୈଷ୍ଣବ ସାହିତ୍ୟର ବହୁ ପରିମାଣରେ ପରିପୁଷ୍ଟ କରିଥିଲେ । ବୈଷ୍ଣବ କବିମାନଙ୍କ ମଧ୍ୟରେ ଭକ୍ତକବି ଗୋପାଳକୃଷ୍ଣ ଶ୍ରେଷ୍ଠ କବି ଥିଲେ ।

## ଜୀବନୀ

କବି ଗୋପାଳକୃଷ୍ଣ ପଟ୍ଟନାୟକ ଗଞ୍ଜାମ ଜିଲ୍ଲା ପାରଳା-ଖେମୁଣ୍ଡି ଠାରେ ୧୭୮୪ ମସିହା ଆଷାଢ଼ ଶୁକ୍ଳପକ୍ଷ ପ୍ରତିପଦା ଦିନ ଜନ୍ମଗ୍ରହଣ କରିଥିଲେ । ପିତାଙ୍କ ନାମ ବନବାସୀ, ପିତୃବ୍ୟ ବ୍ରଜବାସୀ

ଓ ମାତାଙ୍କ ନାମ ଲଳିତା ଦେବୀ ଏବଂ ପିତାମହଙ୍କ ନାମ ବଂଶୀଧର ପଟ୍ଟନାୟକ । ଏହାଙ୍କର ପୂର୍ବପୁରୁଷମାନେ ପଞ୍ଚଦଶ ଶତାବ୍ଦୀରେ କଟକ ଜିଲ୍ଲା ଯାଜପୁର ପ୍ରଗଣା କଂସାକବାଟୀ ଗ୍ରାମରୁ କଳା ମିଶ୍ରଙ୍କ ସମୟରେ ଆସି ପାରଳାଖେମୁଣ୍ଡିରେ ବସବାସ କରିଥିଲେ । କବିଙ୍କର ପିତା ପାରଳା ରାଜାଙ୍କର ପାଞ୍ଜିଆ କରଣ ଥିଲେ । ଜାତିରେ ସେ ସାମନ୍ତ କରଣ ଥିଲେ । ସେ ଗୌରଭକ୍ତ ଓ ପରମାର୍ଥୀ ଥିଲେ । କବି ନିଜେ ଜ୍ୟେଷ୍ଠପୁତ୍ର । ତାଙ୍କର ଦୁଇଭାଇ ଓ ତିନି ଭଉଣୀ ଥିଲେ । ସେ ୭ବର୍ଷ ବୟସରେ ବିଦ୍ୟାରମ୍ଭ କରିଥିଲେ । ତାଙ୍କର ଶିକ୍ଷାଗୁରୁ ଖୀରଡ଼ାମଠ ମହାନ୍ତ ଓ ଦୀକ୍ଷାଗୁରୁ ଲୋକନାଥ ଦାସ ଗୋସ୍ୱାମୀ । ବାଲ୍ୟକାଳରେ ବିଦ୍ୟାଶିକ୍ଷା ପାଇଁ ମନ ଦେଉ ନ ଥିବା ଯୋଗୁଁ ସେ ବହୁବାର ଭର୍ତ୍ସିତ ହେଉଥିଲେ ମଧ୍ୟ ସେ ମୁଗ୍ଧବୋଧ ବ୍ୟାକରଣ, ଅମରକୋଷ ଅଭିଧାନ, କାଳିଦାସ ଓ ଭବଭୂତିଙ୍କର ଅମରଲେଖା ଆୟତ୍ତ କରିଥିଲେ । ପିଲାଟି ଦିନରୁ ତାଙ୍କର କବିତ୍ୱର ସ୍ଫୁରଣ ହୋଇଥିଲା ।

କବି ବିଂଶ ବର୍ଷରେ ବିବାହ କରିଥିଲେ । ତାଙ୍କର ପୁତ୍ର କରୁଣାନିଧି, ହରିବଂଧୁ, ଗୌରଚନ୍ଦ୍ର ଓ ଏକ କନ୍ୟା ଥିଲେ । ହରିବଂଧୁ ମଧ୍ୟ କବିଥିଲେ । କରୁଣାନିଧିଙ୍କର ଅକାଳ ବିୟୋଗ ହୋଇଥିଲା । କନ୍ୟା ମଧ୍ୟ ବିଧବା ହୋଇ ଯାଇଥିଲା ।

କବି ତାଙ୍କର କିଶୋର ବୟସରେ ପିତାଙ୍କ ସହ ରାଜ-ଦରବାରକୁ ଯାଉଥିଲେ । ପିତାଙ୍କ ମୃତ୍ୟୁପରେ ସେ ରାଜବାଟୀ ୨୧ ଖଣ୍ଡ ଗ୍ରାମର ପାଞ୍ଜିଆ କାମ କରୁଥିଲେ । କବି ବୈଷ୍ଣବ ଦୀକ୍ଷା ନେବା ପରେ ତାଙ୍କର ଲେଖାର ଦୃଷ୍ଟିଭଙ୍ଗି ବଦଳି ଥିଲା ।

'ଆନ ରସରେ
ରସନାରେ ରସ ନା ।'

ଗୃହ ସନ୍ୟାସୀ ରୂପେ ଜୀବନଯାପନ କରି, ଅନେକ ଘାତ ପ୍ରତିଘାତ ସହ୍ୟ କରି ଈଶ୍ୱରଙ୍କଠାରେ ଅଟଳ ବିଶ୍ୱାସ ରଖିଥିଲେ ।

ଗୌଡ଼ୀୟ ବୈଷ୍ଣବଙ୍କ ମତ କୃଷ୍ଣଙ୍କର ସାନିଧ ଲାଭ କରିବାକୁ ହେଲେ ଦାସୀଭାବାପନ୍ନ ହୋଇ ଭକ୍ତ ଶିରୋମଣି ରାଧାଙ୍କର ଅନୁକମ୍ପା ଜରିଆରେ ତାଙ୍କୁ ପାଇବାକୁ ହୁଏ ।

'ଏତେ ଭାଗ୍ୟ ମୋର ହେବକି
ହେବି ବୃନ୍ଦାବନେଶ୍ୱରୀ ସେବକୀ' ।

× × ×

କବିଙ୍କର ମାତା ପିତା ଥିଲେ ବୈଷ୍ଣବ ଧର୍ମର ଉପାସକ । ଏହି ପ୍ରଭାବ ତାଙ୍କର ଉପରେ ପଡ଼ିଥିଲା । କବି ନିଜେ କିଶୋର ଅବସ୍ଥାରୁ ରାଧା-କୃଷ୍ଣଙ୍କର ଅପୂର୍ବ ଲୀଳା ଶ୍ରବଣରେ ଅତ୍ୟନ୍ତ ଆସକ୍ତି ପ୍ରକାଶ କରିଥିଲେ । ପରବର୍ତ୍ତୀ ସମୟରେ ତାଙ୍କର ଜ୍ଞାନାନୁରାଗ ଓ ବିଦ୍ୟାପ୍ରୀତି ବଢ଼ିଥିଲା ।

କବି ପ୍ରଥମେ ପ୍ରେମିକ, ତା'ପରେ ସାଧକ, ହରି ମନ୍ଦିର ତିଳକ, ତୁଳସୀ କଣ୍ଠିଧାରୀ ଥିଲେ । କେଶ, ବେଶ, ନଖ ନ ଥିଲା ଓ ଲୁଣ୍ଠିତ ମସ୍ତକରେ ଚୁଟି ଥିଲା । ସେ ନିରାମିଷାଶୀ ଥିଲେ ।

ପ୍ରତ୍ୟେକ ତରୁଣ କବି ଭାବପ୍ରବଣ ଓ ସୌନ୍ଦର୍ଯ୍ୟର ଉପାସକ । କବି ଦେଖେ, ଅନୁଭବ କରେ, ହୃଦୟର ଆବେଗକୁ କଳ୍ପନା ତୁଳୀରେ ପ୍ରକାଶ କରେ ସମାଜର ଛବିକୁ ।

ପୂର୍ବ ସୂରୀମାନେ କହିଛନ୍ତି -- କୋକିଳ ସହକାରର ବକୁଳ ମଞ୍ଜରୀ ମଧୁପାନ ନ କଲେ ତା'ର ସ୍ୱର ଲହରୀ ସୁମଧୁର ହୁଏନାହିଁ ।

ସେହିପରି କବି ତା'ର ମାନସୀର ଅଧର ମଧୁ ପାନ ନ କଲେ ତା'ର ରଚନାବଳୀ ହୃଦୟସ୍ପର୍ଶୀ ହୁଏନାହିଁ । କବିସମ୍ରାଟ ଲେଖିଛନ୍ତି ରମଣୀର ବିମ୍ବାଧରରେ ମଧୁ ରୂପକ ଅମୃତ ଅଛି । ମାତ୍ର ସୁର ଓ ଅସୁରମାନେ ବୃଥା ପରିଶ୍ରମ କରି ଅମୃତ ପାଇଁ ସାଗର ମନ୍ଥନ କରୁଥିଲେ କାହିଁକି ?

କବି ତରୁଣ ଅବସ୍ଥାରେ ପ୍ରଥମେ କୌଣସି ଲାସ୍ୟମୟୀ ରୂପସୀ ତରୁଣୀର ରୂପ ଲାବଣ୍ୟରେ ପ୍ରଲୁବ୍ଧ ହୋଇ ଲେଖିଥିଲେ—

'ସ୍ୱରେ ଦେଲା ବଧୂ ନ ଯାରେ' ।

ଅନ୍ୟଠାରେ ସେ ପ୍ରେମିକ ଭାବରେ ଲେଖିଛନ୍ତି 'ଘନକୁନ୍ତୁ, ମାରମୁଙ୍ଗୁ ଏ ବାରେକ ବଞ୍ଚା, ରାଜବାଟୀରେ କାମ କରୁଥିଲା ବେଳେ ତାଙ୍କର କବିତା ଉନ୍ମେଷ ହୋଇଥିଲା । ଦରବାରରେ ରାଜାଙ୍କର ପୃଷ୍ଠପୋଷକତା ମଧ୍ୟ ଲାଭ କରିଥିଲେ । ରାଜାଙ୍କର ଅନୁରୋଧକ୍ରମେ ସୁନା ମହାଦେଇ ବିଷୟ ନେଇ ଲେଖିଥିଲେ —

'ସର ସରସୀ ହିଣା ଦେହରେ ଥରେ'

'ବାରି ନୁହେଁ ନାଗି ମନର ମିତଣୀ

କ୍ଷଣ କ୍ଷଣକୁ ନିତ୍ୟ ନୂତନ ।'

ଗୋପାଳକୃଷ୍ଣଙ୍କ ସମୟରେ ପାରଳାଖେମୁଣ୍ଡିର ଅନ୍ୟତମ କବି ଥିଲେ ପଦ୍ମନାଭ ପରିଚ୍ଛା ।

## କବିସୂର୍ଯ୍ୟ ଓ ଗୋପାଳକୃଷ୍ଣ

କବି କବିସୂର୍ଯ୍ୟ ଓ ଗୋପାଳକୃଷ୍ଣ ଦୁହେଁ ସମସାମୟିକ ଥିଲେ । ଉଭୟଙ୍କର ରଚନାବଳୀରେ ସଂଗୀତର ମୂର୍ଚ୍ଛନା ଝଂକୃତ ହୋଇଥିଲା । କବିସୂର୍ଯ୍ୟ ଥିଲେ ଗତ ଯୁଗର ଶେଷ ଆଲୋକ ସ୍ତମ୍ଭ ।

ଆଜି ଗୋପାଳକୃଷ୍ଣ ହେଉଛନ୍ତି 'ଗୀତିଯୁଗ'ର ସୁପରିଚିତ ଅମ୍ଳାନ ପ୍ରତିଭା ।

ଡକ୍ଟର କାହ୍ନୁଚରଣ ମିଶ୍ର ତାଙ୍କର ଗୀତିଯୁଗର କବିମାନଙ୍କର ନାୟକ ବିଷୟ କହିଛନ୍ତି । 'ସେ ନାୟକ ଭକ୍ତଦାସଙ୍କ ନାୟକ ଭଳି ବିଶ୍ୱେର ରକ୍ତ ଶୋଷରେଚୁମ୍ବନ ମାଗିନାହିଁ । ଅଭିମନ୍ୟୁଙ୍କ ନାୟକ ଭଳି ନାୟିକାକୁ ତନୁଦାନ ଦେବାକୁ ପ୍ରାର୍ଥନା କରିନାହିଁ । ଦନାଇ ଦାସଙ୍କ ନାୟକ ଭଳି ଅବିରତ ରତିକ୍ରୀଡ଼ାରେ ବିଭୋର ହୋଇନାହିଁ । ଦୁର୍ବାର ସମ୍ଭୋଗ ବାସନାରେ ସେ ବିଭ୍ରାନ୍ତ ହୋଇନାହିଁ । ସେ କେବଳ ଅଙ୍ଗ ଭଙ୍ଗୀରେ ତା'ର ବାସନା ଜଣାଇ ଅଛି ।' ଆଉ କବିସୂର୍ଯ୍ୟଙ୍କ ନାୟକ ଥିଲା ଯୌବନ ଧର୍ମୀ । ଏହି କବିମାନେ ବୈଷ୍ଣବ ବା ଭକ୍ତ ନ ଥିବାରୁ ସେମାନଙ୍କର ରଚନାରେ ଆଧ୍ୟାତ୍ମିକତାର ପ୍ରଭାବର ଅଭାବ ପରିଲକ୍ଷିତ ହେବା ସାଧାରଣ କଥା ।

## ଭାଷା ଓ ସାହିତ୍ୟ

କବିଙ୍କର ରଚନାବଳୀ ସରଳ, ସାବଲୀଳ ତଥା ପ୍ରାଞ୍ଜଳ ଥିବା ଯୋଗୁଁ ପ୍ରତ୍ୟେକ ଶ୍ରେଣୀର ଲୋକମାନେ ସହଜରେ ବୁଝି ପାରୁଥିଲେ । କବି ତାଙ୍କର ପୂର୍ବ ସୂରୀମାନଙ୍କ ଠାରୁ ଗତାନୁଗତ ଶବ୍ଦ ଆଡ଼ମ୍ବର, ଭାଷା କ୍ଲିଷ୍ଟତା ପ୍ରକାଶ ଭଙ୍ଗୀରୁ ମୁକ୍ତ ହୋଇ ସରଳ, ତରଳ ଭାଷା, ବ୍ୟବହାର କରିଛନ୍ତି । ସେ ଜୟଦେବଙ୍କ ସମକକ୍ଷ ଅନେକ ରଚନା କରି-ଛନ୍ତି ତଥା ଚୈତନ୍ୟଙ୍କ ପରି ଆଧ୍ୟାତ୍ମିକ ଭାବ ପରିବେଷଣ କରିଛନ୍ତି ।

କବିସୂର୍ଯ୍ୟ ଓ ଗୋପାଳକୃଷ୍ଣ ଗୀତିଯୁଗର ସମସାମୟିକ କବି ଓ ଗୀତିକାର, ନାୟକ ଓ ନାୟିକାଙ୍କର ପୂର୍ବରାଗ, ମିଳନ, ବିରହ,

ମାନ ଅଭିମାନ ଚିତ୍ରଣରେ ଗୋପାଳକୃଷ୍ଣଙ୍କର ରାଧା, ମୁଗ୍ଧା ଆଉ କବିସୂର୍ଯ୍ୟଙ୍କର ରାଧା, ପ୍ରଗଳ୍ଭା । କବିସୂର୍ଯ୍ୟ ଥିଲେ ଶିଳ୍ପୀ ଆଉ ଗୋପାଳକୃଷ୍ଣ ଥିଲେ ଶିଳ୍ପୀ ଓ ସାଧକ । କବିଙ୍କର ରଚନାରେ ଜୟ-ଦେବ, ଉପେନ୍ଦ୍ର, କବିସୂର୍ଯ୍ୟ ପରି ଦେହଧର୍ମୀ ହୋଇନାହିଁ ।

## ବାତ୍ସଲ୍ୟ ରସ

ଗୋପାଳକୃଷ୍ଣ ଓଡ଼ିଆ ସାହିତ୍ୟର ଶ୍ରେଷ୍ଠ ବାତ୍ସଲ୍ୟ ରସସ୍ରାବୀ କବି ।

"ଲୁଣ୍ଠା ହାତଠା ଖାଇ　　ନାଚୁଛୁ କାହାପାଇଁ
ଶୁଖିଯିବୁ ନ ଖାଇଁ । ଗୁଣିକି ରେ"

"ବ୍ରଜକୁ ଚୋର ଆସିଛି ଧେନୁ ନେବ ଶୁଅ ତୁନି ହୋଇ"

"ଉଠିଲୁ ଏଡ଼େ ବେଗି କାହିଁକି ରେ ଦୁଃଖିଧନ
ଦଧି ମନ୍ଥାଇ ଦେବୁ ନାହିଁକି ରେ"

"ନିଶି ଅବସାନ ଉଠ ମୋର କଳାମାଣିକ ରେ"

## ସୌନ୍ଦର୍ଯ୍ୟ

କବି ରୂପ ପିପାସୁ ଥିଲେ ବୋଲି ଏଥିରୁ ଜଣାଯାଏ ।
ବ୍ରଜବଧୂ ପରି ମୋତେ କେ ଦିଶୁ ନାହିଁ
ମନ ପୂରୁଛି କି ହେଲେ ନିତି ରହିଁ ।

## ସଂଗୀତ

କବିଙ୍କର ରଚନାବଳୀ ସଙ୍ଗୀତର ରାଗ ରାଗିଣୀରେ ସଂସ୍କୃତ

ଓ ମେ ଏଗ ତାଲ ପ୍ରତି ବିଶେଷ ଲକ୍ଷ୍ୟ ଦେଇଛନ୍ତି । ତାଙ୍କର ଲୋକପ୍ରିୟ ପ୍ରାର୍ଥନା ହେଉଛି—

'ଅନୁସରିତ ପ୍ରଭୁ କାଳ ଯାଉ ଗଲ୍ ସରିତ' ।

ଦେହ, ମନ ଓ ପ୍ରାଣକୁ ସମ୍ପୂର୍ଣ୍ଣଭାବେ ଆତ୍ମ ସମର୍ପଣ କରିବା ହେଉଛି ବୈଷ୍ଣବ ଧର୍ମର ସର୍ବଶ୍ରେଷ୍ଠ ପନ୍ଥା ।

ରାଧା କହୁଛନ୍ତି—

'ତାଙ୍କ ସୁଖେ ସିନା ମୁହିଁ ସୁଖିନୀ
ତାଙ୍କ ଦୁଃଖରେ ମୁଁ ମହା ଦୁଃଖିନୀ
ତାଙ୍କ ଲଗି ଏ ଯୌବନ ଭୂଷଣ
ବିକଛି ତାଙ୍କୁ ଦେହ-ମନ-ପ୍ରାଣ'

'ଦୟା ନ କରନ୍ତୁ ମୁଁ ଦାସୀ ସିନାରେ' ।

ରାଧା ହେଉଛନ୍ତି କୃଷ୍ଣଙ୍କର ପରମ ଭକ୍ତ, ସର୍ବ ସୌନ୍ଦର୍ଯ୍ୟର କେନ୍ଦ୍ରବିନ୍ଦୁ । ତାଙ୍କୁ ଶ୍ରେଷ୍ଠ ସ୍ଥାନ ଦେବାପାଇଁ ସେ ବର୍ଣ୍ଣନା କରିଛନ୍ତି—

'ରାଧା ପରି ରାଧା ସିନାରେ ସଙ୍ଗାତ
ରାଧା ପରି ରାଧା ସିନା
ସ୍ୱର୍ଣ୍ଣ ମାତରିକେ ଅଛନ୍ତି ଯେତେକ
ସର୍ବେ ପିତଳ ସେ ସୁନା ।'

କବିଙ୍କର ରାଧା, ପାଗଳିନୀ ହୋଇ କହୁଛନ୍ତି—

'କଦମ୍ବ ବନେ ବଂଶୀ ବାଜିଲରେ
ରାଧା ଦମ୍ଭ ଶିଥିଳ ହୋଇଲରେ' ।

× × ×

ତୋ ବିନା ଭ୍ରୁତିକାର ଆନକେ ନାହିଁ ମୋର
ବିବେକ ରତନ ମୋ ହଜିଲରେ ।

× × ×

କୃଷ୍ଣର ଜାତି ନାଶିଲ
ଅଲଙ୍ଘ୍ୟ ଯାକ ଲଂଘିଲ ।

× × ×

'ଶ୍ୟାମ ଅପବାଦ ମୋତେ ସଦା ଲଗି ଥାଉରେ
ଜାତି ସେ ଚନ୍ଦାରେ ମୋ ଦିନ ଯାଉରେ' ।

ଓଡ଼ିଶାର ଜନସାଧାରଣଙ୍କ ମଧ୍ୟରେ ଉପେନ୍ଦ୍ର ଭଞ୍ଜ ଚିର ସ୍ମରଣୀୟ ହୋଇଛନ୍ତି । ସାହିତ୍ୟ କ୍ଷେତ୍ରରେ ଯେତିକି ସଙ୍ଗୀତ କ୍ଷେତ୍ରରେ ତା'ଠାରୁ ଅଧିକ । କବିସମ୍ରାଟଙ୍କ ଦିବ୍ୟ ସୃଷ୍ଟିରେ ଉତ୍କଳର କଳା ଓ ସଂଗୀତର ଧାରା ପ୍ରବାହିତ । ଓଡ଼ିଆ ସାହିତ୍ୟରେ ତାଙ୍କର ସଙ୍ଗୀତର ରସାଳ ଚରଣ ଦାନ ଅତୁଳନୀୟ । ତାଙ୍କର ଛାନ୍ଦଗୁଡ଼ିକ ରସାନୁସାରି ସ୍ୱରରେ ରଚିତ । ତେଣୁ କବି ସମ୍ରାଟ କଳାପ୍ରାଣ ଓ ସଙ୍ଗୀତପ୍ରାଣ ଓଡ଼ିଆ ଜାତିର ସର୍ବଶ୍ରେଷ୍ଠ ପ୍ରତିନିଧି ଓ ସଙ୍ଗୀତର ପ୍ରଥମ ପ୍ରବର୍ତ୍ତକ । ସଙ୍ଗୀତକୁ କବିସୂର୍ଯ୍ୟ ପ୍ରଚୁର ଓ ପରିପ୍ରସାର କରିଥିଲେ । କବି ଗୋପାଳକୃଷ୍ଣ ଏହାର ପରିପୂରକ ଥିଲେ । ଏମାନେ ଓଡ଼ିଶାର ଦକ୍ଷିଣାଞ୍ଚଳର କବି ଥିଲେ ଏବଂ ସେମାନଙ୍କର କାବ୍ୟ ଓ ଗୀତ ସମୂହ ଗାୟକ ପାଇଁ ଉଦ୍ଦିଷ୍ଟ ଥିଲ ।

ସଙ୍ଗୀତ ପ୍ରାଣୀଜଗତ ଉପରେ ବିଶେଷ ପ୍ରଭାବ ବିସ୍ତାର କରେ । ତା'ର ମଧୁର ଝଂକାରରେ ମନୁଷ୍ୟ କାହିଁକି ପଶୁ, ପକ୍ଷୀମାନେ ମଧ୍ୟ ମୁଗ୍ଧ ହୁଅନ୍ତି । ବିଷଧର ସର୍ପ ଏହାର ପ୍ରଭାବରେ ସମ୍ମୋହିତ ହୁଏ । ସଙ୍ଗୀତ କହିଲେ ଗୀତ, ବାଦ୍ୟ, ସ୍ୱର ଓ ନୃତ୍ୟକୁ ବୁଝାଏ । ଏହି ସ୍ୱର୍ଗୀୟ ଶାସ୍ତ୍ର ପୃଥିବୀର ମରଣଶୀଳ ମଣିଷକୁ କ୍ଷଣିକ ଆନନ୍ଦ ପ୍ରଦାନ କରିବା ପାଇଁ ଆସିଅଛି ।

ପୁରାଣରୁ ଜଣାଯାଏ ଯେ ଦେବତା ଓ ଦାନବମାନଙ୍କ ଯୁଦ୍ଧରେ ଶିବ ଦାନବମାନଙ୍କୁ ନିପାତ କରି ବିଜେତା ହୋଇ ନୃତ୍ୟ ଆରମ୍ଭ କରି-ଥିଲେ । ସେହି ସମୟରୁ ନୃତ୍ୟର ପ୍ରଥମ ସୃଷ୍ଟି । ତ୍ରେତୟା ଯୁଗରେ ଲୋକମାନେ କର୍ମବ୍ୟସ୍ତ ହୋଇ କ୍ଳାନ୍ତି ଯୋଗୁଁ କ୍ଷଣିକ ଆନନ୍ଦ ଲାଭ କରିବା ପାଇଁ ଦେବତାଗଣ ଓ ଦେବରାଜ ଇନ୍ଦ୍ର ସମେତ ବ୍ରହ୍ମାଙ୍କୁ ଏହାର ଉପଯୋଗନ ପାଇଁ ଗୋଟିଏ ଶାସ୍ତ୍ର ବାହାର କରନ୍ତୁ ବୋଲି ପ୍ରାର୍ଥନା କଲେ । ଏହାର ଫଳରେ ପଞ୍ଚମ ବେଦରୂପେ 'ନାଟ୍ୟବେଦ'ର ସୃଷ୍ଟି ହେଲା । ଋକ୍‌ବେଦରୁ କିଛି ଅଂଶ, ସାମବେଦରୁ ସଙ୍ଗୀତ, ଯଜୁର୍ବେଦରୁ ଅଭିନୟ, ଅଥର୍ବବେଦରୁ ରସ ଅଂଶକୁ ନେଇ 'ନାଟ୍ୟ-ବେଦ' ରଚିତ ହେଲା । ତେଣୁ ଶିବଙ୍କର ନୃତ୍ୟରୁ ଯେଉଁ କଳା ଓ ଶୈଳୀର ପ୍ରକାଶ ପାଇଲା ତାହା ମନୁଷ୍ୟ ଗ୍ରହଣ କରିପାରିଲା ନାହିଁ । ସେଥିପାଇଁ ବ୍ରହ୍ମା ଅପ୍‌ସରାମାନଙ୍କୁ ଜନ୍ମଦେଇ ଭରତ ଋଷିଙ୍କୁ ପ୍ରଦାନ କଲେ । ସ୍ୱାତି ଓ ନାରଦ ସଙ୍ଗୀତ ବିଦ୍ୟାରେ ସିଦ୍ଧହସ୍ତ ହେଲେ । ଭରତ ଏହି ସମସ୍ତ କଳାକୁ ନେଇ ଏକ ନାଟକର କଳ୍ପନା କଲେ ।

ଶିବଙ୍କର 'ତାଣ୍ଡବ ନୃତ୍ୟ' ଏକ ଉଗ୍ର ଧରଣର ନୃତ୍ୟ । 'ଲାସ୍ୟ' ଅତି ଆନନ୍ଦ ଦାୟକ ନୃତ୍ୟ ଯାହାକୁ ପାର୍ବତୀ ଶିକ୍ଷା ଦେଉଥିଲେ । ନୃତ୍ୟପାଇଁ ସୌନ୍ଦର୍ଯ୍ୟ, ହାସ୍ୟ, ଦେହର ଅଙ୍ଗଭଙ୍ଗୀ ଇତ୍ୟାଦିର ଦରକାର ହୁଏ । ନର୍ତ୍ତକୀର ମସ୍ତକ, ହସ୍ତ, ପାଦ, ଚକ୍ଷୁ, ଗ୍ରୀବା ସହିତ ମୁଖମଣ୍ଡଳ ମାଂସପେଶୀର ଆବଶ୍ୟକୀୟ ପରିଚାଳନାହିଁ ନୃତ୍ୟର ମାଧୁର୍ଯ୍ୟ ବଢାଇଥାଏ ।

ଭରତୀୟ ନୃତ୍ୟମାନଙ୍କରେ ସାଧାରଣତଃ ହସ୍ତ ଲାସ୍ୟ, ହାସ୍ୟର ବ୍ୟବହାର ଦ୍ୱାରା ଭାବ ପ୍ରକାଶ ପାଇଥାଏ। ଏହା ବାଦେ ଅନେକ

ପ୍ରକାର ଭରତଖଣ୍ଡ ନୃତ୍ୟ ରହିଛି ଯଥା --'ଭରତ ନାଟ୍ୟମ୍' (ନୃତ୍ୟ ମଧ୍ୟରେ ପ୍ରାଚୀନତମ) । 'କଥକ', 'କଥାକଳୀ', 'ମଣିପୁରୀ' ପ୍ରଧାନ । ଆହୁରି ମଧ୍ୟ ଅନେକ ନୃତ୍ୟକଳା ଦେଖାଯାଏ । ଯଥା-'ମୋହିନୀଅଟ୍ଟମ' ଓ 'ଓଡ଼ିଶୀ' । ମୋହିନୀଅଟ୍ଟମ, ଓ କଥାକଳୀ ନୃତ୍ୟର ଜନ୍ମ କେରଳ । 'କୁଚିପୁଡ଼ି'ର ଉତ୍ପତ୍ତି ଆନ୍ଧ୍ରରୁ । ଖ୍ରୀ: ପୂ: ଦ୍ୱିତୀୟ ବର୍ଷରୁ ପୂର୍ବ ଭାରତରୁ ବିଶେଷ କରି ଓଡ଼ିଶାରୁ 'ଓଡ଼ିଶୀ' ନୃତ୍ୟର ସୃଷ୍ଟି । ଓଡ଼ିଶୀ ନୃତ୍ୟର 'ଲାସ୍ୟ' ନୃତ୍ୟର ଶୈଳୀ ଓ ଗୁଣାବଳୀ ପ୍ରାଧାନ୍ୟଲାଭ କରିଛି ।

ଗୀତ ଓ ନୃତ୍ୟ ମଧ୍ୟରେ ବାଦ୍ୟ ଏକ ସଂଯୋଜନାକାରୀର କାର୍ଯ୍ୟ କରିଥାଏ । ବାଦ୍ୟକୁ ଯଥା — ତତ୍ତ୍ୱବାଦ୍ୟ (ତାର ଖଚିତ), ଆନଦ୍ଧବାଦ୍ୟ—(ଚମଡ଼ା ଖଚିତ), ଘନବାଦ୍ୟ—(ଧାତୁ ନିର୍ମିତ ଓ ସୁଷିର ବାଦ୍ୟ—(ପାଟିରେ ଫୁଙ୍କି) ରୂପରେ ବ୍ୟବହାର କରାଯାଇ-ଥାଏ ।

ସ୍ୱର ସାତ ପ୍ରକାର ଓ ପ୍ରତ୍ୟେକ ସ୍ୱର ପଶୁପକ୍ଷୀମାନଙ୍କ ଠାରୁ ଅନୁକରଣ କରାଯାଇଛି । ଷଡ଼ଜ (ମୟୂର,, ଋଷଭ (ବୃଷଭ), ଗାନ୍ଧାର (ଛେଳି), ମଧ୍ୟମ (ମେଣ୍ଢା), ପଞ୍ଚମ (କୋକିଳ), ଧୈବତ, (ବେଙ୍ଗ), ନିଷାଦ (ହସ୍ତୀ) ।

କବିତାରେ ଭାବ, ଭାଷା, ଛନ୍ଦ ଓ ରସର ସୌଷ୍ଠବ ରକ୍ଷା କରା-ଯାଇଥାଏ । କିନ୍ତୁ ସଙ୍ଗୀତରେ ଏ ସବୁ ସମାବେଶ ଛଡ଼ା ରାଗ ଓ ଲୟର ପ୍ରାଧାନ୍ୟ ବେଶୀ । ଭାବ, ଭାଷା, ଲୟ ଓ ରାଗ ପରସ୍ପରର ପରିପୋଷକ ନଥିଲେ ସଂଗୀତର ରସ ସୃଷ୍ଟି ହୁଏ ନାହିଁ । ଓଡ଼ିଶାରେ ଅଷ୍ଟାଦଶ ଶତାବ୍ଦୀର ପ୍ରଥମ ପାଦରେ ଜଗନ୍ନାଥ ନାରାୟଣ ଦେବଙ୍କ

'ସଙ୍ଗୀତ ନାରାୟଣ', ରଘୁନାଥ ରଥଙ୍କର 'ନାଟ୍ୟ ମନୋରମା' (୧୬୦୨) ମହେଶ୍ୱ ମହାପାତ୍ରଙ୍କର 'ଅଭିନୟ ଚନ୍ଦ୍ରିକା' (୧୭୬୭), ଗଜପତି ନାରାୟଣ ଦେବଙ୍କ 'ତାଳ ସର୍ବସ୍ୱ ସଂଗ୍ରହ', 'ସଙ୍ଗୀତ କୌମୁଦୀ' ଇତ୍ୟାଦି ସଂଗୀତ ଓ ନାଟ୍ୟକଳାର ଚିରନ୍ତନତାର ସୂଚନା ଦିଏ । ଭାରତୀୟ ନୃତ୍ୟ ଧର୍ମ ବଳିଷ୍ଠ ସଂସ୍କୃତିର ପ୍ରତୀକ । ଭାରତର ହିନ୍ଦୁସ୍ତାନୀ ଓ କର୍ଣ୍ଣାଟକୀ ସଂଗୀତ ମଧ୍ୟରେ ଓଡ଼ିଶୀ ସଙ୍ଗୀତର ବିଶେଷ ସ୍ୱାତନ୍ତ୍ର୍ୟ ରହିଛି ।

## ଉତ୍କଳୀୟତା

କବି ନାୟକ, ନାୟିକାମାନଙ୍କୁ ଓଡ଼ିଆ ବେଶରେ ସଜାଇଛନ୍ତି । ଓଡ଼ିଶାବାସୀଙ୍କର ଅଲୌକିକତା, ସାମାଜିକ ଓ ପାରିପାର୍ଶ୍ୱିକ ବାତାବରଣକୁ ନେଇ ଜୀବନ୍ତ ଛବି ଆଙ୍କିଛନ୍ତି । ତାଙ୍କ ରଚନା ଭିତରେ ବହୁଳ ଗ୍ରାମ୍ୟ ଭାଷା ପ୍ରୟୋଗ କରିଛନ୍ତି । ସମୟେ ସମୟେ ଜନ୍ମସ୍ଥାନ କେତେକ ଦକ୍ଷିଣୀ ଭାଷା ପ୍ରୟୋଗ କରି ଭାବାବେଗକୁ ପ୍ରକୃତ ରୂପରେଖ ଦେଇଛନ୍ତି ।

## ଗଙ୍ଗବଂଶ ଓ ଖେମୁଣ୍ଡି

ଗଙ୍ଗବଂଶର ପ୍ରବଳ ପ୍ରତାପୀ ଗଜପତି ରାଜାମାନେ ଶହଶହ ବର୍ଷ ଧରି ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ନିଜର ସାମ୍ରାଜ୍ୟ ବିସ୍ତାର କରି ଥିଲେ । ମାତ୍ର ଏ ବଂଶର ଶେଷ ରାଜା ନିଃଶଙ୍କ ଭାନୁଦେବ ୪ର୍ଥ ବିଳାସ ବ୍ୟସନରେ କାଳାତିପାତ କରିବା ଯୋଗୁଁ ଦେଶ ଭିତରେ ଅଶାନ୍ତିର ବାତାବରଣ ସୃଷ୍ଟି ହେଲା ଓ ଉତ୍କଳ ଅଜୟ ସେନାବାହିନୀ ଅନେକ ବିପର୍ଯ୍ୟୟ ବରଣ କଲା । ୧୪୩୮ ଖ୍ରୀ:ଅ:ରେ ନିଃଶଙ୍କ ଭାନୁଦେବ ଦକ୍ଷିଣରେ ଥିବା ସମୟରେ ସେନାପତି କପିଳେନ୍ଦ୍ରଦେବ ବଳପୂର୍ବକ ସିଂହାସନ ଅଧିକାର କରି ସୂର୍ଯ୍ୟ ବଂଶ ପ୍ରତିଷ୍ଠା କଲେ । ଫଳରେ ନିଃଶଙ୍କ

ଭାନୁଦେବ ରାଜ ସିଂହାସନ ପୁଣି ଅଧିକାର ନ କରି ଗଙ୍ଗ ରାଜାମାନଙ୍କର ମୂଳରାଜ୍ୟ କଳିଙ୍ଗରେ ଗୁଡ଼ାରୀକୁ ରାଜଧାନୀ କରି ଖେମୁଣ୍ଡି ରାଜ୍ୟକୁ ରାଜତ୍ୱ କରି ସନ୍ତୁଷ୍ଟ ହୋଇ ରହିଲେ । ନିଃଶଙ୍କ ଭାନୁଦେବଙ୍କ ବଂଶଧରମାନେ କପିଳେନ୍ଦ୍ରଦେବ (୧୪୩୫—୧୪୬୭ ଖ୍ରୀ ଅ:)ଙ୍କର ବଶତା ସ୍ୱୀକାର କରି ସାମନ୍ତ ରାଜା ରୂପେ ଖେମୁଣ୍ଡି ରାଜ୍ୟ ଶାସନ କଲେ । ଗଙ୍ଗବଂଶର ରାଜାମାନେ ବହୁ ଶତାବ୍ଦୀ ଧରି ପାରଳାଖେମୁଣ୍ଡି ନିକଟସ୍ଥ ମୁଖଲିଙ୍ଗ କଳିଙ୍ଗନଗର ଆଦିକୁ ରାଜଧାନୀ କରି ଗଂଜାମ ଓ ଶିକାକୁଲମ ଜିଲ୍ଲାକୁ ରାଜତ୍ୱ କରୁଥିଲେ । ୧୬୦୭ ଖ୍ରୀ:ଅ: ବେଳକୁ ଉକ୍ତ ଖେମୁଣ୍ଡି ରାଜ୍ୟକୁ ଗଙ୍ଗବଂଶୀୟ ଦୁଇ ଭାଇଙ୍କ ମଧ୍ୟରେ ବିଭକ୍ତ କରାଗଲା । ବଡ଼ ଭାଇ ଗଜପତି ନାରାୟଣଦେବ ଜ୍ୟେଷ୍ଠାଂଶ (ଖେମୁଣ୍ଡି) ପାରଳାଖେମୁଣ୍ଡି ପାଇଲେ ଓ ସାନଭାଇ ଅନଙ୍ଗ ଭୀମଦେବ ବଡ଼ଖେମୁଣ୍ଡି (ବିଜୟନଗର) ପାଇଲେ ।

## ରାଜନୀତି

ଗୋପାଳକୃଷ୍ଣ ଯେତେବେଳେ ପାରଳାଖେମୁଣ୍ଡି ରାଜାଙ୍କ ଅଧୀନରେ ପାଞ୍ଜିଆ ଥିଲେ, ତାଙ୍କର ଦୂରଦୃଷ୍ଟି ଥିବା ଜଣାଯାଏ । ସେ ରାଜାଙ୍କୁ କୃଷିର ଉନ୍ନତି, ଜଳ ଯୋଗାଣର ବ୍ୟବସ୍ଥା କରିବା ପାଇଁ ପରାମର୍ଶ ଦେଉଥିଲେ ।

ପାରଳାଖେମୁଣ୍ଡିରେ ଗଂଗବଂଶର ରାଜାମାନେ ରାଜତ୍ୱ କରୁଥିଲେ । ଗଜପତି ଦେବଙ୍କର ୧୮୦୨ ଖ୍ରୀ:ଅ:ରେ ମୃତ୍ୟୁହୁଏ । ତାଙ୍କର ରାଣୀ ସୁଆଗି ମହାଦେଈ ଜୀବିତ ଥା'ନ୍ତି । ତା'ପରେ ତାଙ୍କ ପୁତ୍ର ପୁରୁଷୋତ୍ତମ ନାରାୟଣଦେବ ୧୮୦୫ ଖ୍ରୀ:ଅ:ରେ ପ୍ରାଣତ୍ୟାଗ କଲେ । ତାଙ୍କର ରାଣୀ ପାଟମହାଦେଈ ଥା'ନ୍ତି । ତାଙ୍କର ପୁତ୍ର ଜଗନ୍ନାଥ ଗଜପତି ନାରାୟଣଦେବ ୧୮୧୪ ଖ୍ରୀ.ଅ.ରେ ଜନ୍ମଗ୍ରହଣ କରିଥିଲେ । ସେ ନାବାଳକ ଥିଲେ । ପରେ ସେ ୧୮୨୧ ଠାରୁ ୧୮୨୯ ପର୍ଯ୍ୟନ୍ତ ରାଜା

ଥିଲେ । ସୁଆଗି ମହାଦେଈଙ୍କୁ ପଦ୍ମନାଭଦେବ ଓ ପାଟ ମହାଦେଈଙ୍କୁ ଗୋପୀନାଥ ପଟ୍ଟନାୟକ ସହଯୋଗୀ ହିସାବରେ ରଖି ରାଜ୍ୟ ସିଂହାସନ ପାଇଁ ବିଦ୍ରୋହ ସୃଷ୍ଟି କରିଥିଲେ ।

ଇଂରେଜମାନେ ଏହି ସୁବିଧା ସୁଯୋଗ ନେଇ ରାଜ୍ୟ ଶାସନରେ କୂଟନୈତିକ ହସ୍ତକ୍ଷେପ କଲେ । ପଦ୍ମନାଭଦେବ ୧୮୩୦ ଖ୍ରୀ:ଅ:ରେ ନିଯୁକ୍ତି ପାଇବା ମାତ୍ରେ ଗୋପୀନାଥ ପଟ୍ଟନାୟକଙ୍କର ପ୍ରରୋଚନାରେ ରାଜ୍ୟରେ ଦୋରା, ସଉରା ଓ ପାଇକମାନେ ବିଦ୍ରୋହ କରିଥିଲେ । ୧୮୩୦ରେ କମ୍ପାନୀ ଦ୍ୱାରା କବିସୂର୍ଯ୍ୟଙ୍କୁ ପାରଳାଖେମୁଣ୍ଡି ରାଜାଙ୍କର ଅଭିଭାବକ ମେନେଜର ପଦରେ ନିଯୁକ୍ତି କରାଇଥିଲେ । କବି ୧୮୩୦ ଖ୍ରୀ.ଅ. ରେ ବିଦ୍ରୋହରେ ଜଣେ ସମର୍ଥକ ଥିଲେ ।

୧୮୩୧ ଖ୍ରୀ:ଅ:ରେ ପାରଳା ବିଦ୍ରୋହ ଗୁରୁତର ହେଲା । ପଦ୍ମ-ନାଭଦେବଙ୍କର ୧୮୩୨ ଖ୍ରୀ.ଅ·ରେ ମୃତ୍ୟୁ ହେଲା । ବିଦ୍ରୋହୀ ନେତା ଗୋପୀନାଥ ପଟ୍ଟନାୟକଙ୍କର ଜଣେ ପ୍ରଧାନ ସମର୍ଥକ ଥିଲେ କବି ଗୋପାଳକୃଷ୍ଣ । ଗୋପାଳକୃଷ୍ଣ ପଦ୍ମନାଭଦେବଙ୍କର ବିରୋଧୀ ହୋଇ ରାଜ୍ୟ ଛାଡ଼ି ରାଜଧାନୀ ଗଞ୍ଜାମକୁ ପଳାଇ ଇଂରେଜମାନଙ୍କୁ ସବୁକଥା ବୁଝାଇ କହିଥିଲେ ।

୧୮୩୨ ଖ୍ରୀ:ଅ:ରେ ରସଲ୍ ସାହେବ ଛାଉଣି ପକାଇ ବିଦ୍ରୋହ ଦମନ କରି ୧୫ ଜଣଙ୍କୁ ଫାଶି, ୨୫ ଜଣଙ୍କୁ ଆଜୀବନ କାରାଦଣ୍ଡ, ୧୦୩ ଜଣଙ୍କୁ କାରାଦଣ୍ଡ ଦେଇଥିଲେ ।

## ରଚନାବଳୀ

କବି ବହୁ ଶାସ୍ତ୍ରଦର୍ଶୀ ଥିଲେ । ଓଡ଼ିଆ, ତେଲୁଗୁ, ସଂସ୍କୃତ, ବଙ୍ଗଳା ଓ ବ୍ରଜବୋଲି ଭାଷାରେ ସେ ପ୍ରବୀଣ ଥିଲେ । ସଂସ୍କୃତରେ ତାଙ୍କର ପାଣ୍ଡିତ୍ୟ ଥିବା ତାଙ୍କର ରଚନାରୁ ଜଣାଯାଏ । ତାଙ୍କର ଲେଖାରେ କୀର୍ତ୍ତନ, ପ୍ରାର୍ଥନା, ମନଶିକ୍ଷା, ପ୍ରାତଃ ସ୍ମରଣାମୃତ, କୋଇଲି

ବୋଲଗୀତ ଓ ବହୁ ଗୀତ କବିତା ରହିଅଛି । ତାଙ୍କର ୬୧୯ ଗୋଟି ଗୀତ କବିତା ସଂଗୃହୀତ । ସେଥିମଧ୍ୟରୁ ବିଳାପ ଚଉତିଶା, ଜାତଫୁଲ ଚଉତିଶା, ଜଳଦ ଚଉତିଶା, ଯଶୋଦା କୋଇଲି, ବିଚିତ୍ରକା, ଅଷ୍ଟକ, ଚତୁଃପଦୀ, ଲୀଳା, ସ୍ତବ, ସ୍ତୋତ୍ର, ବୋଲି ଓ ଛାନ୍ଦ ଇତ୍ୟାଦି ।

ସେ ସଂସ୍କୃତରେ ଶ୍ରୀ ରାଧାପ୍ରଣମାନନ୍ଦ ସ୍ତୋତ୍ର, ଶ୍ରୀ ଶ୍ରୀ ଗୋବିନ୍ଦ ନାମାମୃତ ଲହରୀ, ଶ୍ରୀ ଶ୍ରୀ ହରିକୁସୁମ ସ୍ତବକ, ନୃତ୍ୟପଞ୍ଚକ ଓ ଶ୍ରୀ ରାଧା ନକ୍ଷତ୍ରମାଳା ଇତ୍ୟାଦି ଲେଖିଛନ୍ତି ।

ଅପ୍ରକାଶିତ ଭାବେ ଶ୍ରୀ ଶ୍ରୀ ବୃନ୍ଦାବନ ପ୍ରେମ ନାମାବଳୀ, ମୁକୁନ୍ଦ ମୁକ୍ତାବଳୀ ଶ୍ଳୋକାନୁବାଦ, ଶ୍ରୀରାଧାଙ୍କ ଦଶନାମ ସ୍ତୋତ୍ର, ଗୁଢ଼ପ୍ରୀତି ଚିନ୍ତାମଣି, ନାମ ଚିନ୍ତାମଣି, ପ୍ରେମ କଳ୍ପଲତା, ରାଧାଗୋବିନ୍ଦ ଲୀଳାମୃତ ଓ ରସାତ୍ମକ ବନ୍ଦନାମୂଳକ ଅନେକ ଲେଖା ରହିଛି ।

ଜୀବନର ସାୟାହ୍ନରେ କବି ପାରଳାଖେମୁଣ୍ଡି ପରଗଣାର ପଦ୍ମନାଭଦେବଙ୍କ କୋପ ଦୃଷ୍ଟିରେ ପଡ଼ିଥିଲେ । ସେଥିପାଇଁ ସେ ନିଜ ଜନ୍ମମାଟି ଛାଡ଼ି ଜିଲ୍ଲା ରାଜଧାନୀ ଗଞ୍ଜାମକୁ ଇଂରେଜମାନଙ୍କୁ ସେଠିକାର ପରିସ୍ଥିତି ବୁଝାଇବାକୁ ଯାଉଥିଲେ । ଏହି ଅବସରରେ ପ୍ରତିଶୋଧ ନେବା ପାଇଁ ପଦ୍ମନାଭ ଦେବ ତାଙ୍କର ରାଜଦତ୍ତ ପୈତୃକ ସମ୍ପତ୍ତି ବାଜ୍ୟାପ୍ତ କରି ଦେଇଥିଲେ । ସେଥିପାଇଁ ଅନ୍ତିମ କାଳରେ ଅଭାବ ଅସୁବିଧା ଲାଗିଥିବା କଥା ଜଣାଯାଏ । କନ୍ୟା ବିଧବା ଓ ପୁତ୍ରର ଅକାଳ ମରଣ ତାଙ୍କୁ ମ୍ରିୟମାଣ କରିଥିଲା । ୧୮୬୨ ଖ୍ରୀ:ଅ: ଫାଲ୍‌ଗୁନ ଦ୍ୱିତୀୟା ତିଥିରେ ତାଙ୍କର ଜୀବନଶିଖା ନିର୍ବାପିତ ହୋଇଥିଲା ।

ଓଡ଼ିଆ ଭାଷା, ସଂଗୀତ, ସାହିତ୍ୟ ଯେତେଦିନ ପର୍ଯ୍ୟନ୍ତ ବଞ୍ଚି ରହିଥିବ ସେତେ ଦିନ ପର୍ଯ୍ୟନ୍ତ କବି ଗୋପାଳକୃଷ୍ଣ ଅମର ହୋଇ ରହିବେ ।

●

# ମହାକବି ବିପ୍ର ପିତାମ୍ବର ଦାଶ

## ଆର୍ଯ୍ୟସଭ୍ୟତା ଓ ବେଦ

ଭାରତ ବର୍ଷରେ ଆର୍ଯ୍ୟ ସଭ୍ୟତା ଅତି ପ୍ରାଚୀନ । ଖ୍ରୀଷ୍ଟ-ଜନ୍ମର ଛ'ହଜାର ବର୍ଷ ପୂର୍ବରୁ ଏହା ସିନ୍ଧୁ ନଦୀର ଅବବାହିକାରେ ପ୍ରଥମେ ସ୍ଥାପନ ହୋଇଥିଲା । ସରସ୍ଵତୀ ଓ ଦୃଷଦ୍‌ବତୀ ନଦୀର ମଧ୍ୟ-ବର୍ତ୍ତୀ ସ୍ଥାନକୁ ଆର୍ଯ୍ୟାବର୍ତ୍ତ କୁହାଯାଏ । ଗବେଷକଙ୍କ ମତରେ ମନୁସ୍ମୃତି ପ୍ରାୟ ପାଞ୍ଚହଜାର ବର୍ଷ ପୂର୍ବେ ଲେଖା ହୋଇଥିଲା । ଏହି ଆର୍ଯ୍ୟା-ବର୍ତ୍ତରୁ ଯେଉଁ ଜ୍ଞାନ, ସଂସ୍କୃତି ପ୍ରତିଭାତିତ ହେଲା ତାହା ବିଶ୍ଵର ଅନ୍ୟାନ୍ୟ ଲୋକମାନେ ଏଠାରୁ ଶିକ୍ଷାକଲେ ।

ମହେଞ୍ଜୋଦାର ଓ ହରପ୍ପାରୁ ଯେଉଁ ପ୍ରତ୍ନତାତ୍ତ୍ଵିକ ସଭ୍ୟତା ମାଟିତଳୁ ଆବିଷ୍କୃତ ହୋଇଛି ତାହା ଆଜି ମୂକସାକ୍ଷୀ । ଏହି ସଭ୍ୟତା, ସଂସ୍କୃତି ବିଶେଷ ଭାବରେ ବିଶ୍ଵଦରବାରରେ ଉଚ୍ଚ ଆସନରେ ଅଧିଷ୍ଠିତ ଥିଲା । ତା'ପରେ ଆର୍ଯ୍ୟମାନେ ଗଙ୍ଗା ଓ ଯମୁନା ନଦୀର ସମତଳ ପ୍ରଦେଶରେ ବସତି ସ୍ଥାପନ କରି କ୍ରମେ ପୂର୍ବ ଦକ୍ଷିଣ ଦିଗକୁ ଅଗ୍ରସର ହେଲେ ।

ଓଡ଼ିଶାକୁ ପ୍ରାୟ ପାଞ୍ଚହଜାର ବର୍ଷ ପୂର୍ବେ ଆର୍ଯ୍ୟମାନେ ଉତ୍ତର ଓ ଦକ୍ଷିଣ ଦିଗରୁ ମହାନଦୀ ଅବବାହିକାର ସମତଳ ଅଞ୍ଚଳରେ

ବସବାସ କରିଥିଲେ । କାଶୀ, କୋଶଳ ଆର୍ଯ୍ୟମାନେ କୋଶଳର ଦକ୍ଷିଣ ଅଞ୍ଚଳରୁ ଓଡ଼ିଶାକୁ ଆସିଥିଲେ ।

ଆର୍ଯ୍ୟମାନଙ୍କ ଦ୍ୱାରା ଲିଖିତ ବେଦ ହେଉଛି ପୃଥିବୀର ସର୍ବ ପ୍ରଥମ ଓ ପ୍ରାଚୀନତମ ଗ୍ରନ୍ଥ । ଏହି ବେଦରୁ ଆର୍ଯ୍ୟମାନଙ୍କର ଧର୍ମ, ସଂସ୍କୃତି, ଦର୍ଶନ, ଇତିହାସ, ଭୂଗୋଳ, ଜ୍ୟୋତିଷ, ଆୟୁର୍ବେଦ ଓ ସାମାଜିକ ଅବସ୍ଥାର ଶବ ମିଳେ ।

ବେଦ ଚାରି ଭାଗରେ ବିଭକ୍ତ ଯଥା—ଋଗ୍, ଶ୍ୟାମ, ଯଜୁ ଓ ଅଥର୍ବ । ଋଗ୍‌ବେଦ ହେଉଛି ପ୍ରାଚୀନତମ । ବେଦକୁ ମଧ୍ୟ 'ଶ୍ରୁତି' କୁହାଯାଏ । କାରଣ ପାରମ୍ପରିକ ପ୍ରରୁଷାନୁକ୍ରମେ ଏହାକୁ ମୁଖସ୍ଥ କରି ମନେ ରଖୁଥିଲେ । ସାମବେଦର ଅଧିକାଂଶ ମନ୍ତ୍ର ଋଗ୍ ବେଦରୁ ସଂଗୃହୀତ । ଯଦୁର୍ବେଦର ମୁଖ୍ୟ ବିଷୟବସ୍ତୁ ହେଉଛି-ଯଜ୍ଞବିଧିବର୍ଣ୍ଣନା । କିନ୍ତୁ ଅଥର୍ବ ବେଦରେ ଜନ୍ମମରଣ, ଅଭିଷେକ ବିଧି; ଶତ୍ରୁମାନଙ୍କର ମାରଣ; ଉଚ୍ଚାଟନ ଆଦି କ୍ରିୟା ଓ ରୋଗ ଆରୋଗ୍ୟ ପାଇଁ ଚିକିତ୍ସା ବ୍ୟବସ୍ଥାମାନ ଅଛି ।

ବେଦ ଶବ୍ଦର ଅର୍ଥ ହେଉଛି ଜ୍ଞାନ । ବେଦର 'ସଂହିତା' ଭାଗ ପଦ୍ୟରେ ରଚିତ ଓ 'ବ୍ରାହ୍ମଣ' ଅଂଶ ଗଦ୍ୟରେ ରଚିତ ହୋଇ-ଥିଲା । 'ଆରଣ୍ୟକ' ଓ 'ଉପନିଷଦ' ବୈଦିକ ଯୁଗର ଶେଷ ଭାଗରେ ରଚିତ ହୋଇଥିଲା । ଯଜମାନ ଓ ପୁରୋହିତମାନଙ୍କ ସୁବିଧା ପାଇଁ ସୂତ୍ର ସାହିତ୍ୟର ଆବିର୍ଭାବ ହେଲା । ବେଦର ସୂକ୍ତ ଗୁଡ଼ିକ ପଦ୍ୟରେ ରଚିତ ହୋଇଥିଲା । ଏହାକ୍ରମେ ଅତିବାଧ ହେବାଯୋଗୁଁ 'ବ୍ରାହ୍ମଣ' ଗ୍ରନ୍ଥ ସୃଷ୍ଟି ହେଲା । ଏ ଗୁଡ଼ିକ ଗଦ୍ୟରେ ରଚିତ । କର୍ମକାଣ୍ଡର ବ୍ୟାଖ୍ୟା କରି 'ବ୍ରାହ୍ମଣ'ଗ୍ରନ୍ଥ ରଚିତ ହେଲା । ଏଥିରେ ବୈଦିକ କର୍ମ-

କାଣ୍ଡର ବିଷୟର ଗଭୀର ଆଲୋଚନା ହୋଇଛି । 'କର୍ମକାଣ୍ଡ' ଓ 'ଜ୍ଞାନକାଣ୍ଡ'ରେ ବେଦ ବିଭକ୍ତ ।

ମଣିଷ ଜୀବନ ଯାପନ କରିବା ପାଇଁ, ଧର୍ମ, ଅର୍ଥ, କାମ ଓ ମୋକ୍ଷର ସାଧନା ଦରକାର ହୁଏ ।

ବେଦର ଗୁରବର୍ଣ୍ଣ ଯଥା—ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୁଦ୍ରଜାତି କଥା ଲେଖାଅଛି । ଆଉ ବ୍ରହ୍ମଚର୍ଯ୍ୟ, ଗାର୍ହସ୍ଥ୍ୟ,ବାନପ୍ରସ୍ଥ ଓ ସନ୍ୟାସ ଜୀବନ ଯାପନ ପ୍ରଣାଳୀ ଭିତରେ ଗତି କରିବା କଥା ଉଲ୍ଲେଖ ଅଛି । ଆର୍ଯ୍ୟମାନେ ପାଞ୍ଚଟି ଶାଖାରେ ବିଭକ୍ତ ଥିଲେ ଓ ବିଭିନ୍ନ ଅଞ୍ଚଳର ରାଜ୍ୟ ଶାସନ କରୁଥିଲେ । ରାଜ୍ୟର ରାଜା ଥିଲେ ପ୍ରଧାନ । ତାଙ୍କୁ ଉପଦେଶ ଦେବା ପାଇଁ ପୁରୋହିତମାନେ ନିଯୁକ୍ତଥିଲେ ।

## ପୁରାଣ

ପଞ୍ଚମ ବେଦ ହେଉଛି ପୁରାଣ । 'ପୁରାଣ'ର ଅର୍ଥ ହେଉଛି ପୁରୁଣା କାଳର କାହାଣୀ । ଏହାର ଜରିଆରେ ସାମାଜିକ, ରାଜ-ନୈତିକ, ପ୍ରାକୃତିକ ଶବ୍ଦ ପରିସର ମାଧ୍ୟମରେ ଉପଦେଶ ଦେଇ ମଣିଷ ମନରେ ଧର୍ମଭାବ, ଭୟ, ଭକ୍ତି, ଜାଗ୍ରତ କରିବା ।

ବେଦ, ଉପନିଷଦ,ଆରଣ୍ୟକ ବ୍ରାହ୍ମଣ ପରେ ପୁରାଣ ଲିଖିତ । ପ୍ରଥମେ ବେଦବ୍ୟାସ ସଂସ୍କୃତରେ ପୁରାଣ ରଚନା କରିଥିଲେ । ବ୍ୟାସର ଅର୍ଥ ହେଉଛି ସଂକଳନ କରିବା । ପୁରାଣର ମୁଖ୍ୟ କଥା ଥିଲା ଧର୍ମନୀତି ଓ ସାମାଜିକ ବିଧିବିଧାନକୁ ଲୋକପ୍ରିୟ କରିବା ।

ବେଦ, ଉପନିଷଦ, ଆରଣ୍ୟକ, ସୂତ୍ର, ବ୍ରାହ୍ମଣ ଗ୍ରନ୍ଥ ଗୁଡିକ

ଅବୋଧ ହେବା ଯୋଗୁଁ ପଣ୍ଡିତଗଣ ବାଞ୍ଛିତ ଅନ୍ୟମାନେ ବୁଝିବା ସହଜ ନଥିଲା । ତେଣୁ ସରଳ ଭାଷାରେ ସେହି କଥାବସ୍ତୁକୁ ସର୍ବସାଧାରଣଙ୍କ ନିକଟରେ ପହଞ୍ଚାଇବା ପାଇଁ ପୁରାଣ ରଚିତ ହୋଇଥିଲା । ଆର୍ଯ୍ୟ ଓ ସଭ୍ୟତା ସଂସ୍କୃତିର ପ୍ରତିଫଳନ ପୁରାଣରେ ହୋଇଛି । ସମାଜକୁ ଅସତ୍ୟ ପଥରୁ ସତ୍ୟପଥକୁ ନେବା ପୁରାଣଗୁଡ଼ିକର ଉଦ୍ଦେଶ୍ୟ ଏଥିରେ ଜଗତର ସୃଷ୍ଟିଠାରୁ କ୍ରମ ବିବର୍ତ୍ତନ ବିସ୍ତୃତ ଚିତ୍ର ଦେଖିବାକୁ ମିଳେ ଓ ଅତୀତ ଐତିହାସିକ, ସାମାଜିକ ଓ ସାଂସ୍କୃତିକ ବିବରଣୀ ମଧ୍ୟ ସୂଚିତ ହୁଏ ।

ବେଦକୁ ବିଦ୍ୱାନ ବ୍ୟକ୍ତି ବିନା ଜନସାଧାରଣ ବୁଝିପାରୁନଥିବା ଯୋଗୁଁ, ତାକୁ ଲୋକମୁଖୀ କରିବା ପାଇଁ ଧର୍ମପ୍ରଚାର, ନୀତି, ନିୟମ ଓ ଆଚାରର ବିସ୍ତାର ପାଇଁ 'ବ୍ୟାସ' ଆଦି ଆର୍ଯ୍ୟ ଋଷିମାନେ ପ୍ରଥମେ ପୁରାଣ ଲେଖିବା ଆରମ୍ଭ କଲେ ।

ବେଦ, ଉପନିଷଦ ଗ୍ରନ୍ଥଗୁଡ଼ିକ କେବଳ ବ୍ରାହ୍ମଣମାନେ ପଢ଼ିବାପାଇଁ ସୁଯୋଗ୍ୟ ମନେ ହେଉଥିଲା । ଶୂଦ୍ର ଓ ସ୍ତ୍ରୀ ଆଗ୍ରହତ୍ୟାଗ ବ୍ରାହ୍ମଣ ଏହା ପଢ଼ିବା ଶୁଣିବା ମନା ଥିଲା । ସେଥିପାଇଁ ଅନ୍ୟମାନେ ଏହା ଜାଣିବା ପାଇଁ ପୁରାଣ ରଚନାର ମୁଖ୍ୟ କାରଣ ହେଲା । ଅଧିକାଂଶ ପୁରାଣ ବ୍ରାହ୍ମଣମାନେ ରଚନା କରିଥିବା ଯୋଗୁଁ ବ୍ରାହ୍ମଣ ଇତର ଜାତି ପ୍ରତି ଘୃଣାକରି ନିଜ ଜାତିର ଗୌରବ ଗାନ କରିଛନ୍ତି ।

ପୁରାଣ ସାହିତ୍ୟ ବୌଦ୍ଧ ଧର୍ମର ପ୍ରସାର ପରଠାରୁ ବହୁଭାବରେ ବ୍ୟାପ୍ତି ଲାଭକଲା । ବୁଦ୍ଧଦେବଙ୍କ ଜନ୍ମବେଳକୁ ଅର୍ଥାତ ପ୍ରାୟ ଛ'ଶହ ବର୍ଷ ବେଳକୁ ଭାରତର ଅଧିକାଂଶ ଅଞ୍ଚଳରେ କଥିତ ଭାଷାର

ଉପୃତ୍ତି ହୋଇ ପାରିଥିଲା । ଭାରତୀୟ ସାହିତ୍ୟରେ ରାମାୟଣ ଓ ମହା-ଭାରତ'ରଚନା ପରେ ଆଉ ଯେଉଁ ବିଶିଷ୍ଟ ସାହିତ୍ୟ ସରଳ, ସହଜ ଭାଷାରେ ରଚିତ ହେଲା, ତାହା ହେଉଛି ପୁରାଣ । ଓଡ଼ିଆ ଭାଷା ସାହିତ୍ୟ ଓ କାବ୍ୟ ନାଟକକୁ ଓଡ଼ିଆ ପୁରାଣମାନଙ୍କର ଦାନ ଅପରିସୀମ କହିଲେ ଅତ୍ୟୁକ୍ତି ହେବନାହିଁ । ଏଥିରେ ଯୁଦ୍ଧ, ସମାଜର ଚିତ୍ର, ନାରୀ ଚରିତ୍ର, ରାଜଧର୍ମ, ଶାସନ ନୀତି, ଧର୍ମ ଧାରଣା, ଆଚାର ବ୍ୟବହାର, ରାଜ ବଂଶାବଳୀ, ତୀର୍ଥ ମାହାତ୍ମ୍ୟ, ପୁରାତନ ଶିକ୍ଷା, ସଂସ୍କୃତିର ଚିତ୍ର ମିଳେ । ମଧ୍ୟ ଯୁଗୀୟ ସାହିତ୍ୟରେ ପୁରାଣ ଗୋଟିଏ ସୁନିର୍ଦ୍ଦିଷ୍ଟ ସ୍ଥାନ ଗ୍ରହଣ କରିଛି । ଜ୍ଞାନ ମିଶ୍ରିତ ଭକ୍ତିବାଦୀ କବିମାନେ କାବ୍ୟ ଅପେକ୍ଷା ପୁରାଣ ଲେଖିବାରେ ବିଶେଷ ମନ ନିଯୋଗ କରିଥିଲେ । ଓଡ଼ିଶାରେ ଏ ସମସ୍ତେ ଶାରଳାଙ୍କ ଦ୍ୱାରା ପ୍ରଭାବିତ । ଆଦିକବି ସାରଳା ଦାସ ଓଡ଼ିଆ ପୁରାଣର ସ୍ରଷ୍ଟା । ସେ ପ୍ରଥମେ ଚଣ୍ଡୀ ପୁରାଣ ଓଡ଼ିଆ ସାହିତ୍ୟ-ରେ ରଚନା କରିଥିଲେ । ତା'ପରେ ମହାଭାରତ ରଚନା କରିଥିଲେ ।

କେତେକ ପୁରାଣରେ ରାଜାମାନେ ଚଳନ୍ତି ବିଷ୍ଣୁ ବୋଲି ଓ ବ୍ରାହ୍ମଣମାନେ ଚରିତ୍ରବାନ, ଶିଷ୍ଟ ହୁଅନ୍ତୁ ବା ନ ହୁଅନ୍ତୁ ସେମାନେ ଜନସାଧାରଣଙ୍କର ଦେବତା ବୋଲି ପ୍ରଚାର କରାଯିବାର ପ୍ରମାଣ ଅଛି । ଏମାନେ ନିରୀହ ଜନସାଧାରଣମାନଙ୍କୁ ଧର୍ମ ଧାରଣାର ଅଫିମ ଦେଇ ରାଜାମାନଙ୍କର ପରିପୂରକ ଭାବେ ଶୋଷଣ କଲେ । ପରବର୍ତ୍ତୀ କାଳରେ ୧୮ ଗୋଟି ପୁରାଣ ଶୁଣିବା ପରେ ଋଷିମାନେ ଉପ ପୁରାଣମାନ ରଚନା କରିଥିଲେ । ପୁରାଣଗୁଡ଼ିକ ସାଧାରଣତଃ ଦୁଇ ଭାଗରେ ବିଭକ୍ତ । ଯଥା—ମହା ପୁରାଣ ଓ ଉପ ପୁରାଣ । ଏହାଛଡ଼ା ଅନେକ ଆଂଚଳିକ ପୁରାଣ ଦେଖିବାକୁ ମିଳେ । ମହା ପୁରାଣର ସଂଖ୍ୟା ପରି ଉପ ପୁରାଣର ସଂଖ୍ୟା ମଧ୍ୟ ପ୍ରାୟ ସେତିକ ବୋଲି ମନେ ହୁଏ ।

## ପୁରାଣ

ବ୍ରହ୍ମ ପୁରାଣ, ପଦ୍ମ ପୁରାଣ, ବିଷ୍ଣୁ ପୁରାଣ, ବାୟୁ ପୁରାଣ, ଭାଗବତ, ନାରଦୀୟ ପୁରାଣ, ମାର୍କଣ୍ଡେୟ ପୁରାଣ, ଅଗ୍ନି ପୁରାଣ, ଭବିଷ୍ୟ ପୁରାଣ, ବ୍ରହ୍ମବୈବର୍ତ୍ତ ପୁରାଣ, ଲିଙ୍ଗ ପୁରାଣ, ବରାହ ପୁରାଣ, ସ୍କନ୍ଦ ପୁରାଣ, ବାମନ ପୁରାଣ, କୂର୍ମ ପୁରାଣ, ମତ୍ସ୍ୟ ପୁରାଣ, ଗରୁଡ-ପୁରାଣ, ବ୍ରହ୍ମାଣ୍ଡ ପୁରାଣ ।

## ଉପ ପୁରାଣ

ସନତ୍କୁମାରୋକ୍ତ, ନରସିଂହ, ସ୍କନ୍ଦ, ନନ୍ଦୀଶ୍ୱରୋକ୍ତ, ଦୁର୍ବାସୋକ୍ତ, ନାରଦୋକ୍ତ, କପିଳ, ବାମନ, ଉଶନସୋକ୍ତ, ବ୍ରହ୍ମାଣ୍ଡ, ବରୁଣ, କାଳିକା, ମାହେଶ୍ୱର, ଶାମ୍ବ, ସୌର, ପରାଶର, ମାରୀଚ, ଭାର୍ଗବୀ ।

ନୃସିଂହ ପୁରାଣମତେ ନିମ୍ନୋକ୍ତ କାର୍ଯ୍ୟ ସାଧନ ପାଇଁ ଭଗବାନ ଅବତାର ରୂପ ଆବିର୍ଭାବ ହୋଇଥିଲେ । ମତ୍ସ୍ୟ ଅବତାରରେ ମଧୁ କୈଟଭ ନିଧନ, କୂର୍ମ ଅବତାରରେ ମନ୍ଦର ଧାରଣ, ବରାହ ଅବତାରରେ ପୃଥ୍ୱୀ ଧାରଣ, ନୃସିଂହ ଅବତାରରେ ହିରଣ୍ୟକଶିପୁ ବିନାଶ, ବାମନ ଅବତାରରେ ବାଲୀବଧ । ରାମ ଅବତାରରେ ରାବଣ ବଧ, ପରଶୁରାମ ଅବତାରରେ କ୍ଷତ୍ରୀୟ ନିଧନ, ବଳରାମ କୃଷ୍ଣ ଅବତାରରେ କଂସ ଆଦି ଦୈତ୍ୟ ବଧ, ବୁଦ୍ଧ ଅବତାରରେ ପତିତ ଶରଣ, କଳ୍କି ଅବତାରରେ ମ୍ଳେଚ୍ଛ ସଂହାରଣ ।

## ଓଡ଼ିଆ ପୁରାଣର ଲେଖକ

ପଦ୍ମ ପୁରାଣ—ନୀଳାମ୍ବର ଦାସ, ବିଷ୍ଣୁ ପୁରାଣ—ପ୍ରହଲ୍ଲାଦ ଦାସ,

ବାୟୁ ପୁରାଣ—ପଣ୍ଡିତ ଗର୍ଗବଟୁ, ଶ୍ରୀମଦ୍ଭଗବତ—ଅତିବଡ଼ ଜଗନ୍ନାଥ ଦାସ, ମାର୍କଣ୍ଡେୟ ପୁରାଣ—ମହାଦେବ ଦାସ, ଅଗ୍ନି ପୁରାଣ—ବାବାଜୀ ବୈଷ୍ଣବ ଚରଣ ଦାସ, ଲିଙ୍ଗ ପୁରାଣ—ରତ୍ନାକର ଗର୍ଗବଟୁ, ବରାହ ପୁରାଣ—କାମପାଳ ଦ୍ୱିଜ, ସ୍କନ୍ଦ ପୁରାଣ—ବଳରାମ ଦାସ, କୂର୍ମ-ପୁରାଣ—ଗୋପୀନାଥ କର, ମତ୍ସ୍ୟ ପୁରାଣ—ବିପ୍ରକବି କାମପାଳ, ଗରୁଡ଼ ପୁରାଣ—ରତ୍ନାକର ଗର୍ଗବଟୁ, ବ୍ରହ୍ମାଣ୍ଡ ପୁରାଣ—ବାବାଜୀ ବୈଷ୍ଣବ ଦାସ । ବ୍ରହ୍ମ ପୁରାଣ, ନାରଦୀୟ, ଭବିଷ୍ୟ, ବ୍ରହ୍ମବୈବର୍ତ୍ତ, ବାମନ ପୁରାଣର ନାମ ସଙ୍କଳନ କରାଯାଇ ପାରିନାହିଁ ।

ଓଡ଼ିଆରେ ନୃସିଂହ ପୁରାଣ—ପୀତାମ୍ବର ଦାସ, ସୂର୍ଯ୍ୟ-ପୁରାଣ—ରତ୍ନାକର ଗର୍ଗବଟୁ, ମହାଲକ୍ଷ୍ମୀ ପୁରାଣ—ବାସୁଦେବ ଉପାଧ୍ୟାୟ, ଯମ ପୁରାଣ—କୃଷ୍ଣଦାସ, ବିଷ୍ଣୁଗର୍ଭ ପୁରାଣ—ଚୈତନ୍ୟ ଦାସ, ଚଣ୍ଡି ପୁରାଣ—ସାରଳା ଦାସ, ଦେବୀପୁରାଣ—ଅଜଣା ରହିଛି ।

ଓଡ଼ିଆରେ ଜଗମୋହନ ରାମାୟଣ—ବଳରାମ ଦାସ, ହରିବଂଶ-ବିପ୍ରନାରାୟଣ ଦାସ, ମହା ଭାରତ ଓ ବିଲଙ୍କା ରାମାୟଣ—ସାରଳା-ଦାସ, ବିଷ୍ଣୁକେଶରୀ ପୁରାଣ ଓ ପଦ୍ମ ପୁରାଣ—ମହାଦେବ ଦାସ ।

## ପୁରାଣର ଧର୍ମ

ଯାହା ଆମକୁ ଧାରଣ କରି ରଖେ ତାହାକୁ ଧର୍ମ କୁହାଯାଏ । ଯେଉଁ ନୀତି, ନିୟମ, ନିର୍ଦ୍ଦେଶ ଦ୍ୱାରା ମାନବ ସମାଜ ତିଷ୍ଠି ରହେ ଓ ମାନବିକତାର ବିକାଶରେ ସାହାଯ୍ୟ କରେ ତାହା ହିଁ ପ୍ରକୃତ ଧର୍ମ । ଅନ୍ତରରୁ ଈର୍ଷା, କପଟ, ଛଳନା, କ୍ରୋଧ, ମୋହ, ଅହଂକାର ଭାବକୁ ଦୂର କରି ପ୍ରକୃତ ମଣିଷ ହେବା ପାଇଁ ନିର୍ଦ୍ଦେଶ ଦିଏ ତାହା ହିଁ ମାନବ ଧର୍ମ ।

ପୁରାଣ କହେ ମୃତ୍ୟୁ ପରେ ପାର୍ଥିବ ଶରୀର ପୃଥିବୀରେ ପଡ଼ିରହେ ଓ ସୂକ୍ଷ୍ମ ଶରୀର କର୍ମ ଫଳ ନେଇଯାଏ ଓ କର୍ମଫଳ ଅନୁସାରେ ଅନ୍ୟ ଗର୍ଭରେ ପ୍ରବେଶ କରି ଜନ୍ମ ଲାଭକରେ । ସତ୍‌କର୍ମ କଲେ ପ୍ରାଣୀ ମନୁଷ୍ୟ ଜନ୍ମ ନିଏ । ଧନ, ଜନ, ଯୌବନ, କ୍ଷମତା ମୋହରେ ମଣିଷ ମତ୍ତ ହୋଇ ଅନ୍ୟମାନଙ୍କ ଉପରେ ଅତ୍ୟାଚାର କରେ । ମାତ୍ର ତାକୁ ପରେ ତା'ର କୁଫଳ ଭୋଗିବାକୁ ପଡ଼େ । ଗୀତା କହେ କର୍ତ୍ତବ୍ୟ କରିଯାଅ ଫଳ ଉପରେ ଆଶା ରଖନାହିଁ । ସତ୍ୟ, ଅହିଂସାର ପଥ ହିଁ ଉତ୍କୃଷ୍ଟ ପନ୍ଥା । ଜୀବଠାରେ ଦୟା ରଖ । ବିପନ୍ନ ଲୋକଙ୍କୁ ଉଦ୍ଧାର କର । ମାନବିକତାକୁ ରକ୍ଷା କଲେ କୌଣସି ତୀର୍ଥଯାତ୍ରା କରିବା ଦରକାର ନାହିଁ । ଗୁରୁଜନମାନଙ୍କୁ ସେବା କଲେ ସ୍ୱର୍ଗ ଭୋଗ ଲାଭ ହୁଏ ।

ହିନ୍ଦୁ ଧର୍ମର ବିଶେଷତ୍ୱ ହେଲା ତା'ର ସହନଶୀଳତା, ଉଦାରତା ଓ ମହାନୁଭବତା । ତା'ର ପ୍ରତିଫଳନ ପୁରାଣରେ ପ୍ରତିଛବି ରୂପେ ଦେଖାଯାଏ ।

## ଜୀବନୀ

ଗଞ୍ଜାମ ଜିଲ୍ଲାର ଶାନ୍ତ ସଂସ୍କୃତି ମାଳିନୀ ସଭ୍ୟତାର ପୀଠସ୍ଥଳୀ ଋଷିକୁଲ୍ୟା ତଟିନୀ ତଟ ଅନତି ଦୂର ତହିଁର ଗ୍ରାମରେ ଓଡ଼ିଆ ନୃସିଂହ ପୁରାଣର ଲେଖକ ମହାକବି ବିପ୍ର ପୀତାମ୍ବର ଦାସ ୧୭୩୫ ଖ୍ରୀ:ଅ:ରେ ଜନ୍ମ ଗ୍ରହଣ କରିଥିଲେ । ସେ ଓଡ଼ିଶାର ରାଜା ବୀରକିଶୋର ଦେବ (୧୬୩୬—୧୭୭୩ ଖ୍ରୀ:ଅ:)ଙ୍କର ସମ ସାମୟିକ ଥିଲେ । ତାଙ୍କର ପିତାଙ୍କର ନାମ ଥିଲା ବାଲୁଙ୍କେଶ୍ୱର ଦାସ ଓ ପିତାମହଙ୍କ ନାମ ଲକ୍ଷ୍ମୀଧର ଦାସ । ପ୍ରପିତାମହ ନୀଳାମ୍ବର ଦାସ । ପୁତ୍ର ବଳଭଦ୍ର ଦାସ ଓ ଶ୍ରୀନିବାସ । ସେ ଯଦୁର୍ବେଦୀ କଣ୍ୱଶାଖାଗୋଷ୍ଠୀ ବ୍ରାହ୍ମଣ ଥିଲେ ।

ନିତ୍ୟ ନିତ୍ୟ ନଅଗଡ଼ ମଠରେ ଗାୟତ୍ରୀମନ୍ତ୍ର ଜପ କରୁଥିଲେ । ଖ୍ରୀଷ୍ଟୀୟ ପ୍ରଥମ ବା ଦ୍ୱିତୀୟ ଶତାବ୍ଦୀରେ ସଂସ୍କୃତରେ ନୃସିଂହ ପୁରାଣ ଲେଖା ହୋଇଥିବା ଅନୁମେୟ । ଏଥିରେ ୬୮ ସର୍ଗ ରହିଅଛି । ଓଡ଼ିଆରେ ଲେଖା ହୋଇଥିବା ଏ ପୁରାଣ ସଂସ୍କୃତର ଅନୁବାଦ ନୁହେ । ଏହି ଗ୍ରନ୍ଥକୁ କବି ୧୬୬୧ ଖ୍ରୀ:ଅ:ରେ ୨୭ ବର୍ଷ ବୟସରେ ରଚନା କରିଥିବା ଜଣାଯାଏ । ଏହା ସାତଗୋଟି ରତ୍ନାକରରେ ବିଭକ୍ତ । କବି ନିଜର କଳ୍ପନା ବଳରେ ଏତେ ବଡ ଗ୍ରନ୍ଥ ରଚନା କରି ଅମର ହୋଇଛନ୍ତି । ତାଙ୍କର ଲେଖାରୁ ଜଣାଯାଏ ସେ ସଂସ୍କୃତ ପଢ଼ି ନଥିଲେ ।

'ସଂସ୍କୃତ ବିଦ୍ୟା ମୋର କେବେହେଁ ନାହିଁ ପଢ଼ା
କେବଳ ପ୍ରାକୃତରେ କରେ ପଦ ଯୋଡ଼ା ।'

ତାଙ୍କର ଜୀବନ ଦୁଃଖମୟ ଥିଲା । ସେ ଖଣ୍ଡେ ପଡ଼ିଆ ଭୂମିରେ ଘରକରି ଅନ୍ନକଷ୍ଟରେ ଜୀବନଯାପନ କରୁଥିଲେ । ତାଙ୍କର ଅନ୍ୟ ଆଶ୍ରୟ କିଛି ନ ଥିଲା କି ଭାତ ବରତନ୍ କିଛି ଖଞ୍ଜା ନଥିଲା ।

'ବାର ଦ୍ୱାର ବୁଲି ମୋତେ ମିଳେ ଅବା ଯାହା
ଭାର୍ଯ୍ୟାକୁ ଆଦର ମୁହିଁ ଭୁଞ୍ଜେ ନିତି ତାହା
ମୋହଠାରୁ ହୀନଦୁଃଖୀ ସଂସାରେ କେ ନାହିଁ
ସବୁଙ୍କର ଆଶ୍ରା ତୁମ୍ଭେ ଅଟ ଭବଗ୍ରାହୀ ।'

ଇତିତ ବର୍ଣ୍ଣନାରେ ସେ ଚତୁର୍ଦ୍ଦଶାକ୍ଷର ବୃତ୍ତକୁ ଗ୍ରହଣ କରିଥିଲେ ।

## ଲେଖା

ଓଡ଼ିଆ ନୃସିଂହ ପୁରାଣ ଅତ୍ୟନ୍ତ ଲୋକପ୍ରିୟ । କବି ଗୋରଳାଙ୍କ କୃପାରୁ ନୃସିଂହ ପୁରାଣ ଲେଖିଥିବା କଥା ବହୁବାର ବ୍ୟକ୍ତ କରିଛନ୍ତି ।

ଏହାର ଭାଷା ଓ ଭଙ୍ଗୀ ଜନସାଧାରଣରେ ଆଦୃତ । ସେ ସନ୍ଧି-ବ୍ୟାଖ୍ୟାନକୁ ରମଣୀୟ କରି ନିଜର ପାଣ୍ଡିତ୍ୟ ପ୍ରକାଶ କରିଛନ୍ତି । ଏଥିରେ ବହୁ ଉପଦେଶ, ସାମାଜିକ ଆଚାର ବ୍ୟବହାର, ରୀତି, ନୀତି, ବାସ୍ତବ ଦୃଷ୍ଟି କୋଣରୁ ଫୁଟି ଉଠିଥିବା ଯୋଗୁଁ, ଲୋକେ ଭକ୍ତି-ପୂତ ଭାବେ ସମ୍ମାନ ଦେଇ ପଢ଼ନ୍ତି ଓ ଶୁଣନ୍ତି ।

ସାରଳାଙ୍କ ମହାଭାରତ, ବଳରାମଙ୍କ ରାମାୟଣ, ଓଡିଆ ହରି-ବଂଶ, ବିଭିନ୍ନ ପୁରାଣରୁ ଉପାଖ୍ୟାନ ସଂଗ୍ରହ କରି ସେ ନିଜର ଧୀଶକ୍ତି ବଳରେ ଏକ ସ୍ୱତନ୍ତ୍ର ପୁରାଣ ଲେଖିଛନ୍ତି । ମୌଳିକ କଳ୍ପନା, ତାତ୍ତ୍ୱିକ ବିଳକ୍ଷଣତା, ଚରିତ୍ର ଚିତ୍ରଣ ଓ ଘଟଣାବଳୀର ବିନ୍ୟାସ ଓ ବର୍ଣ୍ଣନା ଶୈଳୀରେ ତାଙ୍କର ନିଜସ୍ୱ ରହିଛି ।

'କୋଟିଏ ଗ୍ରନ୍ଥ ବାଛୁଣି ଲେଖିଲି କାହିଁକି' ।

କବିଙ୍କ ସମୟ ଆଗରୁ ଓଡ଼ିଆ ଭାଷାରେ ବହୁ ପୁରାଣ ରଚିତ ହୋଇ ଉପଦେଶ, ସାମାଜିକ ବ୍ୟବହାର, ରୀତିନୀତି ଲୋକମୁଖରେ ପ୍ରଚଳିତ ହୋଇଥିଲି । ଏହାର ପ୍ରଭାବ ଫଳରେ ଜାତିର ଧାର୍ମିକ, ନୈତିକ ଓ ସାମାଜିକ ମେରୁଦଣ୍ଡ ସବଳ ହେବାରେ ବିଶେଷ ସମର୍ଥ ହୋଇ ପାରିଥିଲା ।

କବିଙ୍କ ଉପରେ ବ୍ରହ୍ମ ସମ୍ପ୍ରଦାୟ ବୈଷ୍ଣବ ଧର୍ମ ପ୍ରଭାବ ପଡିଥିବା ଅନୁମେୟ ସେ ନିଜର ସ୍ୱଭାବ ସୁଲଭ ଦୈନ୍ୟ ପ୍ରକାଶ କରିଛନ୍ତି ।

ସାଧୁ ସୁପଣ୍ଡିତ ସୁଜନ ପାଦତଳେ<br>
ସର୍ବଦା ସେବା ମୋହର ରହୁ ଅବହେଳେ ।'

× × ×

'ହରି କାର୍ତ୍ତନ ବିପ୍ରଙ୍କ ଚରଣ ସେବାକୁ<br>
ଧ୍ୟାନ କରୁଛି ସଂସାର ସିନ୍ଧୁ ତରିବାକୁ'

× × ×

'କେବଳ ଶ୍ରୀହରି ନାମ ସଂସାରକୁ ମୂଳ
ଆଉ ଯେତେ କଥାମାନ ସବୁହିଁ ବିଫଳ'

## ଜାତୀୟତା

ତାଙ୍କର ଲେଖାରେ ଓଡ଼ିଆ ଜାତିର ପ୍ରକୃତ ବର୍ଣ୍ଣନା, ସମାଜର ଚିତ୍ର, ନାରୀ ଚରିତ୍ର ଚିତ୍ରଣ, ଯୁଦ୍ଧ ବର୍ଣ୍ଣନା, ରାଜ ଧର୍ମ, ଶାସନ ନୀତି, ଆଗୃହ ବ୍ୟବହାର ଲେଖିଛନ୍ତି । ତାଙ୍କର ନାୟିକା ଓଡ଼ିଆଣୀ ବେଶରେ ମଣ୍ଡିତ । ଓଡ଼ିଶାର ଖାଦ୍ୟ ଖାଣ୍ଟିଦୁଧ, ସର, ଛେନାକାନ୍ତି, ସାଚପଣା, ନବାତ, କୋରା, ଶିଙ୍ଗାରଖଇ, ନଡ଼ିଆପାଣି ଝିଲପି, ଆରିଶା, ଲଡ୍ଡୁ, ଖଣ୍ଡପୁରୀ, ପାକୁଡ଼, ନାଡ଼ୁ, ରସହଂସ କେଳି, ପାରି-ଜାତକ ବିଷୟ ଉଲ୍ଲେଖ କରିଛନ୍ତି । ତୀର୍ଥ ମାହାତ୍ମ୍ୟରେ ଓଡ଼ିଶାର ନଦୀ କଥା ଲେଖିଛନ୍ତି । ଓଡ଼ିଶାର ରଜା, ବଡ଼ ଠାକୁର, ମହାପ୍ରସାଦ, ଦ୍ୱାଦଶ ଯାତ୍ରା ମାହାତ୍ମ୍ୟ ଲେଖିଛନ୍ତି ।

## ରାଜ୍ୟ ଶାସନ

ଜମି ସଞ୍ଚାକରି ରାଜସ୍ୱନେବା, ରାଜ୍ୟ ପରିଚାଳନାରେ ରାଜା ପ୍ରଜାମାନଙ୍କୁ ପୁତ୍ରରୂପେ ପାଳିବା, ଜଳସେଚନ ଦ୍ୱାରା କୃଷିର ଉନ୍ନତି କରିବା, ଉଗର ଗୁଇନ୍ଦା ବାହାରରୁ ଠିକଣଖି ରାଜ୍ୟଖବର ନେଇ କାମ କରିବା, ଦୁର୍ଭିକ୍ଷ କାଳରେ କୃଷିରୁ ଭାଗ ନ ନେଇ ପ୍ରଜା ପାଳିବା, ଜମିରୁ ଆଦାୟର କିଛି ଧନ ଗ୍ରାମ କୋଠରେ ରଖିବ, । ଚଷାକୁ ଦର-କାର ବେଳେ ବିହନ ଦେବା, ବିଶ୍ୱାସୀ ବୃଦ୍ଧ ଲୋକଙ୍କୁ ଦ୍ୱାରପାଳ ରଖିବା, ସେବାକାରୀ ଲୋକଙ୍କୁ ଠିକ୍ ସମୟରେ ଦରମା ଦେବା,

ବିଶ୍ୱାସୀ ଲୋକକୁ ଉପହାର ଦେବା, ନିଜ ଅର୍ଜିତ ଧନରୁ ଆଠଭାଗରେ ପରିବାର ପାଳିବା, ଏକଭାଗ ପୁଣ୍ୟ କର୍ମରେ ନିୟୋଗ କରିବା ଓ ଏକ ଭାଗ ଗୁରୁଜନମାନଙ୍କୁ ଦେବା । ନିରାଶ୍ରୟ ବ୍ୟକ୍ତିଙ୍କୁ ସଦାବର୍ତ୍ତ ଦାନ କରିବା । ପରଧନ, ପରସ୍ତ୍ରୀ ଅପହରଣକାରୀ ଓ ଦୋଷୀଙ୍କୁ ବିଗୃହ କରି ଦଣ୍ଡଦେବା ଆଦି ତାଙ୍କର ଚରିତ୍ରର ସୁଗୁଣ ଥିଲା ।

ଜୀବହତ୍ୟା, ପଶୁପକ୍ଷୀ. ଶିକାର, ବନ୍ଦୀଶାଳୀରେ ମାଛଧରିବା, ଠକିବା, ମିଛ କହିବା, ଅପମିଶ୍ରଣ କରିବା କଥାକୁ ସେ ନିନ୍ଦା କରିଛନ୍ତି ମାତା, ପିତା ଓ ଗୁରୁଙ୍କୁ ଯେଉଁମାନେ ଭକ୍ତିସେବା ନ କରନ୍ତି ସେମାନେ ନରକଗାମୀ ହୁଅନ୍ତି ବୋଲି ଚେତାଇ ଦେଇଛନ୍ତି ।

କବି ଶାରଳାଙ୍କ କୃପାରୁ ନୃସିଂହ ପୁରାଣ ଲେଖିବାପାଇଁ ପ୍ରେରଣା ତନ୍ମୟତା ପାଇଥିଲେ । ଗଞ୍ଜାମର ତାରାତାରିଣୀ ପୀଠରେ ଦେବୀ ଆରାଧନା ଓ ତନ୍ତ୍ର ପୂଜା କରିବା କଥା ଜଣାଯାଏ । ତାଙ୍କର ଚରିତ୍ର ନିର୍ମଳ ଥିଲା,ସେ ସରଳ ଓ ନମ୍ର ଥିଲେ । ସେ ଅତ୍ୟାଚାରୀ,ଅନ୍ୟା- ୟ କରୁଥିବା ରାଜାମାନଙ୍କ ବିରୋଧ କରୁଥିଲେ । ତାଙ୍କର ଲକ୍ଷ୍ୟଥିଲା ଦେଶରେ ନିର୍ମଳ ଶାସନ ପରିଚାଳନା ହେଉ ।

ଅନୁମାନ ହୁଏ ସେ ଚୌରାଅଶୀ ବର୍ଷ ବୟସରେ ଇହ- ଲୀଳା ସମ୍ବରଣ କରିଥିଲେ ।



## ଭକ୍ତକବି ବିପ୍ର ରାମଦାସ

ଜଗତରେ ଭାଷାର ମାଧ୍ୟମରେ କେବଳ ଜାଗରଣ ଆସିଥାଏ । ଯଦି କୌଣସି ଜାତି ଉପରକୁ ଉଠିଛି କେବଳ ଏଥିପାଇଁ । ଯାହାର ଭାଷା ଦୁର୍ବଳ ତା'ର ଉଠିବାର ଆଶା ଅଳ୍ପ । ଯେଉଁ ଜାତି ପ୍ରତିଭାର ପୂଜା କରିବା ଜାଣେ ନାହିଁ, ସେ ପ୍ରଗତି ହାସଲ କରିପାରେ ନାହିଁ ।

ଗୌଡ଼ୀୟ ଧର୍ମରେ ଏକମାତ୍ର ଭକ୍ତି ଓ ଆତ୍ମ ନିବେଦନ ହିଁ ସାରମର୍ମ ଥିଲା । ଶ୍ରୀ ଚୈତନ୍ୟଙ୍କର ପ୍ରଚ୍ଛରିତ ପ୍ରେମଧର୍ମରେ ଭକ୍ତିକୁ ଶୃଙ୍ଗାର ରସ ଦ୍ୱାରା ଅନୁପ୍ରାଣିତ କରିଥିଲେ । ଏହା ଫଳରେ ବୈଷ୍ଣବ ସାହିତ୍ୟ, ଭାରତୀୟ ସାହିତ୍ୟକୁ ମଧ୍ୟ ବହୁ ପରିମାଣରେ ପରିପୁଷ୍ଟ କରିଥିଲା । ଷୋଡ଼ଶ ଶତାବ୍ଦୀଠାରୁ ଊନବିଂଶ ଶତାବ୍ଦୀ ପର୍ଯ୍ୟନ୍ତ ପଞ୍ଚସଖା-ଆଧ୍ୟାତ୍ମିକ ଭାବନା ଓଡ଼ିଆ ସାହିତ୍ୟରେ ବିକଶିତ ହୋଇ ଉଠିଥିଲା ।

କବି ହେଉଛି ଯେ କୌଣସି ଦେଶ ଓ ଜାତିର ଏକ ସଚେତନ ସତ୍ତା । ତାଙ୍କର ସୃଷ୍ଟି କୌଣସି ଗୋଟିଏ ଦେଶର ଭୌଗଳିକ ସୀମା ଭିତରେ ଆବଦ୍ଧ ହୋଇ ରହି ପାରେ ନାହିଁ । ତାହା ବିସ୍ତାରିତ ହୋଇ-ଥାଏ ଜୀବନ୍ତ ପରିପ୍ରକାଶରେ ।

### ଐତିହାସିକ ପୃଷ୍ଠଭୂମି

ଓଡ଼ିଶା ଇତିହାସରେ ପଞ୍ଚଦଶ ଶତାବ୍ଦୀର ମଧ୍ୟଭାଗ ଠାରୁ ସପ୍ତଦଶ ଶତାବ୍ଦୀର ମଧ୍ୟଭାଗ ପର୍ଯ୍ୟନ୍ତ ବିପ୍ଳବ, ଲୁଣ୍ଠନ, ଅତ୍ୟାଚାର

ଓ ରକ୍ତପାତ ଦେଖା ଦେଇଥିଲା । ଗଜପତି ପ୍ରତାପ ରୁଦ୍ରଦେବ ୧୫୩୩ ଖ୍ରୀ:ଅ:ରେ ସ୍ୱର୍ଗାରୋହଣ କଲେ । ଓଡ଼ିଶାର ସୂର୍ଯ୍ୟବଂଶର ପତନ ହେଲା । ତାଙ୍କପରେ ପୁତ୍ର କାଳୁଆଦେବ, ତା'ପରେ କଖାରୁଆ ଦେବ ରାଜା ହେଲେ । ଏମାନେ ଦୁର୍ବଳ ଥିବା ଯୋଗୁଁ ପ୍ରଧାନମନ୍ତ୍ରୀ ସେନାପତି ଗୋବିନ୍ଦ ବିଦ୍ୟାଧର ଏମାନଙ୍କୁ ହତ୍ୟାକରି ୧୫୪୧ ଖ୍ରୀ:ଅ:-ରେ ସିଂହାସନ ଅଧିକାର କରି ଭୋଇବଂଶ ପ୍ରତିଷ୍ଠା କଲେ । ରାଜା ହେବା ପରେ ସୁବର୍ଣ୍ଣ କେଶରୀ ଗୋବିନ୍ଦଦେବ ନାମରେ ପରିଚିତ ହେଲେ ।

ଏହାଙ୍କ ସମୟରେ ଦାକ୍ଷିଣାତ୍ୟର ସାମ୍ରାଜ୍ୟ ଭାଙ୍ଗି ପଡ଼ିଲା ଓ ଗୋଦାବରୀ ପାରରୁ ହଟିଆସି ସୀମାଞ୍ଚଳ କଟକରେ ରହିଲା । ଗୋବିନ୍ଦ ବିଦ୍ୟାଧରଙ୍କ ବିଶ୍ୱାସଘାତକତା ପାଇଁ ତାଙ୍କୁ ପ୍ରାୟଶ୍ଚିତ କରିବାକୁ ହୋଇଥିଲା । ତାଙ୍କର ସେନାପତି ରଘୁଭଞ୍ଜ ଛୋଟରାୟ ତାଙ୍କ ବିରୁଦ୍ଧରେ ବିଦ୍ରୋହ କଲେ । ଏହା ଦମନ ନ କରିପାରିବା ଯୋଗୁଁ ଗୋବିନ୍ଦ ବିଦ୍ୟାଧରଙ୍କ ସମୟରେ ଓଡ଼ିଶାର କ୍ଷୁଦ୍ର କ୍ଷୁଦ୍ର ସ୍ୱାଧୀନ ରାଜ୍ୟମାନ ମୁଣ୍ଡ ଟେକି ଉଠିଲେ । ସେ ୧୫୪୯ ଖ୍ରୀ:ଅ:ରେ ଦେହ ତ୍ୟାଗ କଲେ । ଗୋବିନ୍ଦ ବିଦ୍ୟାଧରଙ୍କ ପୁତ୍ର ଚକ୍ର ପ୍ରତାପଦେବ ରାଜା ହେଲେ ଓ ୧୫୫୭ରେ ପ୍ରାଣତ୍ୟାଗ କଲେ । ଚକ୍ର ପ୍ରତାପଦେବଙ୍କ ପରେ ତାଙ୍କ ପୁତ୍ର ନରସିଂହ ଜେନା ରାଜା ହେଲେ । ଦୁଇମାସ ପରେ ଚାଳୁକ୍ୟବଂଶର ସେନାପତି ମୁକୁନ୍ଦ ହରିଚନ୍ଦନ ନରସିଂହ ଜେନାଙ୍କୁ ହତ୍ୟା କଲେ । ୧୫୫୭ ଠାରୁ ୧୫୫୯ ଖ୍ରୀ:ଅ: ପର୍ଯ୍ୟନ୍ତ ଓଡ଼ିଶାର ସିଂହାସନ ପାଇଁ ମୁକୁନ୍ଦଦେବ ଓ ଚକ୍ର ପ୍ରତାପଦେବଙ୍କ ପୁତ୍ର ରଘୁରାମ ଓ ସମର୍ଥକ ଦନାଇ ବିଦ୍ୟାଧରଙ୍କୁ ମୁକୁନ୍ଦଦେବ ସଂଘର୍ଷରେ ଧ୍ୱଂସକରି ୧୫୫୯ରେ ସିଂହାସନ ଅଧିକାର କଲେ । ସେ ରଘୁଭଞ୍ଜ ଛୋଟରାୟଙ୍କୁ

ବନ୍ଦୀ କରିଥିଲେ । ସେ ଜାତିରେ ତେଲେଙ୍ଗା ଥିବାରୁ ତାଙ୍କୁ ତେଲେଙ୍ଗା ମୁକୁନ୍ଦଦେବ ବୋଲି କହନ୍ତି । ସେ ଜଣେ ବିଖ୍ୟାତ ସେନାପତି ଥିଲେ ।

୧୫୬୦ ଖ୍ରୀ:ଅ:ରେ ବଙ୍ଗ ସୁଲତାନ ଗ୍ୟାସଉଦ୍ଦିନ ଓଡ଼ିଶା ଆକ୍ରମଣ କରିବା ଯୋଗୁଁ ତାଙ୍କୁ ପରାସ୍ତ କରି ବିଜୟର ଚିହ୍ନ ସ୍ୱରୂପ ହୁଗୁଲି ନଦୀ ତଟରେ ତ୍ରିବେଣୀ ଘାଟ ନିର୍ମାଣ କରିଥିଲେ । ସେ ମଧ୍ୟ ବାରବାଟୀ ଦୁର୍ଗକୁ ନୂତନ ଧରଣରେ ନିର୍ମାଣ କରିଥିଲେ । ତାଙ୍କର ଘୋର ଦୁର୍ଦ୍ଦିନରେ ମୁସଲମାନଙ୍କ ସାହାଯ୍ୟରେ ରାଜା ରାମଚନ୍ଦ୍ର ଦେବ ସାରଙ୍ଗ ଗଡ଼ର ରାଜା ନିଜକୁ ଓଡ଼ିଶାର ରାଜା ବୋଲି ଘୋଷଣାକଲେ । ୧୫୬୮ ଖ୍ରୀ:ଅ:ରେ ବାଲେଶ୍ୱର ଜିଲ୍ଲାର ଗୋହିରା ଟିକିରିଠାରେ ମୁକୁନ୍ଦ ଦେବ ପ୍ରାଣତ୍ୟାଗ କଲେ । ତା'ପରେ ରାମଚନ୍ଦ୍ର ଦେବ ମଧ୍ୟ ମୁସଲମାନଙ୍କ ଦ୍ୱାରା ନିହତ ହେଲେ । ସୁଲେଇମାନଙ୍କର କୁଖ୍ୟାତ ସେନାପତି କଳାପାହାଡ଼ ଓଡ଼ିଶାର କୀର୍ତ୍ତି ଧ୍ୱଂସ କରିଥିଲା । ଏହାପରେ ଓଡ଼ିଶା ବଙ୍ଗ ସୁଲତାନ ସୁଲେମାନଙ୍କ ରାଣୀଙ୍କର ଅଧୀନସ୍ଥ ହେଲା । ଓଡ଼ିଶାର ଶେଷ ସ୍ୱାଧୀନ ମହାରାଜା ମୁକୁନ୍ଦଦେବଙ୍କ ମୃତ୍ୟୁପରେ ଓଡ଼ିଶାର ଗୌରବ ରବି ଅସ୍ତମିତ ହେଲା । ସେ ମାତ୍ର ୯ ବର୍ଷ ରାଜତ୍ୱ କରିଥିଲେ ।

ଆଫଗାନ ଓ ମୋଗଲମାନଙ୍କ ମଧ୍ୟରେ ୧୫୭୪ ଖ୍ରୀ ଅ: ଠାରୁ ୧୫୯୨ ଖ୍ରୀ:ଅ: ପର୍ଯ୍ୟନ୍ତ ଘୋର ସଂଘର୍ଷ ଲାଗି ରହିଲା । ୧୫୭୪ଖ୍ରୀ:ଅ: ରେ ମୋଗଲମାନେ ଓଡ଼ିଶା ଅଧିକାର କଲେ ମଧ୍ୟ ୧୭୫୧ ଖ୍ରୀ:ଅ: ବେଳକୁ ଲୋପ ପାଇଲା । ୧୭୫୧ ଖ୍ରୀ:ଅ:ରେ ଚିଲିକା ଠାରୁ ଦକ୍ଷିଣ ଓଡ଼ିଶା, କୋରାପୁଟ, ଗଞ୍ଜାମ, ଫୁଲବାଣୀ ଗୋଲକୁଣ୍ଡାର କୁତବ ସାହି ଶାସକଙ୍କ ଦ୍ୱାରା ଅଧିକୃତ ହେଲା । ୧୭୫୧ ଖ୍ରୀ:ଅ:ରେ ମରହଟ୍ଟା

ସେନାପତି ରଘୁଜୀ ଭୋନସଲ ବଙ୍ଗ, ବିହାର ଓ ଓଡ଼ିଶାର ଶାସକ ଆଲବର୍ଦ୍ଦି ଖାଁଙ୍କ ଠାରୁ ସନ୍ଧିଦ୍ୱାରା ଅଧିକାର କରିଥିଲେ । ୧୮୦୩ ଖ୍ରୀ:ଅ: ରେ ଇଂରେଜମାନେ ମରହଟ୍ଟାମାନଙ୍କୁ ପରାସ୍ତ କରି ଚୁକ୍ତି ଫଳରେ ଓଡ଼ିଶା ଦଖଲ କଲେ ।

୧୭୬୬ ଖ୍ରୀ:ଅ:ରେ ଇଂରେଜମାନେ ଗଞ୍ଜାମ, କୋରାପୁଟ, ଉତ୍ତର ସରକାର ନିଜାମଙ୍କଠାରୁ ସାମରିକ ସାହାଯ୍ୟ ବଦଳରେ ଦାନ-ସୂତ୍ରରେ ପାଇଥିଲେ । ୧୭୯୯ ଖ୍ରୀ:ଅ:ରେ ଗଞ୍ଜାମ ଜମିଦାରୀ ଅଧିକାର କରିବା ପାଇଁ ଚେଷ୍ଟାକରି ଲୋକମାନଙ୍କ ଉପରେ ଅକଥନୀୟ ଅତ୍ୟା-ଚାର ଓ କରପୀଡ଼ାରେ ସନ୍ତୋଷ ହୋଇଥିଲେ । ୧୯୮୦ ଖ୍ରୀ:ଅ:ର ଦୁର୍ଭିକ୍ଷର କରାଳଗ୍ରାସ ଲୋକମାନଙ୍କୁ ଗ୍ରାସ କରିଥିଲା । ତା ସଙ୍ଗେ ଆଫଗାନ ମାନଙ୍କ ଅତ୍ୟାଚାର, ମୋଗଲମାନଙ୍କ ହିନ୍ଦୁ ବିଦ୍ୱେଷନୀତି, ମରହଟ୍ଟାମାନଙ୍କ ଲୁଣ୍ଠନ ଓ ଅନ୍ତଃ ବିବାଦ, ଇଂରେଜମାନଙ୍କର ଅମାନୁ-ଷିକ ନିପୀଡ଼ନ ଓ କୂଟନୈତିକ ଅନୁପ୍ରବେଶ ଯୋଗୁଁ ଓଡ଼ିଶାବାସୀ-ଙ୍କର ନୈତିକ ଓ ଆର୍ଥିକ ମେରୁଦଣ୍ଡ ଭାଙ୍ଗି ପଡ଼ିଥିଲା । ଓଡ଼ିଶାବାସୀ ଅତ୍ୟନ୍ତ ଦୟନୀୟ ଅବସ୍ଥାରେ ସଂତ୍ରସ୍ତ ହୋଇ ଉଠିଥିଲେ ।

ଓଡ଼ିଶାର ପଞ୍ଚସଖାମାନେ ପୁରାଣ ଜରିଆରେ ଶାନ୍ତିପାଇଁ ଧର୍ମ ପ୍ରଚାର କରିଥିଲେ । ପ୍ରତାପରୁଦ୍ର ଦେବଙ୍କ ସମୟରେ (୧୪୯୭-୧୫୩୪) ଓଡ଼ିଶାରେ ଚୈତନ୍ୟ ବୈଷ୍ଣବ ଧର୍ମ ପ୍ରଚାର କରିବା ଯୋଗୁଁ ରଣ-ରଙ୍ଗା ଓଡ଼ିଶାବାସୀ ନିଜର ଯୁଦ୍ଧବିଦ୍ୟା ଓ ବୀରତ୍ୱକୁ ପାଶୋରି ଦେଇ ଥିଲେ । ଏହି ବୈଷ୍ଣବ ଧର୍ମର ପ୍ରଭାବ କବିଙ୍କ ଉପରେ ବିଶେଷ ଭାବେ ପଡ଼ିଥିଲା ।

## ଜୀବନୀ

ଭକ୍ତ ରାମଦାସ ଓଡ଼ିଶାର ଗଞ୍ଜାମ ଜିଲ୍ଲା ମହୁରୀ ରାଜ୍ୟ ଊଦ୍ଦୁରୁ ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । 'ମହୁରୀ ରାଜ୍ୟ ଊଦ୍ଦୁରୁଗ୍ରାମ, ସେ ଗ୍ରାମେ ଅଟେ ମୋ ବିଶ୍ରାମ' ।

ଏଠାରେ ପ୍ରସିଦ୍ଧ ମୁକ୍ତେଶ୍ୱର ମଠର ଅଛି । କବି ଏହି ମଠରର ଅଧିକାରୀ ଏବଂ ବ୍ରାହ୍ମଣ ମାନଙ୍କର ଦୀକ୍ଷାଗୁରୁ ଥିଲେ । ଏହାଙ୍କୁ ଶିଷ୍ୟମାନେ ଗୋସ୍ୱାମୀ ମହାପ୍ରଭୁ କହୁଥାନ୍ତି । ସେ ଏହି ଶ୍ରେଣୀର ବୈରାଗୀ ଗୋଷ୍ଠୀ ଯଜୁର୍ବେଦୀ ରାମାନନ୍ଦ ସଂପ୍ରଦାୟ ହଳୁଆ ବ୍ରାହ୍ମଣ ଥିଲେ । କବି ମଠ ଅଧିକାରୀ ଥାଇ ମଧ୍ୟ ପିତାଙ୍କ ପରି ଗ୍ରାମ କାର୍ଯ୍ୟ ଥିଲେ । ପିତାଙ୍କ ନାମ ଲକ୍ଷ୍ମଣ ଦାସ । 'ସମ୍ପୂର୍ଣ୍ଣ ହେଲା ଏ ଚରିତ୍ର, କହଇ ଲକ୍ଷ୍ମଣ ସୁତ' । ପିତାମହଙ୍କ ନାମ କୃଷ୍ଣ ଦାସ ଓ ପୁତ୍ର ନାମ ମଧୁସୂଦନ । ଗୁରୁଙ୍କ ନାମ ଗଦାଧର ଦାସ । ସେ ଊଦ୍ଦୁରୁରେ ଗୋଟିଏ ସଂସ୍କୃତଟୋଲ ସ୍ଥାପନ କରି ଛାତ୍ରମାନଙ୍କୁ କଣ୍ଠୁଦାନ ଶିକ୍ଷା ଦେଉଥିଲେ ।

କବି ନିଜେ ବିଶେଷ ପାଠସାଠ କରି ଜାଣି ନଥିଲେ । ତାଙ୍କର ସଂସ୍କୃତରେ ମଧ୍ୟ ପାଣ୍ଡିତ୍ୟ ନଥିଲା । ଓଡ଼ିଆ ଭାଗବତ ପଢ଼ିବା ଓ ଖେଦା ଲେଖିବାରେ ବିଶେଷ ଆଗ୍ରହୀ ଥିଲେ । ତାଙ୍କର ବଙ୍ଗଳା ଭାଷା ଆୟତ୍ତ ଥିଲା । ବହୁଦିନ ଧରି ତୀର୍ଥାଟନ କରି ବିଦେଶରେ ସାଧୁ ସନ୍ଥ-ମାନଙ୍କର ସାହଚର୍ଯ୍ୟ ଲାଭକରି ବହୁତ ଜ୍ଞାନ ଅର୍ଜନ କରି ଓଡ଼ିଆରେ ସରଳ ଭାଷାରେ ଭକ୍ତମାନଙ୍କର କାହାଣୀ ଲେଖିବା ପାଇଁ ବିଶେଷ ଆଗ୍ରହୀ ହୋଇଥିଲେ ।

## ଜନ୍ମ ଓ ରଚନା

କବିଙ୍କର ଜନ୍ମ ବିଷୟ କୌଣସି ସର୍ବବାଦୀ ସମ୍ମତ ଦିନ ଠିକ୍ ହୋଇନାହିଁ । ସେ ଖୋର୍ଦ୍ଧା ରାଜା ବୀରକେଶରୀ ଦେବ (୧୭୩୬-୧୭୯୩)ଙ୍କ ସମସାମୟିକ ଥିଲେ । ମାତ୍ର କବିଙ୍କର ଜନ୍ମ ଅଷ୍ଟାଦଶ ଖ୍ରୀଷ୍ଟାବ୍ଦର ଚତୁର୍ଥ ଦଶକର ପ୍ରଥମ ଭାଗରେ ଅର୍ଥାତ୍ ୧୭୩୫ ଖ୍ରୀ:ଅ:ରେ ହୋଇଥିବା ଅନୁମାନ କରାଯାଏ । ତେବେ ତାଙ୍କର ବିବାହ ୧୭୫୫ ଖ୍ରୀ:ଅ:ରେ ହୋଇଥିବ ।

କଥିତ ଅଛି ଯେ ତାଙ୍କର ୧୭୫୭ ଖ୍ରୀ.ଅ:ରେ ଗୋଟିଏ ପୁତ୍ର ସନ୍ତାନ ହୋଇଥିଲା । ପୁତ୍ରକୁ ୫ବର୍ଷ ବୟସରେ ଶୋକ ସାଗରରେ ଭସାଇ ୧୭୬୧ ଖ୍ରୀ.ଅ.ରେ ପତିବ୍ରତା, ଅତିଥି ପରାୟଣା କବିଙ୍କର ସ୍ତ୍ରୀ ଇହଧାମ ତ୍ୟାଗ କରିଥିଲେ । ସେଥିରେ ସେ ମର୍ମାହତ ହୋଇ ଦୀର୍ଘ ଦଶବର୍ଷ କାଳ ନାନାସ୍ଥ ତୀର୍ଥ ଭ୍ରମଣ କରି ନିଜଗ୍ରାମକୁ ଆସିବା ପରେ 'ଦାର୍ଢ୍ୟତା ଭକ୍ତି' ପ୍ରଥମରେ ୧୭୭୦ଖ୍ରୀ:ଅ:ରେ ରଚନା କଲେ । ପରେ ୧୭୯୭ ଖ୍ରୀ:ଅ:ରେ ଦ୍ୱିତୀୟ ଭାଗ ରଚନା କରିବା ମନେହୁଏ ।

ତାଙ୍କର ଜୀବନ ପ୍ରାଚୁର୍ଯ୍ୟ ଭିତରେ ବଢ଼ିନଥିଲା । ସେ ଲେଖିଛନ୍ତି, 'ନାହିଁ ମୋର ବାଡ଼ିବୃତ୍ତି, ଭରସା ଲକ୍ଷ୍ମୀଦେବୀ ପତି' ।

## ରଚନାବଳୀ

କବି 'ଦାର୍ଢ୍ୟତା ଭକ୍ତି' ଓ 'ରସାମୃତ' ଗ୍ରନ୍ଥ ରଚନା କରିଥିଲେ । ମାତ୍ର ତାଙ୍କର ରାମରସାମୃତ ଗ୍ରନ୍ଥର ପାଣ୍ଡୁଲିପି ଲୋକ-ଲୋଚନକୁ ଆସିନାହିଁ ।

ସେହି ସମୟ ବେଳକୁ ଓଡ଼ିଶାରେ ଜଗନ୍ନାଥ ଦାସଙ୍କର ନବାକ୍ଷରୀ ଛନ୍ଦରେ 'ଭାଗବତ' ବହୁତ ଆଦର ଲାଭ କରିଥିଲା । ସେଥିପାଇଁ ସେ 'ଦାର୍ଢ୍ୟତା ଭକ୍ତି'ରେ ଗୋଟିଏ ଗୋଟିଏ ଭକ୍ତ ଜୀବନୀ ନବାକ୍ଷରୀ ଛନ୍ଦରେ ଲେଖି କାଳଜୟୀ ହୋଇଛନ୍ତି । ଏହା ଭକ୍ତମାନଙ୍କ ନିଛକ ସରଳ କାହାଣୀ । କବିଙ୍କର ଭାଷା କାନ୍ତ କୋମଳ ସରଳ ଓ ସୁବୋଧ ଯୋଗୁଁ ପଣ୍ଡିତ୍ୟଁ । ପାଠକମାନଙ୍କ ମନଗହନ ତଳେ ଗଭୀର ଚେତନା ଜାଗ୍ରତ କରିଛି । ସେଥିପାଇଁ ଏହା ଓଡ଼ିଶାରେ ବିଶିଷ୍ଟ ସ୍ଥାନ ଅଧିକାର କରିଛି ।

ସେ ଏଥିରେ ବହୁତ କିମ୍ବଦନ୍ତୀ ଲିପିବଦ୍ଧ କରିଛନ୍ତି । ଏହା ସଙ୍ଗେ ସଙ୍ଗେ ଏଥିରେ ମଧ୍ୟ ଅନେକ ଓଡ଼ିଶାର ଐତିହାସିକ ରାଜା, ମନ୍ତ୍ରୀମାନଙ୍କର ଯଥା ବଡଠାକୁର, ରାଜା କପିଳେନ୍ଦ୍ର ଦେବ, ପୁରୁଷୋତ୍ତମଦେବ, ପ୍ରତାପରୁଦ୍ର ଦେବ ପ୍ରଭୃତିଙ୍କର ଚରିତ ବର୍ଣ୍ଣନା କରିଛନ୍ତି ।

କବିଙ୍କର ଭାଷା ସରଳ, ରସାଳ, ବର୍ଣ୍ଣନା ଶୃଙ୍ଖଳାମୟ ଓ ନାନା ଉପମାରେ ପରିଶୋଭିତ । ସାଲବେଗଙ୍କ ମାତାଙ୍କର ରୂପ ବର୍ଣ୍ଣନରେ ଲେଖିଛନ୍ତି —

ଚମ୍ପକ ପୁଷ୍ପ ପରି କାନ୍ତି । ମୁକୁତା ଶ୍ରେଣୀ ଦନ୍ତପନ୍ତି ।
ସୁନାସା ସୁନ୍ଦର କପାଳ । ବଦନ ଚନ୍ଦ୍ରମା ମଣ୍ଡଳ ।
ନେତ୍ର କୁରଙ୍ଗ ଶୋଭା ଜିଣି । ଅପୂର୍ବ ଭଙ୍ଗିମା ଗୃହିଣୀ ।
ଅଞ୍ଜନ ବନ କେଶ ଆଭା । ବାହୁ ଯୁଗଳ ଦିବ୍ୟ ଶୋଭା ।
ହୃଦୟ ଭାଗ ଅତି ଉଚ୍ଚ । ଶ୍ରୀଫଳ ଜିଣି ବେନି କୁଚ ।
କଟି କ୍ଷୀଣତା କହି ନୋହେ । ଶୋଭାରେ ଜନମନ ମୋହେ ।

## ରଚନା କାଳ

ଅନେକ ସମାଲୋଚକଙ୍କ ମତରେ ତାଙ୍କର ପ୍ରଥମ ଲେଖା ୨୫ ଅଧ୍ୟାୟ—ଯଥା ବଳରାଜା, ହରିଶ୍ଚନ୍ଦ୍ର ରାଜା, କର୍ଣ୍ଣ ରାଜା, ଦୀନବନ୍ଧୁ ଦାସ, ଦାମୋଦର ଦାସ, ବିଶ୍ୱମ୍ଭର ଦାସ, ରାମଦାସ, ରଘୁ ଅରକ୍ଷିତ (କ), ନୀଳାମ୍ବର ଦାସ, ରଘୁ ବେହେରା, ଗଙ୍ଗାଧର ଦାସ, ବନ୍ଧୁ ମହାନ୍ତି, ବଳରାମ ଦାସ, ଜଗନ୍ନାଥ ଦାସ, ମାଧବାଚାର୍ଯ୍ୟ, କବୀର, ମଣିଦାସ, କୃଷ୍ଣଦାସ, ତଳଛ ମହାପାତ୍ର, ଅଞ୍ଜନା ଓ ମାଧନା, ଗୌରି-ଚନ୍ଦ୍ର, ଗଡପତି ଭକ୍ତ, ଅନନ୍ତା ଶବର, ମେଲଛ ଇତ୍ୟାଦି ୧୭୬୫ ଖ୍ରୀ:ଅ:ରେ ସମ୍ପୂର୍ଣ୍ଣ ହୋଇଥିଲା ।

'ସମ୍ପୂର୍ଣ୍ଣ ହେଲା ଏ ଚରିତ, କହଇ ଲକ୍ଷ୍ମଣ ସୁତ' .
'ପ୍ରଥମ ପ୍ରବନ୍ଧ ପଚିଶ, ଅଧ୍ୟାରେ ହୋଇଥିଲା ଶେଷ' ।

ପରେ ୩୨ ବର୍ଷ ପରେ ଆଉ ୨୫ ଗୋଟି ଅଧ୍ୟାୟ ୧୭୯୭ ଖ୍ରୀ:ଅ:ରେ ଶେଷ ହୋଇଅଛି । 'ତହିଁ ବରଷ ସମ୍ବତ୍ସର, ଉତ୍ତାରୁ ସାଧୁ ମାନଙ୍କର' । 'କୃପାରୁ ପୁଣି ପଞ୍ଚବିଂଶ, ଅଧ୍ୟାରେ ଦାର୍ଢ୍ୟତା ଭକ୍ତିରସ' 'ଦୁଇ ପ୍ରବନ୍ଧ ମିଶିବାରେ, ସମ୍ପୂର୍ଣ୍ଣ ପଞ୍ଚାଶ ଅଧ୍ୟାରେ' ଯଥା—

କୁଳଶିଖର, ଲାଲବେଗ ଓ ସାଲବେଗ, ଦାସିଆ ବାଉରି, ତୁଳସୀ ଦାସ, ସିପୁଟି, ନାରାୟଣ ଦାସ, ଗୌରଚନ୍ଦ୍ର, ଗୋବିନ୍ଦ ଦାସ ଯଶଚନ୍ଦ୍ର ରାଜା ଓ ଦୀନବନ୍ଧୁ ଓଝା, ଗୀତା ପଣ୍ଡା, ହରିଚନ୍ଦନ ରାଜା, ମଙ୍ଗଳା ଗଉଡ଼, ବାଳକ ରାମଦାସ, ବାଳକ ରାମଦାସ (ଦ୍ୱିତୀୟ) କୃପାସିନ୍ଧୁ, ନଳ ମହାନ୍ତି, ମୋଶରାମ ଦାସ, ବଙ୍କାନନ୍ଦ, ରଘୁନାଥ, ପିତା ଦାସ, ବସ୍ତୁ ପ୍ରିୟା, ମିରା ବାଈ, ଜ୍ଞାନାନନ୍ଦ ଦାସ, ଆନନ୍ଦା ଶବର, ଅଜାମିଳ ଛଣ୍ଡା ।'

ତାଙ୍କର ଲେଖା ହୋଇଥିବା ଗ୍ରନ୍ଥ ମଧ୍ୟରେ ୧୯ ଜଣ ବ୍ରାହ୍ମଣ, କ୍ଷତ୍ରୀୟ ୧୨ ଜଣ, ବୈଶ୍ୟ ୭ ଜଣ ଓ ଶୂଦ୍ର ତଥା ଅନ୍ୟ ପଞ୍ଚମ ଜାତିର ୧୨ ଜଣ ଭକ୍ତ । ଯେଉଁ ମାନେ କି ଭକ୍ତିତତ୍ତ୍ୱ କିଛି ଜାଣିନଥିଲେ । ସମସ୍ତେ ଭଗବାନଙ୍କଠାରେ ନିଜର ଦୃଢ଼ ଭକ୍ତି ଓ ଆତ୍ମ ସମର୍ପଣ ଯୋଗୁଁ ସବୁକିଛି ପାଇଛନ୍ତି, ଭବବନ୍ଧନରୁ ମୁକ୍ତ ହୋଇଛନ୍ତି ବା ତାଙ୍କ କୃପାରୁ ସ୍ୱଦେହରେ ବୈକୁଣ୍ଠ ଧାମକୁ ଯାଇଛନ୍ତି ।

ନୂତନ ସଂସ୍କରଣରେ 'ଦାର୍ଢ୍ୟତା ଭକ୍ତି'ରେ ପ୍ରାୟ ୫୫ ଅଧ୍ୟାୟ ରହିଛି । ତାଙ୍କର ଲେଖା ଅନୁଯାୟୀ ଆଉ ଶେଷ ୫ ଗୋଟି ବୋଧହୁଏ ଦେଖାଯାଏ ରାଗ ସଂପୂର୍ଣ୍ଣ ହେବାର କିଛିଦିନ ପରେ କବି ରଚନା କରିଛନ୍ତି ଅଥବା କୌଣସି ପ୍ରକାଶକ ନିଜେ ରଚନା କରି ତାଙ୍କ ନାମରେ ଭଣିତ କରିଛନ୍ତି ଯଥା—ରାଜବି ଦାସ, ଚନ୍ଦ୍ରଧ୍ୱଜ, ବଳିରାଜ, ସାନବନ୍ତ, ବଲ୍ୱମଙ୍ଗଳ, ଜୟଦେବ ।

ତାଙ୍କର ଲେଖାର ଦର୍ଶନ ହେଲା ଭଗବାନଙ୍କଠାରେ ଦୃଢ ଭକ୍ତିଥିଲେ ଭକ୍ତ କିପରି ପ୍ରତ୍ୟକ୍ଷ ଓ ପରୋକ୍ଷ ଭାବରେ ମହା ସଙ୍କଟରୁ ରକ୍ଷା ପାଇ ପାରିବ ସେହି ଅନବଦ୍ୟ ଚିତ୍ର ଅଙ୍କିବାରେ ସିଦ୍ଧହସ୍ତ ହୋଇଛନ୍ତି । ସେଥିପାଇଁ କେତେକ ଭକ୍ତମାନଙ୍କର ଜୀବନ ଚରିତର ଉପାଦାନ ଥିବ ତାଙ୍କର ଲେଖାର ସଂପଦ ।

'ଦୃଢ଼ ନଥାଇ କର୍ମ ଚେତନ
ଫଳ ନ ଫଳେ କଦାଚନ'

କବି ମଧ୍ୟ କେତେକ ପୌରାଣିକ କଥାବସ୍ତୁ ଯଥା— ବଳିରାଜା, ହରିଶ୍ଚନ୍ଦ୍ର, କର୍ଣ୍ଣ, ଅମିଜାଳ ଭକ୍ତଙ୍କ ଚରିତ୍ର ବାବଦରେ ହୃଦୟଗ୍ରାହୀ ଛବି ଦେଇଛନ୍ତି । ସଂସ୍କୃତରେ 'ଭକ୍ତମାଳ' ଗ୍ରନ୍ଥର ପ୍ରଭାବ

ତାଙ୍କର ଲେଖାରେ ପଢ଼ିଛୁ । ବହୁତ ସ୍ଥାନରେ ଅତିଥି ଚର୍ଚ୍ଚା କରିବା ଗୃହସ୍ଥ ବୈଷ୍ଣବର ଏକମାତ୍ର କର୍ତ୍ତବ୍ୟ ବୋଲି ପ୍ରଚାର କରିଛନ୍ତି । ତାଙ୍କ ମତରେ ଦୁଷ୍କୃତ ଜନ ମଧ୍ୟ କୃଷ୍ଣନାମ ଉଚ୍ଚାରଣ କଲେ ଭକ୍ତବତ୍ସଳରୂପି କୃଷ୍ଣ ଆସି ଭକ୍ତକୁ ବିପଦମୁକ୍ତ କରି ତା'ର ମନକାମନା ପୂର୍ଣ୍ଣ କରନ୍ତି । ଏଥିରେ ଗୌଡ଼ୀୟ ବୈଷ୍ଣବଙ୍କର ଅନ୍ତକାୟ କଳ୍ପନା ବିଳାସ ଓ ଦାସ୍ୟ-କାମ୍ୟ ପ୍ରେମ ରସ ରସାଣିତ ହୋଇଛି ।

## ବିୟୋଗ

ଅନୁମାନ କରାଯାଏ ସେ ଅଶୀବର୍ଷରୁ ଅଧିକ ବଞ୍ଚିଥିବେ ଓ ୧୮ଠର ଶତାବ୍ଦୀ ବେଳକୁ ଇହଲୀଳା ସମ୍ବରଣ କରିଥିବେ ।

ଜଣାଯାଏ ଯେ ପରିଣତ ବୟସରେ ତାଙ୍କର ଆର୍ଥିକ ଅବସ୍ଥା ଗରିବ ସେବା, ଅତିଥି ଓ ସାଧୁମାନଙ୍କ ସତ୍କାରରେ ଖରାପ ହୋଇଥିଲା ଓ ସେ ଅସହାୟ ହୋଇ ପଡ଼ିଥିଲେ । କଥିତ ଅଛି ଯେ ତାଙ୍କର ଦାରିଦ୍ର୍ୟ ବିଷୟ ନେଇ ଲୋକେ ଗଞ୍ଜାମରେ ଆଙ୍ଗୁଳି ଦେଖାଇ କହନ୍ତି—

'ପିଠିକି କନା ନାହିଁ ରାମଦାସ
ପେଟକୁ ପେଜନାହିଁ ରାମଦାସ'

କବିଙ୍କର ପ୍ରକୃତ ନାମ ରାମଚନ୍ଦ୍ର ଦାସ ମାତ୍ର ସେ ରାମଦାସ ନାମରେ ପରିଚିତ ।

'କହଇ ବିପ୍ର ରାମଚନ୍ଦ୍ର, ମୋ ପ୍ରଭୁ ବୃନ୍ଦାବନଚନ୍ଦ୍ର'

# କବିଚନ୍ଦ୍ର ହନୁମାନ ବିପ୍ରଗୁରୁ

ଓଡିଶାର ସାହିତ୍ୟ ସାରସ୍ଵତ ସଂଗ୍ରହାଳୟକୁ ଗଞ୍ଜାମର କବି ମାନଙ୍କର ଅମୂଲ୍ୟ ଅବଦାନକୁ କେହି ଅସ୍ଵୀକାର କରି ପାରିବେ ନାହିଁ । ଊନବିଂଶ ଶତାବ୍ଦୀରେ ଯେଉଁ କେତେ ଜଣ ପ୍ରତିଭାବାନ କବି ଗଞ୍ଜାମ-ରେ ଜନ୍ମ ଗ୍ରହଣ କରି ସାହିତ୍ୟର ମନ୍ଦାକିନୀ ଧାରି ପ୍ରବାହିତ କରିଥିଲେ ସେଥି ମଧ୍ୟରୁ 'କବିଚନ୍ଦ୍ର ହନୁମାନ ବିପ୍ରଗୁରୁ' ଅନ୍ୟତମ । ସେ ସମାଜର ଦୋଷ ଦୁର୍ବଳତାକୁ ନଗ୍ନଭାବରେ ଚିତ୍ରଣ କରିଛନ୍ତି ।

ଗଞ୍ଜାମର ପୁଣ୍ୟତୋୟା ଋଷିକୁଲ୍ୟା ନଦୀ ଓ ବଡ଼ନଦୀର ସଙ୍ଗମ ସ୍ଥଳର ଅନତି ଦୂର ତଟ ଉପକଣ୍ଠରେ ବ୍ରାହ୍ମଣୀଗୁଇ ଗ୍ରାମରେ ୧୮୨୭ ଖ୍ରୀ:ଅ:ରେ କବିଚନ୍ଦ୍ର ହନୁମାନ ବିପ୍ରଗୁରୁ ବ୍ରାହ୍ମଣ ପରିବାରରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କର ପିତାଙ୍କର ନାମ ଈଶ୍ଵର ପ୍ରହରାଜ ଓ ମାତାଙ୍କ ନାମ ଅମ୍ବିକା ଦେବୀ । କିମ୍ବଦନ୍ତୀରୁ ଜଣାଯାଏ ଯେ ଶୈଶବ କାଳରେ ସେ ଅତି ଚଞ୍ଚଳମନା ଥିବାରୁ ପିତାମାତା ତାଙ୍କୁ ହନୁ ବୋଲି ନାମ ଦେଇଥିଲେ ।

ଜଣେ ମାଟିବଂଶ ଅବଧାନଙ୍କର ତତ୍ତ୍ଵାବଧାନରେ ପାଞ୍ଚବର୍ଷ ବୟସରେ ତାଙ୍କର ବିଦ୍ୟାରମ୍ଭ ହୋଇଥିଲା । ପାଠ ପଢ଼ାରେ ବିଶେଷ ମନଯୋଗ ଓ ଅସାଧାରଣ ଧୀଶକ୍ତି ପ୍ରତିଭା ଦେଖି ଗୁରୁ ବିସ୍ମିତ ହୋଇ ପଡିଥିଲେ । ସେଥିରୁ ବାଳକର ଭବିଷ୍ୟତ ଉଜ୍ଜ୍ଵଳମୟ ହେବ ବୋଲି ସମସ୍ତଙ୍କ ଧାରଣା ହୋଇଥିଲା । ତୁଳସୀ ଦୁଇ ପତ୍ରରୁ

ବାଗିଲ ପରେ ତାଙ୍କର ପ୍ରତିଭା ଜଣା ଯାଉଥିଲା । ସେ ଗୃହଶାଳୀ ମାଠ ପଢ଼ା ୯ ବର୍ଷ ବୟସରେ ଶେଷ କରିଥିଲେ । ତା'ପରେ ତାଙ୍କର ବ୍ରତୋ-ପନୟନ ହୋଇଥିଲା ।

ବ୍ରତୋପନୟନ ପରେ ତାଙ୍କର ପିତା ଈଶ୍ୱର ପ୍ରହରାଜ ତାଙ୍କୁ ଦାମୋଦରପୁର ଶାସନ ନିବାସୀ ପଣ୍ଡିତ ରଘୁ କରଙ୍କ ଦାୟିତ୍ୱରେ ସଂସ୍କୃତ ଶିକ୍ଷା ଲାଗି ସେଠାକୁ ପଠାଇ ଦେଇଥିଲେ । ଅଳ୍ପକାଳ ମଧ୍ୟରେ କବି ସାହିତ୍ୟ, ଅଳଙ୍କାର, ବ୍ୟାକରଣ, ବେଦ, ପୁରାଣ ଓ ଦର୍ଶନ ପ୍ରଭୃତିରେ ବିଶେଷ ପାରଦର୍ଶିତା ଲାଭ କରିଥିଲେ ।

ପିଲା ଦିନରୁ ସେ ବଡ଼ ଈଶ୍ୱର ବିଶ୍ୱାସୀ ଥିଲେ । ଘରର ପ୍ରତି-ଷ୍ଠିତ ଇଷ୍ଟଦେବତା ବ୍ରହ୍ମେଶ୍ୱରଙ୍କ ଆରାଧନାରେ ବିଶେଷ ସମୟ କଟାଉ ଥିଲେ । ଯୋଗ ପନ୍ଥା ଅବଲମ୍ବନ ପୂର୍ବକ ସେ ତପନିଷ୍ଠ ଦେବତା ଉପାସନା ବଳରେ ବହୁମୁଖୀ ଶକ୍ତିର ଅଧିକାରୀ ହୋଇ ପାରିଥିଲେ ।

କବିଙ୍କୁ ୨୩ ବର୍ଷ ବୟସରେ ୧୮୫୦ ଖ୍ରୀ:ଅ:ରେ ବଡ଼ଗଡ଼ରେ ଦୁର୍ଗାମାଧବ ସିଂହ ରାଜ୍ୟଭାର ଗ୍ରହଣ କରିବା ପରେ ୩୪୦ଟଙ୍କା ଦରମାରେ ରାଜ୍ୟର ଦିୱାନ୍ ରୂପେ ନିଯୁକ୍ତ ଦେଇଥିଲେ । ପ୍ରଶାସନିକ କ୍ଷେତ୍ରରେ ସେ ସୁଚାରୁରୂପେ ରାଜ୍ୟ ଶାସନ ଚଳାଇ ସମସ୍ତଙ୍କର ପ୍ରିୟଭାଜନ ହୋଇଥିଲେ । ରାଜା ତାଙ୍କର ଦକ୍ଷ ପରିଚାଳନାରେ ମୁଗ୍ଧ ହୋଇ ୧୮୫୧ ଖ୍ରୀ:ଅ:ରେ ତାଙ୍କୁ ରାଜ୍ୟର ସମସ୍ତ କ୍ଷମତା ପ୍ରଦାନ କରିଥିଲେ । ଏହି ସମୟରେ ସେ 'ରାଧା ଗୋବିନ୍ଦ ଚମ୍ପୂ' ଓ 'ମାନଭଞ୍ଜନ' ନାମକ ଦୁଇଗୋଟି ଗ୍ରନ୍ଥ ରଚନା କରି ରାଜାଙ୍କଠାରୁ 'କବିଚନ୍ଦ୍ର' ଉପାଧି ପାଇ ଥିଲେ ।

ବଣ୍ଡଗଡ଼ ଦେବାନ୍ ପଦରୁ ଅବସର ନେବାପରେ ସେ କିଛି ସମୟ ଧରାକୋଟ ରାଜା ବ୍ରଜସୁନ୍ଦର ସିଂହଙ୍କର ସଭା ପଣ୍ଡିତ ରୂପେ ଦରବାର ମଣ୍ଡନ କରିଥିଲେ । ଏହି ଅବସ୍ଥାନ ସମୟରେ ସେ ବହୁ କବିତା ଲେଖି ରାଜାଙ୍କ ନାମରେ ଉତ୍ସର୍ଗ କରିଥିଲେ ।

ଏହାପରେ ସେ ଶକତି ରାଜା ବିଶ୍ୱମ୍ଭର ରାଜେନ୍ଦ୍ରଦେବଙ୍କର ରାଜ ସଭାରେ କବି ଆସନ ଅଳଂକୃତ କରିଥିଲେ । ଏଠାରେ ସେ ଶ୍ରୁତିଚନ୍ଦ୍ର ବୈଷ୍ଣବର ସମ୍ମାନ ଲଭ କରିଥିଲେ । ପରେ ପରେ ସେ ମଞ୍ଜୁଷା ରାଜା ବାସୁଦେବ ରାଜମଣି, ନୟାଗଡ଼ ରାଜା ଲଡ଼ୁକେଶ୍ୱର ମାନ୍ଧାତା, ସାନଖେମୁଣ୍ଡି ରାଜା ଆନନ୍ଦକନ୍ଦଦେବ, ସୁରଙ୍ଗି ରାଜା ଚୈତନ୍ୟ ହରିଚନ୍ଦନ ଜଗଦେବ, ଖଲ୍ଲିକୋଟ ରାଜା ନାରାୟଣ ମର୍ଦ୍ଦ-ରାଜଦେବ ପ୍ରଭୃତିଙ୍କର ରାଜସଭାରେ ସମ୍ମାନିତ ହୋଇ ବହୁ ପୁରସ୍କାର, ଜାୟଗିର ହିସାବରେ ବହୁ ଭୂ-ସମ୍ପତ୍ତି ଲଭ କରିଥିଲେ ।

କବି ବହୁତ ଜଣାଣ, ଭଜନ, ଚୌପଦୀ, ଚମ୍ପୂ, କୋଇଲି-ଚଉତିଶା, ଚମ୍ପୂ ଓ ରସ ପଞ୍ଚାଧ୍ୟାୟୀ ଆକାରରେ ବହୁ ପଦ୍ୟାବଳୀ ରଚନା କରିଛନ୍ତି । ତାହା ୧୯୪୦ ଖ୍ରୀ:ଅ:ରେ ରସୁକୁଲ୍ଲ ଗ୍ରନ୍ଥାବଳୀ ନାମରେ ପ୍ରକାଶିତ ଓ ପରିଚିତ । ଓଡ଼ିଆ ପଦ୍ୟାବଳୀ ସାହିତ୍ୟ କ୍ଷେତ୍ର-ରେ ସେ ଜଣେ ଅବିସ୍ମରଣୀୟ ପ୍ରତିଭା ।

ସେ ଜଣେ ନୈଷ୍ଠିକ କୃଷ୍ଣଭକ୍ତ ରୂପେ ପରିଚିତ । ତାଙ୍କର ସରଳ ବ୍ୟବହାର, ତୀକ୍ଷ୍ଣ ବୁଦ୍ଧି, ପାଣ୍ଡିତ୍ୟ ଓ ଔଦାର୍ଯ୍ୟ ବଳରେ ସର୍ବସାଧାରଣଙ୍କଠାରେ ପ୍ରିୟପାତ୍ର ଓ ସମ୍ମାନିତ ହୋଇଥିଲେ । ତାଙ୍କର ଜୀବନ ବହୁ ସମୟ ଧରି ଭଗବତ ଚିନ୍ତାରେ ମଗ୍ନ ରହି କଟିଥିଲା । ଜନ ସେବା ଓ ସାରସ୍ୱତ ସେବାରେ ନିଜକୁ ନିୟୋଜିତ କରିବା ପବିତ୍ର କର୍ମ ବୋଲି ଧରି ନେଇଥିଲେ ।

କବିଙ୍କର ପୁତ୍ର ଗୋବିନ୍ଦ ରାଜଗୁରୁ ମଧ୍ୟ ଜଣେ କବି ଥିଲେ । ସେ 'ବୃନ୍ଦାବନ ଚନ୍ଦ୍ରାନନ ଚମ୍ପୂ' 'ଅଭିନବ ଚୌପଦୀ ରତ୍ନାକର' 'ଦେବେନ୍ଦ୍ର ସଭା ନାଟକ' ଓ 'ପ୍ରହ୍ଲାଦ ନାଟକ' ପ୍ରଭୃତି ଲେଖିଥିଲେ ।

ଶେଷ ଜୀବନ ସେ ସୁଖରେ କାଳାତିପାତ କରି ନଥିବା ଜଣାପଡ଼େ । ଦାରିଦ୍ର୍ୟର କଷାଘାତ ଦାଉରୁ ସେ ବଞ୍ଚିତ ନଥିଲେ । ପାପ ପଙ୍କିଳମୟ ସଂସାର ମଧ୍ୟରୁ ମୁକ୍ତି ପାଇବା ପାଇଁ ସେ ଅତିଷ୍ଠ ହୋଇ ଭଗବାନଙ୍କଠାରେ ବିକଳରେ ସ୍ତୁତି ଫୁଟାଇ, କୋହ ଫୁଟାଇ ବହୁ ଜଣାଣ ଲେଖିଛନ୍ତି ।

କବି ୧୮୯୧ ଖ୍ରୀ:ଅ: ପୌଷ ଶୁକ୍ଳପକ୍ଷ ଏକାଦଶୀ ତିଥିରେ ସ୍ୱର୍ଗାରୋହଣ କରିଥିଲେ ।

କବି ବଡ଼ଗଡ଼ ରାଜାଙ୍କର ଦେୱାନ୍ ଥିଲେ । ପରେ ସେ କବିତ୍ୱ ସମସ୍ତ ପାଇଁ ଧରାକୋଟ, ଚିକିଟି, ମଞ୍ଜୁଷା, ନୟାଗଡ଼, ଖାନଖେମୁଣ୍ଡି, ସୁରଙ୍ଗି ଓ ଖଲିକୋଟ ରାଜାମାନଙ୍କ ଦରବାରରେ ସମ୍ମାନିତ ହୋଇ ବହୁ ପୁରସ୍କାର, ବସ୍ତ୍ର ଭୂ-ସମ୍ପତ୍ତି ପାଇଥିଲେ ମଧ୍ୟ ସେ ରାଜାମାନଙ୍କର ଅନୀତିକୁ ସମାଲୋଚନା କରିବାରେ ପଛ ନାହାନ୍ତି ।

'ରାଜା ତ ହୋଇ ମଦମତ୍ତ
    ନ ଗୁହାଁନ୍ତି ପର ଲୋକ
ରାଧାମାଧବଙ୍କ ନାମ ଯେ ଧରଇ
    ନ ବଞ୍ଚନ୍ତି ତାଙ୍କୁ ଭକ୍ତ
ରାଜ ହେଲେ ମାତି ପରଦାର କତି
    ବେଶ୍ୟେ ଭ୍ରମନ୍ତି ଗୁମାନେ

ରାମ କୃଷ୍ଣ ହରି ବୋଲିବାର ଆଉ
ନ ଶୁଣିବି ଥରେ କାନେ

× × × ×

ରବିଶ ପରିପୂ ରତ୍ତ ରଙ୍ଗେ ମତ୍ତ
ବୃଥାରେ ନିଅନ୍ତି କାଳ ।

ସାଧାରଣତଃ ଯୋଗୀ ନିଜର ସାଧନା ବଳରେ ସର୍ବଶକ୍ତିମାନଙ୍କ ଠାରେ ମୁକ୍ତି ପାଇଁ ମନ ପ୍ରାଣକୁ ଉତ୍ସର୍ଗ କରେ । ସାଂସାରିକ ଭୋଗୀ ଐଶ୍ବର୍ଯ୍ୟ ପ୍ରାପ୍ତିର ଅଭିଳାଷରେ ଆତ୍ମ କୈନ୍ଦ୍ରିକ ହୋଇ ନିଜର ସୁଖ ସୁବିଧା କଥା ଚିନ୍ତାକରେ । ବୈଜ୍ଞାନିକ ବସ୍ତୁର ବିଶ୍ଳେଷଣରେ ନିରୀକ୍ଷଣରେ ନିଜ୍ରତ ରହେ । ଦାର୍ଶନିକ ଯୁକ୍ତିବାଦର ମୌଳିକତା ସାର୍ବଂଶ ଉପରେ ଆଶ୍ରୟ କରେ । ମାତ୍ର କବିର କଳ୍ପନା ଉପରେ ଆଧାରିତ ହୁଏ ତା'ର କଥାବସ୍ତୁ । କାରଣ ସେ ଦେଖେ, ଅନୁଭବ କରେ ବା ପର ଅନୁଭୂତିରୁ ଶିଖେ ଏବଂ ତା'ର କଳ୍ପନା ଶବ୍ଦ ତୁଳନା-ତ୍ମକ ଭାବ ଆବେଗରେ ପ୍ରକାଶ କରେ ।

କବିଙ୍କର ମଧ୍ୟାହ୍ନ ଗୌରବମୟ ଥିଲା । ମାତ୍ର ସାୟାହ୍ନ ପ୍ରାୟ ଦାରିଦ୍ର୍ୟର କଷାଘାତରେ ଦୁଃଖମୟ ମନେ ହୁଏ ।

'ଅଦୃଷ୍ଟ ମୋହର ଅନ୍ତଃକାଳେ
ଦୁଃଖ ଦେବାକୁ ଲହିଲା ବନ୍ଧ'
'ମରିଗଲେ ଭଲ ହୁଅନ୍ତା ଯାହାଟି
ଦରିଦ୍ରଙ୍କୁ ଦେଲ ସାର'
'ଜହର ଦେବି ଖାଇ କି ହେବ ଜିଇଁ ଥାଇ
ଜଞ୍ଜାଳ ନ ଦେବି କଷ୍ଟତେ'

'ଭଜ ନ ଦେଇ ମାଗୁଅଛ ମତେ ତ
ହେବନ କାମନା ପୂର୍ଣ୍ଣ'
'ଜୀର୍ଣ୍ଣ ହେଲି ଏବେ ଜଠର ବାଧାରେ
କାହାକୁ ଏବେ କହିବି'
'ଲେଖିଛୁ ବିଧାତା କପାଳେ ମୋର
ଦର୍ଶନ ହେବାକୁ ସିନା'
'ଘରବାକୁ ପିଣ୍ଡ ଚଣ୍ଡାଳ କରୁଛି
ଯତନରେ ନାହିଁ ସଂପାଦ'
'ନାଶ ସେକାଇ ଆଗୁ ମୋର
ନାକ କାଟିବା ଦରକାର'

ସେ ଜଣାଣମାନଙ୍କରେ ଭଗବାନଙ୍କ ଠାରେ ଆତ୍ମ ସମର୍ପଣ କରି ନିଜର ପାପ ପାଇଁ ଅନୁତାପ କରିଛନ୍ତି । ସେ ମଧ୍ୟ ଭାଗ୍ୟବାଦୀ ହୋଇଛନ୍ତି ।

'କୃଷ୍ଣ ରାଧେ ରାଧେ ଗୋବିନ୍ଦ ବୋଲି
ମୋ ଜୀବନ ଯିବ ବାହାରି'
'ଭାଲପଟେ ଲେଖା କେ ଆନ କରିବ
ଯାହା ଥିବ ସେ ଫଳିବ'
'ଜୀବନ ଯାକତ ପାପ ମୁଁ କରିଛି
ଜାଣିଛନ୍ତି ଚତୁର୍ଦ୍ଦଶେ'
'ମୋ' ପରି ପାପୀ ଆଉ ନଥିବ ମହାବାହୁ
ଖୋଜିଲେ ତ୍ରିଲୋକରେ ଜମା'
'ଭାସି ଭବଜଳେ ଯିବା ବେଳେ ଆସି
ନ ଉଦ୍ଧାର ଯାହା ହରି
'ଅଜାମିଳକୁ ଉଦ୍ଧରିଲ ପରାଏ
ଅଳପକେ ହେଉ କ୍ଷମା'

ତାଙ୍କର ମତରେ ସଂସାର ଦୁଃଖମୟ, ଅଳୀକ ଓ ମାୟା ମୋହ ଜାଲରେ ପରିବେଷ୍ଟିତ । ଜୀବନ ହାଟରେ ସଉଦା ସରିଯିବା ପରେ ମାନବ ନିଃସଙ୍ଗ ବାଟୋଇ ପରି ହଟହଟା ହୁଏ । ସଂସାରର ଚଲା-ବାଟରେ ପାଥେୟ ସରିଗଲେ ମଣିଷର ସମ୍ମାନ ସମାଜରେ ରହେନାହିଁ ।

'ଦାଉଙ୍କ ପରି ମତେ' ଖାତର ନ କରନ୍ତି ଲୋକେ'
'ହଜିଗଲା ମୋର ସଉଦା ସବୁ ତ ହାଟେ ବାଟେ ଯାଇକରି
ହାଣ୍ଡିପରି ଲୋକେ ବଜାର କରି
ମୋ ଆବରୁ ଦେଲେଣି ସାରି'

ମଣିଷ ସ୍ୱାର୍ଥପର, ସୁବିଧାବାଦୀ ହୋଇ କେତେ କୃତଘ୍ନ ହୁଏ ଓ ପର ଉପକାରକୁ ପାଶୋରି ଦିଏ ତାହା ଲେଖିଛନ୍ତି--

'ଦିନେ ତ ନ ଭଜନ୍ତି ବଡ଼ ହେଉଥିବା ଉପକାର'
'ଷେତକୁ ଭ୍ରମର ଯାଇ ମୁଁ ଜଣାନ୍ତି
ଖରଚ ମୋ ହାତେ ନାହିଁ'
'ଖିନ୍ନଚିତ୍ତ ହୋଇ ଦ୍ୱାରେ ଗଲେ ମୁଁ
ନାବିକେ ତ ନେବେ ନାହିଁ'
'ଖ୍ୟାତିପନ୍ଥ ମାର୍ଗରେ ଅଛନ୍ତି
ତାଙ୍କୁ ଯାଇ ଦେଖାକଲେ
ଷୀଣଦୃଷ୍ଟି ହୋଇଗଲେ ତାଙ୍କ ପାଶେ
କେହି ପୁଛିବେ ଭଲେ ।'



# ଗୋବିନ୍ଦ ରଥଗୁରୁ

ଶତ ସଂସ୍କୃତମାଳିନୀ ଚିତ୍ରୋତ୍ପଳା ନଦୀ ତଟସ୍ଥ ବ୍ରାହ୍ମଣଗ୍ରାଇ ଗ୍ରାମରେ ଗୋବିନ୍ଦ ରଥଗୁରୁ ୧୮୬୧ ଖ୍ରୀ:ଅ: ମାଘ ଶୁକ୍ଳ ନବମୀ ଗୁରୁ-ବାର ଦିନ ଜନ୍ମଗ୍ରହଣ କରିଥିଲେ । ସେ ହେଉଛନ୍ତି କବିଚନ୍ଦ୍ର ହନୁମାନ ରଥଗୁରୁଙ୍କ ଏକମାତ୍ର ପୁତ୍ର । କୁଳ ଦେବତା ଶ୍ରୀ ରାଧା-ଗୋବିନ୍ଦଙ୍କୁ ଉପାସନା କରି ତାଙ୍କ ପ୍ରସାଦରୁ ଜନ୍ମ ନେଇଥିବା ଯୋଗୁଁ ତାଙ୍କୁ ଗୋବିନ୍ଦ ନାମ ଦିଆ ଯାଇଥିଲା । ସେ ପାଞ୍ଚବର୍ଷ ବୟସରେ ଗ୍ରାମ ଚାଟଶାଳୀରେ ବିଦ୍ୟାରମ୍ଭ କରିଥିଲେ । ତାଙ୍କର ପ୍ରଥମ ବାଲ୍ୟ ଗୁରୁ ଥିଲେ କଟକ ଜିଲ୍ଲା ଜାମପୁର ଗ୍ରାମର ଶିକ୍ଷକ ଗୋପିନାଥ ପଟ୍ଟ-ନାୟକ ।

କବିଙ୍କର ବାଲ୍ୟକାଳରୁ ଧୀଶକ୍ତି, ସ୍ମରଣ ଶକ୍ତି ପ୍ରଖର ଥିଲା । ସେ ମେଧାବୀ ଛାତ୍ର ହିସାବରେ ଛାତ୍ରମାନଙ୍କ ମଧ୍ୟରେ ପ୍ରଥମ ସ୍ଥାନ ଅଧି-କାର କରୁଥିଲେ । ସେଥିପାଇଁ ସେ ଅଳ୍ପଦିନ ଭିତରେ ବ୍ୟାକରଣ, ନାଟକ, କାବ୍ୟ, ଅଳଙ୍କାର ଆୟତ୍ତ କରି ପାରିଥିଲେ । ତାଙ୍କୁ ସଂସ୍କୃତ ଶିକ୍ଷାଦାନ କରିଥିଲେ ନିଜ ଗାଁର ଆଚାର୍ଯ୍ୟ ଚନ୍ଦ୍ରକର । ତାଙ୍କର ଉପନୟନ ୯ ବର୍ଷରେ ହୋଇଥିଲା । ଅଲୌକିକ ଶକ୍ତି ପାଇଁ ସେ ଦୁର୍ଗାଦେବୀଙ୍କ ଠାରେ ଭୁବନେଶ୍ୱରୀ ମନ୍ତ୍ର ସିଦ୍ଧ କରିଥିଲେ । କୋଡ଼ିଏ ବର୍ଷ ବୟସରେ ସେ ନିଜ ଗ୍ରାମର ଜଗନ୍ନାଥ ରଥଗୁରୁଙ୍କ କନ୍ୟା ସାଧବାଣୀଙ୍କର ପାଣିଗ୍ରହଣ କରିଥିଲେ । ସାଧବାଣୀଙ୍କ ଏକ କନ୍ୟା ଜନ୍ମ

ହେବା ପରେ ଅକାଳ ବିୟୋଗ ହୋଇଥିଲା । କବି ପୁତ୍ରୀ ହିଁଶାୟୁ ଦାର ଗ୍ରହଣ କଲେ । ଉଭୟଙ୍କର ପୁତ୍ର ସନ୍ତାନ ନ ଥିଲା ।

ଧରାକୋଟ ରାଜା ମଦନ ମୋହନ ସିଂହଦେବଙ୍କର ପୃଷ୍ଠ-ପୋଷକତା ଲାଭ କରି ରାୟଗୁରୁ ଉପାଧି ପାଇଥିଲେ । ଦାନ ସୂତ୍ରରେ ସେ ପିତଳ, ହରିପୁର, ସିଙ୍ଗଲିଇଠାରେ ବିସ୍ତର ଜମି ଜାଗିର ପାଇ-ଥିଲେ । ସେ ଧରାକୋଟ ଠାରେ ବୃନ୍ଦାବନ ଚନ୍ଦ୍ରାନନ ଚମ୍ପୂ, ଅଭିନବ ଚୌପଦୀ ରତ୍ନାକର, ପ୍ରହ୍ଲାଦ ନାଟକ, ଦେବେନ୍ଦ୍ର ସର୍ଗ ନାଟକ, ଜଣାଣମାଳା, ଭଜନାବଳୀ, ସ୍ୱଦେଶାନୁଚିନ୍ତା ଚଉତିଶା, ବାତ୍ସଲ୍ୟ ଓ ପ୍ରଭୃତ ଅବକାଶ ଲେଖିଥିଲେ ।

ପରବର୍ତ୍ତୀ କାଳରେ ସେ ଚିକିଟି, ପାରଳା, ସୁରଙ୍ଗି ପ୍ରଭୃତି ରାଜଦରବାରରୁ ବହୁ ସମ୍ମାନ ଓ ଉପଢୌକନ ଲାଭ କରିଥିଲେ । ପିତାଙ୍କର ପ୍ରତିଷ୍ଠିତ ଦେବାଳୟର ସିଂହଦ୍ୱାର ନିର୍ମାଣ, ଦେବାଳୟ ଓ ପୁଷ୍କରିଣୀର ସଂସ୍କାର କରି ସୁପରିଚାଳନା କରିଥିଲେ । ଧରାକୋଟ ଦେବାନ୍ ଦାୟିତ୍ୱ ନେବାପାଇଁ ମନସ୍ଥ କରିବା ସମୟରେ ୩୯ ବର୍ଷ- ୧୯୦୧ ଖ୍ରୀ:ଅ: ଶ୍ରାବଣ ଶୁକ୍ଳ ଚତୁର୍ଥୀ ଦିନ ବସନ୍ତ ରୋଗରେ ତାଙ୍କର ଅକାଳ ମୃତ୍ୟୁ ହୋଇଥିଲା ।

ତାଙ୍କ ଉପରେ କବିସୂର୍ଯ୍ୟ ଓ ପିତା ହନୁମାନ ରାୟଗୁରୁଙ୍କ ପ୍ରଭାବ ପଡ଼ିଥିଲା । ପିତାଙ୍କ ତୁଳନାରେ ତାଙ୍କର ଲେଖା ରସରସିଆ ଓ ସରଳ ଥିଲା ।

ଦାରିଦ୍ର୍ୟ ମଣିଷର ବହୁ ଉଚ୍ଚ ଆଶା ଅଭିଳାଷକୁ ଧୂଳିସାତ୍ କରିଦିଏ । ମାତ୍ର ପ୍ରତିଭାକୁ ରୁଦ୍ଧ କରିପାରେ ନାହିଁ ।

# ନରସିଂହ ମାଠ

କବି ନରସିଂହ ମାଠ ଗଞ୍ଜାମ ବଡ଼ଖେମୁଣ୍ଡି ତାଲୁକା ନଗଖଣ୍ଡି ଗ୍ରାମରେ ୧୮୪୭ ଖ୍ରୀ:ଅ:ରେ ଜନ୍ମ ଗ୍ରହଣ କରିଥିଲେ । ଜାତି ତାଙ୍କର ଥିଲା ବାଣାପୁତ୍ର ଖଣ୍ଡାୟତ । ଓଡ଼ିଶାର ସୈନ୍ୟବାହିନୀରେ ଯେଉଁମାନେ ନଳ, ଗୋଳା, ତୋପ୍ ଇତ୍ୟାଦି ବାଣକୁ ଆପ୍ରୟୋଗ କରୁଥିଲେ ସେମାନଙ୍କୁ ବାଣାପୁତ୍ର କ୍ଷତ୍ରୀୟ ଖଣ୍ଡାୟତ କୁହାଯାଉଥିଲା । ପିଲାଦିନେ ସେ କେବଳ ଗ୍ରାମ ଚଟଶାଳୀରେ ଓଡ଼ିଆ ଭାଷା ଶିକ୍ଷା କରିଥିଲେ । ଅତି ସ୍ୱଳ୍ପ ବୟସରୁ ପିତା, ମାତା ହରାଇଥିବା ଯୋଗୁଁ ସେ ଉଚ୍ଚ ଶିକ୍ଷା ପାଇବାର ସୁଯୋଗ ପାଇ ନଥିଲେ । ମାତ୍ର ଶିକ୍ଷା ପାଇଁ ତାଙ୍କର ଅଗାଧ ଶ୍ରଦ୍ଧାଥିଲା ।

ସେ ରାମ ଭକ୍ତ ଥିଲେ । ସେହି ଭକ୍ତି ହେତୁ ସେ ଅଧିକ ଜ୍ଞାନ ପାଇଁ ଓଡ଼ଗାଁ ରଘୁନାଥ ପୀଠରେ 'ବଗଳାମୁଖୀ' ଜପ ସାଧନା କରି ଅଶେଷ ଜ୍ଞାନର ଅଧିକାରୀ ହୋଇ ପାରିଥିଲେ । ତାଙ୍କର ଜ୍ୟୋତିଷ, ଆୟୁର୍ବେଦ ଶାସ୍ତ୍ରରେ ପ୍ରବେଶ ଥିଲା । ସର୍ପବିଷକୁ ମନ୍ତ୍ର ଓ ଔଷଧ ବଳରେ ହରଣ କରିବାରେ ତାଙ୍କର ଦକ୍ଷତା ଥିଲା । ସେ ଅତି ସରଳ ଜୀବନ ଯାପନ କରୁଥିଲେ ଓ ମିଷ୍ଟଭାଷୀ, ନିଷ୍ଠାବାନ୍, ସଦ୍ବକ୍ତା, ନ୍ୟାୟ ପରାୟଣ ଥିବାରୁ ତାଙ୍କପ୍ରତି ଲୋକେ ଆକୃଷ୍ଟ ହେଉଥିଲେ । ସେ କୃଷି-ବାସ କରି ଜୀବିକା ନିର୍ବାହ କରୁଥିଲେ । ଲେଖାଲେଖି କରିବା ପାଇଁ ତାଙ୍କର ବିଶେଷ ଶ୍ରଦ୍ଧା ଥିବା ଯୋଗୁଁ ବାଲ୍ୟବାଡ଼ରେ ବୃଦ୍ଧ କାମ ସାରି

ତାଳପତ୍ର ଲେଖା ଓ ଲେଖନୀ ଦ୍ୱାରା ଲେଖା ଶୈଳୀରେ ଅଭିଭୂତ ହୋଇ ପଡ଼ିଥିଲେ । ପରବର୍ତ୍ତୀ ସମୟରେ ସେ ମୁଦ୍ରାଦାର୍ଶ୍ୟ କାର୍ଯ୍ୟ କରିଥିଲେ ।

ତାଙ୍କର ଲେଖା ମଧ୍ୟରେ ରଘୁନାଥ କୀର୍ତ୍ତନ (ରାମାୟଣ), ପ୍ରଧାନ । ତାହା ବାହାରେ ଗୋପଲୀଳା, ମାଳଗିରି ବନ୍ଦନା, ନନ୍ଦଆ କୀର୍ତ୍ତନ, ରଘୁନାଥ ସନ୍ତାପ ଓ ବଗଦାର୍ଣ୍ଣବ ଚଉତିଶା ଲେଖିଥିଲେ । ସେ ଚଉଦ ଅକ୍ଷରୀରେ ବହୁତ ରଚନା ଲେଖିଛନ୍ତି । ତାଙ୍କର ଲେଖା ସରଳ । ବହୁତ ସ୍ଥଳରେ ଯତି, ଯମକ ଓ ଅନୁପ୍ରାସ ତାଙ୍କର ଲେଖାକୁ ପ୍ରାଞ୍ଜଳ କରିଛି । ଲେଖାରେ ସେ କେତେ ସୁଲଭ ଉପମାମାନ ଦେଇ ଲେଖାକୁ ରସାଳ କରିଛନ୍ତି । ସେ ଲେଖାରେ ନାନା ରସ ଦେଇ ଲେଖାଗୁଡ଼ିକୁ ଜୀବନ୍ତ କରିବାକୁ ଚେଷ୍ଟା କରିଛନ୍ତି ।

୧୯୧୯ ଖ୍ରୀ:ଅ:ରେ ସେ ଇହଲୀଳା ସାଙ୍ଗ କରିଥିଲେ । ତାଙ୍କର ପୁତ୍ରଙ୍କ ନାମ ଜଗିଆ ମାଠ । ସେ ପିତାଙ୍କର ଲେଖାଗୁଡ଼ିକ ଲୋକ-ଲୋଚନକୁ ଆଣିବାକୁ ଚେଷ୍ଟା କରିଛନ୍ତି ।



# ବସୁ ପ୍ରହରାଜ

ବସୁ ପ୍ରହରାଜଙ୍କ ପୂର୍ବ ପୁରୁଷମାନେ ପାଲୁରଠାରେ ବସବାସ କରୁଥିଲେ । ସେମାନଙ୍କ ମଧ୍ୟରେ ଫଣୀ-ଗୋସାଇଁ ବାପା ଜଗଦାନନ୍ଦ ପଣ୍ଡା ପ୍ରଧାନ । ସେ ପାଲୁରୁ ରାଜାଙ୍କର ମନ୍ତ୍ରୀ ଥିଲେ । ପାଲୁର ବନ୍ଦର (ଦନ୍ତନ ବନ୍ଦର) ଦେଇ ଯେଉଁ ନୌବାଣିଜ୍ୟ ସୁଦୂର ଦେଶମାନଙ୍କୁ ଚାଲୁଥିଲା, ସେଥି ମଧ୍ୟରୁ ରାଜାଙ୍କର ୭ ଗୋଟି ଓ ଜଗଦାନନ୍ଦ-ପଣ୍ଡାଙ୍କ ୭ ଗୋଟି ବାଣିଜ୍ୟ ତରୀ ଥିଲା । ଜଗଦାନନ୍ଦ ପଣ୍ଡାଙ୍କର ଦୁଇ ଗୋଟି ସ୍ତ୍ରୀ ଏବଂ ୭ ଗୋଟି ପୁତ୍ର ଥିଲେ । ଯଥା – ମୁକୁନ୍ଦ, ହରି, ଜଗବନ୍ଧୁ, ଭଗୀରଥି, ଗୋପି, ଗୋବିନ୍ଦ ଓ ଗୋପାଳ । ମୁକୁନ୍ଦପଣ୍ଡା (ମହାପାତ୍ର)ଙ୍କର ଶ୍ୟାମସୁନ୍ଦର ମହାପାତ୍ର ଓ ରଘୁସାମନ୍ତରା ମହାପାତ୍ର ନାମରେ ଦୁଇଗୋଟି ପୁତ୍ର ଥିଲେ । ଶ୍ୟାମସୁନ୍ଦରଙ୍କର ୪ ଗୋଟି ପୁତ୍ର ଯଥା—ପରମାନନ୍ଦ ପ୍ରହରାଜ (ଦକ୍ଷୀତ ବେବର୍ତ୍ତା), ଲୋଚନ ବେବର୍ତ୍ତା, କୃଷ୍ଣ ପ୍ରହରାଜ, ଗଙ୍ଗାଧର ମହାପାତ୍ର । ରଘୁସାମନ୍ତରା ମହାପାତ୍ରଙ୍କର ୪ ଗୋଟି ପୁତ୍ର । ଯଥା – ବାମଦେବ, ପଣ୍ଡିତ, ବସୁ ପ୍ରହରାଜ, ପୁରୁଷୋତ୍ତମ ଖାଡ଼ଙ୍ଗା ଓ ଅନ୍ୟ ଜଣେ ।

ପରମନନ୍ଦ ପ୍ରହରାଜ (ଦକ୍ଷୀତ ବେବର୍ତ୍ତା) ଆଠଗଡ଼ ରାଜା ମଧୁସୂଦନ ହରିଚନ୍ଦନ (ବୃନ୍ଦାବନ ହରିଚନ୍ଦନଙ୍କ ବଡ଼ଭାଇ)ଙ୍କର ମନ୍ତ୍ରୀ ଥିଲେ । ଜଣାଯାଏ ଯେ ପୂର୍ବେ ଭଗୀରଥି ପଣ୍ଡା, ରଘୁସାମନ୍ତରା ମହାପାତ୍ର ମଧ୍ୟ ଆଠଗଡ଼ ରାଜାଙ୍କର ପ୍ରଶାସନିକ ମୁଖ୍ୟ ଥିଲେ ।

କଥିତ ଅଛି ଯେ ଜାଫିର ଖାଁ ଆଠଗଡ଼ ରାଜାଙ୍କ ସଙ୍ଗେ ଯୁଦ୍ଧ କରି ପରାସ୍ତ ହେଲେ ଓ ପରେ ଅମିକା ସୂନାମ୍ନ ସାହିରେ ଯାଇ ରହିଲେ । ସେଠାରୁ ଆଠଗଡର ଜଣେ କରଣ ଲୋକଙ୍କୁ ହାତ କରି ରାଜାଙ୍କୁ ସମ୍ମାନ ଦେବା ପାଇଁ ନିମନ୍ତ୍ରଣ କରି ବନ୍ଦୀ କରିଥିଲେ । ପରେ ପାରଳା ରାଜା ନାରାୟଣଦେବଙ୍କ ଦ୍ୱାରା ମୁକ୍ତ ହେଲେ । ଜଣେ ମୁସଲ-ମାନ ଯୁବତୀଙ୍କୁ ରକ୍ଷିତାରୂପେ ଅଣିଣିପୁରଠାରେ ରଖିଥିଲେ । ଏଥିରେ ପରମାନନ୍ଦ ପ୍ରହରାଜ ପ୍ରବଳ ପ୍ରତିବାଦ କରିଥିଲେ । ରାଜା ଏଥିରେ ତାଙ୍କ ପ୍ରତି ଅସନ୍ତୁଷ୍ଟ ହେବାର ଜଣାଯାଏ । ମୁସଲମାନ ଜେମାଙ୍କର ନିଜ ଲୋକ ବାଜ ଖାଁ ପ୍ରଥମେ ତାଙ୍କ ବିରୁଦ୍ଧରେ ଚକ୍ରାନ୍ତ ଚଳାଇଲେ । ଏହା ଫଳରେ ପରମାନନ୍ଦ ପ୍ରହରାଜଙ୍କ ବିରୁଦ୍ଧରେ ଗୋଟିଏ ଚକ୍ରାନ୍ତ କରାଯାଇ ତାଙ୍କୁ ଜଣେ ତାନ୍ତ୍ରିକ ଓ ରାଣୀଙ୍କ ସଙ୍ଗେ ଅସମ୍ପୃକ୍ତ ଥିବା ଖବର ଆଙ୍କ ଦ୍ୱାରା ପ୍ରଚାର କରାଗଲା । ପରିଶେଷରେ ତାଙ୍କୁ ଅମାନୁଷିକ ଭାବେ ଶୂଳ ଦେଇ ହତ୍ୟା କରାଗଲା ।

ପରମାନନ୍ଦ ପ୍ରହରାଜଙ୍କ ସ୍ତ୍ରୀଙ୍କ ନାମ ଅପର୍ଣ୍ଣାଦେବୀ । ସେ ସତୀ, ସାଧ୍ୱୀ ଥିଲେ । ତାଙ୍କର ଶଂଖା, ସିନ୍ଦୂର ମଳିନ ଦେଖା ଦିବାରୁ ଓ ପତି ନିଜ ଗାଁ ଶ୍ରୀଜଗନ୍ନାଥପୁରକୁ ନ ଫେରିବା ଯୋଗୁଁ ସେ ବିପଦର ଆଶଂକା ଦେଖି ଦେବୀ ଆରାଧନା କରି ଜାଣି ପାରିଲେ ଯେ ପତିଙ୍କର ଅମଙ୍ଗଳ ଘଟିଛି । ସେ ନିଜେ ଆଠଗଡ଼ ଯାଇ ସ୍ୱାମୀଙ୍କର ମର୍ମନ୍ତୁଦ ମୃତ୍ୟୁ କଥା ଜାଣି ପାରିଲେ । ସେଠାରେ ରାଜାଙ୍କୁ ଅଭିଶାପ ଦେଲେ ଯେ ମୋ ସ୍ୱାମୀଙ୍କୁ ଭୁଲମ ନିର୍ଦ୍ଦେଶରେ ହତ୍ୟା କରିଥିବା ଯୋଗୁଁ ତୁମର ବଂଶ ଓ ରାଜ୍ୟ ତିନି ପୁରୁଷ ଭିତରେ ଲୋପ ପାଇବ ।

ରାଜା ମଧୁସୂଦନ ହରିଚନ୍ଦନଙ୍କ ମୃତ୍ୟୁ ପରେ ତାଙ୍କ ସାନ ଭାଇ ବୃନ୍ଦାବନ ହରିଚନ୍ଦନ ରାଜା ହେଲେ ଓ ୧୮୧୦ ଖ୍ରୀ: ଅ:ଠାରୁ

ତାଙ୍କର ମୃତ୍ୟୁ ହେଲା । ତାଙ୍କ ପୁତ୍ର ବାଲୁକେଶ ହରିଚନ୍ଦନ ୧୮୧୦ ଖ୍ରୀ:ଅ:ରେ ରାଜା ହେଲେ ଓ ୧୮୫୧ ଖ୍ରୀ:ଅ:ରେ ଇହଧାମ ତ୍ୟାଗ କଲେ । ତାଙ୍କ ପୁତ୍ର ରାମଚନ୍ଦ୍ର ଜଗଦେବ ନିଃସନ୍ତାନ ହେଲେ । ୧୮୫୪ ଖ୍ରୀ:ଅ:ରେ ଆଠଗଡ଼କୁ ଖଲ୍ଲିକୋଟ ରାଜା ନାରାୟଣ ମର୍ଦ୍ଦରାଜଦେବ ଡେପକେଣ୍ଟ ବନ୍ଦୋବସ୍ତ ଯୋଗୁଁ ନିଲାମରେ କିଣି କଲେ ।

ଅପର୍ଣ୍ଣାଦେବୀ ସ୍ୱାମୀ ପରମାନନ୍ଦଙ୍କ ମୃତ୍ୟୁ ପରେ ଆଠଗଡ଼ରେ ସ୍ୱାମୀଙ୍କର ଚିତାରେ ସତୀ ହୋଇ ଯାଇଥିଲେ । ସତୀଦାହ ଅଗ୍ନିରେ ତାଙ୍କର ପରିଧେୟ ପାଟଟି ପୂରା ପୋଡ଼ି ନଥିଲା । ଅବଶିଷ୍ଟ ପାଟଟି ଏବେ ମଧ୍ୟ ତାଙ୍କର ବଂଶଧରଙ୍କ ଦ୍ୱାରା ସଂରକ୍ଷିତ ହୋଇ ରହିଛି । ସେ ସତୀ ଚଳା ସମୟରେ ହାତରୁ ଦୁଇ ପଟ ସୁନାଚୁଡ଼ି ଦେଇ ଅନୁରୋଧ କରିଥିଲେ ଯେ--ଗୋଟିଏ ପଟ ଚୁଡ଼ିରେ ନିଜ ଗ୍ରାମ ଉପକଣ୍ଠରେ ଗୋଟିଏ ପୁଷ୍କରିଣୀ ଖୋଳିବ ଏବଂ ଅନ୍ୟଟିରେ ତାହା ପ୍ରତିଷ୍ଠା କରିବ । ଏବେ ମଧ୍ୟ ସେହି ପୁଷ୍କରିଣୀଟି 'ନାମି ବନ୍ଧ' ନାମରେ ପରିଚିତ ।

ଅପର୍ଣ୍ଣାଦେବୀ ଆଠଗଡ଼ରେ ଯେଉଁଠାରେ ସତୀ ଯାଇ ଥିଲେ ଏବେ ବି ସେହି ସ୍ଥାନକୁ 'ସତୀ ମୁଣ୍ଡିଆ' ବୋଲି ଲୋକେ କହନ୍ତି ।

ଆନନ୍ଦମାନିକ ବସୁ ପ୍ରହରାଜ ଅଷ୍ଟାଦଶ ଶତାବ୍ଦୀର ଦ୍ୱିତୀୟ ଦଶକର ଶେଷ ଭାଗରେ ଗଞ୍ଜାମ ଜିଲ୍ଲା ଶ୍ରୀରଜଗନ୍ନାଥ ପୁର ଶାସନରେ ଜନ୍ମ ଗ୍ରହଣ କରିଥିଲେ । ବୋଧହୁଏ ତାଙ୍କର ପୂର୍ବ ପୁରୁଷ ଭଗୀରଥି ମହାପାତ୍ରଙ୍କ ସମୟରେ ପାଲୁରୁଠାରେ ମରହଟ୍ଟାମାନଙ୍କର ଲୁଣ୍ଠନ ଧାଉଡ଼ରୁ ରକ୍ଷା ପାଇବା ପାଇଁ ପୁରୁଷୋତ୍ତମପୁର ପାଣ୍ଡିଆ ଦେଇ ଶ୍ରୀରଜଗନ୍ନାଥପୁରକୁ ଆସିଥିଲେ ।

ଗଜପତି ରାଜାଙ୍କ କାଞ୍ଚି ଅଭିଯାନ ବେଳେ ପୁରୁଷୋତ୍ତମପୁର

ବ୍ରାହ୍ମଣ ଶାସନରେ ଅନ୍ତର୍ଭୁକ୍ତ ହୋଇ ରହିଥିଲେ । ବିଜୟ ବାହୁଡ଼ା ସମୟରେ ସେଠାରେ କିଛି ବଡ଼ ସଂଗ୍ରାମ ନେଇ କାଞ୍ଚିରୁ ଆଣିଥିବା ନାରାୟଣ ମୂର୍ତ୍ତି (ସୁନ୍ଦର ମାଧବ)ଙ୍କୁ ସେଠାରେ ପ୍ରତିଷ୍ଠା କରିଥିଲେ ନିଜ ନାମରେ ନାମିତକରି ସେ ପୁରୁଷୋତ୍ତମପୁର ନାମରେ ଗ୍ରାମ ବସାଇଥିଲେ । ପ୍ରତାପରୁଦ୍ରଙ୍କ ନାମରେ ପ୍ରତାପୁର ଓ ମୁକୁନ୍ଦଦେବଙ୍କ ନାମରେ ମୁକୁନ୍ଦପୁର ନିକଟରେ ଅବସ୍ଥିତ । ଓଡ଼ିଶାରେ ତୋଷାଳି ପରେ କଳିଙ୍ଗର ରାଜଧାନୀ ଥିଲା । କିନ୍ତୁ ଅଶୋକଙ୍କ ବିଜୟ ପରେ ଆଧୁନିକ ପୁରୁଷୋତ୍ତମର ନିକଟସ୍ଥ ସମାପା (ସମା—କୃଷ୍ଣଗିରି ପାଦ ଦେଶସ୍ଥ) କଳିଙ୍ଗର ଦ୍ୱିତୀୟ ରାଜଧାନୀ ରୂପେ ପରିଗଣିତ ହେଲା । ବସୁ ପ୍ରହରାଜ ହେଉଛନ୍ତି ରଘୁ ସାମନ୍ତର ମହାପାତ୍ରଙ୍କର ଦ୍ୱିତୀୟ ପୁତ୍ର । ରଘୁ ସାମନ୍ତର ହେଉଛନ୍ତି କୃଷ୍ଣ ଭଞ୍ଜଙ୍କ ସମସାମୟିକ ।

ବସୁ ପ୍ରହରାଜ ଜ୍ଞାନୀ, ମାନୀ, ଦାନୀ ଓ ଧର୍ମପରାୟଣ ଥିଲେ । ସେ ୧୭୪୯ ଖ୍ରୀଷ୍ଟାବ୍ଦରେ ଶରଦ ବାଜପେୟ, ଅଗ୍ନିଷ୍ଟୋମ ଯାଜ୍ଞ ୱାର ଜଗନ୍ନାଥପୁର ଠାରେ କରିଥିଲେ । କିମ୍ବଦନ୍ତୀ କହେ ଯେ ତାଙ୍କର ଯଜ୍ଞରେ ବାର ଭରଣ ଘିଅ ବ୍ୟବହାର ହୋଇଥିଲା ।

ଜଣାଯାଏ ସେ ତାଙ୍କର ଭାଇ(ବଡ଼ ବାପାଙ୍କ ପୁଅ) ପରମାନନ୍ଦ ବେବର୍ତ୍ତାଙ୍କୁ ଆଠଗଡ ରାଜା ଅନ୍ୟାୟ ଭାବେ ହତ୍ୟା କରିବାରୁ ସେ ନିଜ ଗ୍ରାମ ଛାଡ଼ି ପୁରୀ ବାହାରି ଗଲେ । ପୁରୀ ମୁକ୍ତି ମଣ୍ଡପ ସଭାରେ ସେ ବିଶିଷ୍ଟ ସ୍ଥାନ ପାଇଥିଲେ । ତାଙ୍କୁ ସମ୍ମାନ ଦେବା ପାଇଁ ପୁରୀ ରାଜା ମନ୍ଦିରର ନୈଋତ କୋଣରେ ଗୋଟିଏ ଖମ୍ବ, ଗୁଣ୍ଡିଚା ଘରର ଗୋଟିଏ ଚୁଲି ପ୍ରଦାନ କରିଥିଲେ । ଆଠଗଡ ସାକ୍ଷୀ ବଧାଇଥିଲେ । ରାଜ ପ୍ରତିଷ୍ଠ ହୋଇ ହରିକୃଷ୍ଣପୁର ଶାସନରୁ କିଛି ଅଂଶ ପାଇଥିଲେ । ସେ

ଚ଼ଙ୍କ ହାଇରେ ଗୋଟିଏ ମନ୍ଦିର ପ୍ରତିଷ୍ଠା କରିଥିଲେ । ସେ ମଧ୍ୟ ବଡ଼ଖେମୁଣ୍ଡି ରାଜ ଦରବାରରେ ସମ୍ମାନିତ ହୋଇଥିଲେ । ସେଠିକାର କବି ଚକ୍ରପାଣି ପଟ୍ଟନାୟକ (ଚକ୍ରବାକ ଚକ୍ରପାଣି)ଙ୍କର ମନ୍ତ୍ର ଗୁରୁ ଥିଲେ । କବି ବାସୁଦେବ ରଥ ଯେଉଁ ଗଙ୍ଗାବଂଶାନୁ ଚରିତମ୍ ଚମ୍ପୂ ଲେଖିଛନ୍ତି ସେଥିରେ ତାଙ୍କର ସୁହୃଦ୍ ଥିଲେ ।

ପୁରୀରୁ ଫେରିବା ପରେ ଆଠଗଡ଼ ରାଜାଙ୍କର ଅନୁତାପ, ଓ ଅନୁରୋଧ ଯୋଗୁଁ ପୂର୍ବ ଅମାନୁଷିକ ଘଟଣା ପାଶୋରି ଦେଇ ରାଜ୍ୟର ରାଜ ସଭାର ପଣ୍ଡିତ ହୋଇ ମୁଖ୍ୟ ପ୍ରଶାସନିକ ଦାୟିତ୍ୱରେ ରହିଥିଲେ ।

କବିଙ୍କର ଲେଖା ଭିତରେ—(୧) ରାଘବ ଯାଦବୀୟ (ଦ୍ୱ୍ୟର୍ଥୀ-କାବ୍ୟ) (୨) ବସୁ ପ୍ରକାଶ୍ୟା (୩) ଫଣିଭାଷ୍ୟ ଟୀକା (୪) ମୁକ୍ତାନାଟିକା, (୫) ବ୍ୟାକରଣ (୬) ବସୁ ଚଉତିଶା (୭) ଦଶ ଅବତାର 'ବ' ଅକ୍ଷର ଆରମ୍ଭରେ ଲେଖା ।

କଥିତ ଅଛି ଯେ ତାଙ୍କର ପୁତ୍ର ବଧୂ ଶଶି ମଧ୍ୟ କବିତା ରଚନା କରି ପାରୁଥିଲେ । ସେ ଶ୍ୱଶୁରଙ୍କର ରଚନାବଳୀକୁ ନିଜ ହାତରେ ଲେଖୁଥିଲେ ।

ବସୁ ପ୍ରହରାଜଙ୍କ ପୁତ୍ରଙ୍କ ନାମ ଦୟାନିଧି ତର୍କ ପଞ୍ଚାନନ ପୁରୋହିତ । ସେ ମଧ୍ୟ 'ଅଭିନବ ରାମାୟଣ' ରଚନା କରିଥିଲେ ।

ବସୁ ପ୍ରହରାଜ ଓଡ଼ିଶାର ଜଣେ ବଶିଷ୍ଠ ତାନ୍ତ୍ରିକ ଥିଲେ । ସେ ବହୁତ ଅଲୌକିକ କାର୍ଯ୍ୟ କରି ଜନସାଧାରଣରେ ବିଶେଷ ପରିଚିତ

ଥିଲେ । ତନ୍ତ୍ରଶାସ୍ତ୍ର ଭାରତର ନିଜସ୍ୱ । ଏହାର ଉତ୍ପତ୍ତି ହେଉଛି ବେଦରୁ । ଏହାକୁ ଅଥର୍ବ ବେଦର ଉପବେଦ ବୋଲି ଆଖ୍ୟା ଦିଆ ଯାଉଛି । ତନ୍ତ୍ର ଦ୍ୱାରା ଐହିକ ଓ ପାରଲୌକିକ ଉଭୟ କ୍ଷେତ୍ରରେ ସୁଫଳ ଲାଭ ହୋଇପାରେ । ଭାରତର ମୁନି ଋଷିମାନେ ତନ୍ତ୍ର ସାଧନାରେ ଶୀର୍ଷସ୍ଥାନର ଉପନୀତ ହୋଇଥିଲେ ।

ତନ୍ତ୍ରଶାସ୍ତ୍ର ବାମାଗ୍ରର ତନ୍ତ୍ର ଓ ଦକ୍ଷିଣାଗ୍ରର ତନ୍ତ୍ର ରୂପେ ବିଭକ୍ତ । ଓଡ଼ିଶାରେ ଏହା ବହୁ ଉତ୍‌ଥାନ-ପତନଧାରା ମଧ୍ୟରେ ଗତି କରି ଏହାର ପ୍ରଭାବ ଦୁଇଶତ ଖ୍ରୀ:ଅ: ଠାରୁ ଦ୍ୱାଦଶ ଶତାବ୍ଦୀ ମଧ୍ୟରେ ବିସ୍ତାର ଲାଭ କରିଥିଲେ । ଏହି ସାଧନା ଶାସ୍ତ୍ର ଯୋଗୁଁ ଆୟତ୍ତ କରିବା ପାଇଁ ନିର୍ମଳ ଚରିତ୍ର, ନିଷ୍ଠା, ଧୈର୍ଯ୍ୟ ସହ ଅବିଚଳିତ ଏକାଗ୍ର ଚିତ୍ତ ଦରକାର ହୁଏ । ମାନବ ସମାଜର ସୁଖ ସମୃଦ୍ଧି ପ୍ରଦାନ, ମୋକ୍ଷଦାନ କରିବାରେ ତନ୍ତ୍ରଶାସ୍ତ୍ର ଶ୍ରେଷ୍ଠ । ସିଦ୍ଧ ତାନ୍ତ୍ରିକମାନେ ନିଜର ସାଧନା ବଳରେ ଅନେକ ଅସାଧ୍ୟ ସାଧନ କରି ଉକ୍ତ ଶାସ୍ତ୍ରର ଉପାଦେୟତା ସମ୍ବନ୍ଧରେ ବହୁ ପ୍ରମାଣ ଦେଇଛନ୍ତି । ସ୍ତମ୍ଭନ, ମାରଣ, ମୋହନ, ବଶୀକରଣ, ଉଚ୍ଚାଟନ ମଧ୍ୟରୁ ମାରଣ ଓ ମୋହନ କ୍ରିୟା ତନ୍ତ୍ର ଶାସ୍ତ୍ରର ଅଧର୍ମ ମାର୍ଗ ରୂପେ ନାମିତ ହୋଇଅଛି । 'ନୀଳତନ୍ତ୍ର' ଓ 'କୁମାରୀ ତନ୍ତ୍ର'ରେ ନାରୀର ପ୍ରାଧାନ୍ୟତା ସ୍ୱୀକାର କରାଯାଇଛି ।

ବନ୍ଧୁ ପ୍ରହରାଜଙ୍କର ଆଠଗଡ଼ର ପରବର୍ତ୍ତୀ କବି ଥିଲେ କବିସୂର୍ଯ୍ୟ ଓ ଯଦୁମଣି ମହାପାତ୍ର । ଯଦୁମଣି ହାସ୍ୟ ରସରେ କହିଥିଲେ—

'ଧନ୍ୟ ଆଠଗଡ଼ ଲୀଳା
ବସି ପ୍ରହରାଜେ ଅନ୍ଧାରେ ଆସନ୍ତି
ଗୃକରଙ୍କ ଆଗେ ହୁଳା ।'

ଦାନ ସ୍ୱରୂପରେ ତାଙ୍କ ପରିବାରକୁ ବୀରଜଗନ୍ନାଥପୁର, ଅଢ଼େଇ ବରଗାଁ, ଜରଡ଼ରୁ ୨୦୦ ଏକର ଓ ଭୂତସରପିଙ୍ଗିରୁ ୧୦୦ ଏକର ଜମି ପାଇଥିଲେ ।

୧୭୯୮ ଖ୍ରୀ:ଅ:ରେ ତାଙ୍କ ପରିବାରର ଯେଉଁ ଭାଗବଣ୍ଟା ଦଲିଲ ହୋଇଥିଲା, ସେଥିରୁ ଜଣାଯାଏ ଯେ ମୁସଲମାନ ବାଦୋସ ଖାଁ ତାଙ୍କୁ କୃତଜ୍ଞତା ଜଣାଇ ବହୁତ ଜମି ଦାନ କରିଥିଲେ ।

ଜନ ଶ୍ରୁତିରୁ ଶୁଣାଯାଏ ଯେ ବସୁ ପ୍ରହରାଜ ଥରେ ସ୍ନାନ କରିବାକୁ ଗଲା ସମୟରେ ଜଣେ କ୍ଷତ ବିକ୍ଷତ ଅସହାୟ ଯବନ ଯୁବକକୁ ଦେଖିଲେ । ହିନ୍ଦୁର ମାନବିକତା ଦୃଷ୍ଟିରୁ ତାଙ୍କୁ ଘରକୁ ନେଇ ସେବା ଶୁଶ୍ରୂଷା କଲେ । ଔଷଧ, ଉତ୍ତମ ଖାଦ୍ୟ ଦେଇ ଆନ୍ତରିକ ସେବା ଯୋଗୁଁ ସେ ସୁସ୍ଥ ସବଳ ହୋଇ ଉଠିଲା ପରେ ବିଦାୟ ନେଇଗଲା । ଭାଗ୍ୟବଶତଃ ଏହି ଯୁବକ ଟଙ୍କା କଟକର ରାଜା ହେଲେ ।

ଥରେ ବସୁ ପ୍ରହରାଜ ଚିଲିକା କଲ୍ୟାଣ ନଗର ଟଙ୍କା ମୁହାଣକୁ ସାଗର ବୁଡ଼ ପକାଇବାକୁ ଯାଇଥିଲେ । ରାସ୍ତାରେ ଗଞ୍ଜାମଠାରେ ଶଗଡ ବଳଦ ରଖିଥିଲେ । ରାତିରେ ବଳଦ ଯାଇ ରାଜାଙ୍କର କ୍ଷେତ ଖାଇବାରୁ ଜଗାଳି ଯାଇ ରାଜାଙ୍କୁ ଜଣାଇଲା । ତାଙ୍କର ଆଦେଶ ଅନୁଯାଇ ପ୍ରହରାଜ ଆପଣେ ଶ୍ରୀ ସ୍ୱାମୀରେ ହସ ହସ ମୁଖରେ ଉପସ୍ଥିତ ହେଲେ । ମାତ୍ର ନବାବ ସିଂହାସନ ତ୍ୟାଗ କରି ଭକ୍ତିରେ ପ୍ରଣାମ କରି ପୂର୍ବ ଘଟଣା ମନେ ପକାଇ କୃତଜ୍ଞତା ଜଣାଇଲେ । 'କହିଲେ ମୋତେ ଚିହ୍ନି ପାରୁଛନ୍ତି ? ଅସହାୟ ଅବସ୍ଥାରେ ଆପଣଙ୍କର ଶରଣ ପଶିଥିଲି । ଆପଣଙ୍କର ଅଶେଷ ଦୟାରୁ ମୋର ପ୍ରାଣ ରକ୍ଷା ହୋଇଥିଲା । ଆପଣଙ୍କ ଯାହା ଇଚ୍ଛା ମାଗନ୍ତୁ, ମୁଁ ଦେବି' । ପ୍ରତ୍ୟୁତ୍ତରରେ ପ୍ରହରାଜେ କହିଲେ, ମୁଁ

ଯଜ୍ଞ କରୁଛୁ ସେଠାକୁ ଆପଣ ଆସିବେ । ଯଜ୍ଞ ଶେଷ ଦିନ ସୂର୍ଯ୍ୟାସ୍ତ ପର୍ଯ୍ୟନ୍ତ ମୁଁ ଲଙ୍ଗଳ ଧରିବି । ଯେତିକ ଆୟତ୍ତରେ ସିଆର ଗାର ପଡ଼ିବ ସେତିକ ଜମି ମତେ ଦାନ କରିବେ ।" ସେ ସ୍ୱୀକୃତ ହେଇ ହସି-ହସି କହିଲେ, "ଏ ତ ଛାର କଥା । ମାଗିଥିଲେ ସିଂହାସନ ଦେଇ-ଥା'ନ୍ତି ।" ନବାବ ସେହି ପରିମାଣ ଜମି ଦାନ କରିଥିଲେ ।

କମ୍ବଦନ୍ତୀ କହେ ଯେ ବସୁ ପ୍ରହରାଜ ଯଜ୍ଞ କଲା ସମୟରେ ମ୍ନାନ ସାରି ଜାକୁ ଭଣ୍ଡାରକୁ ସାଥିରେ ଧରି ଫେରୁଥିଲେ । ତାଙ୍କର ସମ୍ମୁଖରେ ଦୁଇଜଣ ତେଜପାପ୍ତ ଯୁବତୀଙ୍କୁ ଯଜ୍ଞ-ଯାତ୍ରୀମାନଙ୍କ ଗହଣରେ ଦେଖିଲେ । ବସୁ ପ୍ରହରାଜ ଯଜ୍ଞରେ ବ୍ୟସ୍ତ ଥିଲା ବେଳେ ତାଙ୍କର ପରିବାର ଲୋକେ ଘରକୁ ଆସିଥିଲେ । ସ୍ତ୍ରୀ ଲୋକମାନେ ନୂଆ ଚୁଡ଼ି ପିନ୍ଧିଲେ । କାହାରି ପ୍ରହରାଜଙ୍କୁ ସମସ୍ତଙ୍କର କାଚଚୁଡ଼ିର ପଇସା ମାଗିଲା । ଦେଖିଲେ ଆଉ ଦୁଇଜଣ କଏ ଅଧିକ ଚୁଡ଼ି ପିନ୍ଧିଛନ୍ତି । ସେ ପୂଜା ସମୟରେ ଜାଣି ପାରିଲେ ଯେ ଉକ୍ତ ଦୁଇ ଭଉଣୀ ତାରା ଓ ତାରିଣୀ ଅଟନ୍ତି । ସେମାନେ ଝିଅ ରୂପରେ ତାଙ୍କ ଘରେ କିଛି ଦିନ ରହିଲେ । କିଛିଦିନ ପରେ ପ୍ରହରାଜେ ଜରୁରୀ କାମରେ ବାହାରକୁ ଯାଇଥିଲେ । ଏହି ଅବସରରେ କିଛି ଅଠିକଣା ହେବାରୁ ତାରା-ତାରିଣୀ ଘରୁ ବାହାରି ଋଷିକୁଲ୍ୟା ନଦୀ ତଟ ତାରା ତାରିଣୀ ପର୍ବତ (ରତ୍ନଗିରି) ପୀଠସ୍ଥଳକୁ ଚାଲିଗଲେ । ସେ ଫେରି ଦେଖନ୍ତି ଯେ, ସେମାନେ ଘରେ ନାହାନ୍ତି । ରାତିରେ ପ୍ରହରାଜଙ୍କୁ ସ୍ୱପ୍ନରେ କହିଲେ, ଆମେ ଏହି ପୀଠ ସ୍ଥଳକୁ ସର୍ବସାଧାରଣଙ୍କର ପାଇଁ ଆସିଛୁ । ଆମକୁ ପାଶୋରି ଦେବ ନାହିଁ । ବେଳେବେଳେ ଆସୁଥିବ । ପ୍ରତିବର୍ଷ ଆମ-ପାଇଁ ଚଇତ ମାସ ମଙ୍ଗଳବାରେ ଭୋଗ ପଠାଇବ । ବର୍ତ୍ତମାନ ସୁଦ୍ଧା ଚଇତମାସ ପ୍ରଥମ ମଙ୍ଗଳ ବାରରେ ପ୍ରହରାଜଙ୍କ ଘରୁ ପୂଜାଭୋଗ ଗଲେ ଯାଇ ତାରା ତାରିଣୀ ଦେବୀଙ୍କର ପୂଜା ଅର୍ଚ୍ଚନା ଆରମ୍ଭ ହୁଏ ।

# ଆଠଗଡ଼ର କବିଚନ୍ଦ୍ର

ଗଞ୍ଜାମ ଜିଲ୍ଲା ଆଠଗଡ଼ ତାଲୁକା ନାଠୁଳି ଗ୍ରାମରେ ଅଷ୍ଟାଦଶ ଶତାବ୍ଦୀର ନବଦଶକରେ କବିଚନ୍ଦ୍ର ଜନ୍ମ ଗ୍ରହଣ କରିଥିଲେ । ସେ ଦେଉଳଛାମୁ ବୋଦଲା ଭୁଲିପୂର୍ବ ବଧାପୁଳ ଜଗନ୍ନାଥ ମିଶ୍ରଙ୍କର ନଣି ଗୋସାଇଁ ବାପା । ସେ କବିସୂର୍ଯ୍ୟଙ୍କର ସମସାମୟିକ ଥିଲେ । ତାଙ୍କ ସମୟରେ ବାଲୁଙ୍କେଶ ହରିଚନ୍ଦନଙ୍କର (୧୮୧୦—୧୮୫୧) ସମୟରେ ଏକ ବର୍ଷ ପାଇଁ ସଭା କବି ଥିଲେ ।

ତାଙ୍କର ସଂସ୍କୃତ ଓ ଓଡ଼ିଆରେ ବିଶେଷ ପ୍ରବେଶ ଥିଲା । କଥିତ ଅଛି ଯେ ନିଜର ପାଣ୍ଡିତ୍ୟ ପାଇଁ କଲିକତା ଦକ୍ଷିଣ କାଳୀଙ୍କଠାରେ ମନ୍ତ୍ର ସାଧନା କରିଥିଲେ । ମାତ୍ର ତାଙ୍କର କବିସୂର୍ଯ୍ୟଙ୍କ ପରି ପାଣ୍ଡିତ୍ୟ ନ ଥିବା ଯୋଗୁଁ ସେ ଦ୍ୱିତୀୟ ବାର ସେଠାରେ ତାଙ୍କୁ ପାଣ୍ଡିତ୍ୟରେ ଟପିଯିବା ପାଇଁ ସାଧନାରତ ହେଲେ । କାଳୀ ପ୍ରସନ୍ନ ହୋଇ କହିଲେ, 'ତୁମେ ତାଙ୍କୁ ପାଣ୍ଡିତ୍ୟରେ ଟପି ପାରିବ ନାହିଁ । ଯଦି ତାଙ୍କୁ ହରାଇ-ବାକୁ ବର ମାଗିବ ତାହାହେଲେ ତୁମର ଆୟୁଷ ଏକ ବର୍ଷରେ ଶେଷ ହେବ ।' ତାହା ସତ ହେଲା ।

ଆଠଗଡ଼ ରାଜା କବିଚନ୍ଦ୍ରଙ୍କୁ ରାଜସଭାରେ ପଣ୍ଡିତ କରି ରଖିବା ଯୋଗୁଁ କବିସୂର୍ଯ୍ୟ ଅତି ଦୁଃଖରେ କହିଥିଲେ—

'ଅନ୍ଧା ରଜା ଏ ରହିବ ନାହିଁ
ଅନ୍ଧାର ଯାଏଁ ରହିବ ନାହିଁ ।'

ତା'ର ଅର୍ଥ ହେଲା ମୁଁ ଅନ୍ଧ ରାଜାଙ୍କ ପାଖେ ରହିବି ନାହିଁ । ମୁଁ କବିସୂର୍ଯ୍ୟ, ସୂର୍ଯ୍ୟ ପରି ଅନ୍ଧାର ପାଏଁ ରହିବି ନାହିଁ । କେବଳ କବିଚନ୍ଦ୍ର ଚନ୍ଦ୍ର ରୂପେ ରାତିକୁ ରହିବେ ।

କବିସୂର୍ଯ୍ୟ ଅଭିମାନରେ ଆଠଗଡ଼ରୁ ପାରିକୁଦ ରାଜା ମାଳାଦ୍ରି-ବିହାରୀ ହରିଚନ୍ଦନଙ୍କ ନିକଟକୁ ଯିବା ପାଇଁ ବାହାରିଲେ । ପାରିକୁଦ ଠାରେ କ୍ଲାନ୍ତ ହୋଇ ଗୋଟିଏ ମନ୍ଦିରରେ ବିଶ୍ରାମ ନେଲେ । କବି-ସୂର୍ଯ୍ୟଙ୍କର କେହି ପରିଚୟ ଲୋକ ନ ଥିଲେ । ସେ ବହୁ ଭାବି ଭାବି ମନ୍ଦିର ବେଢ଼ା କାନ୍ଥରେ ରାଜାଙ୍କ ନାମରେ କବିତା ଲେଖିଲେ—

'ତମ୍ଭାଧିକୁଦାଧୀପ ଧୀବରସ୍ୟ
ମତ୍ସ୍ୟୋପୋଜୀବୀ ଲବଣପୋଜୀବୀ ।'

ରାଜାଙ୍କୁ ଯାଇ ଖବର କହିଲେ, ଜଣେ ଲୋକ ଆପଣଙ୍କ ନାମରେ ବେଢ଼ାରେ ଲେଖିଛନ୍ତି ଯେ—ତୁମେ ଦ୍ୱୀପ ଅଧିପତି କେଉଟ । ମାଛ ମାରି, ଲୁଣ ବିକି ଜୀବନ ପରିପୋଷଣ କରୁଛ । ରାଜାଙ୍କ ପାଖକୁ ତାଙ୍କୁ ଡାଗିଦ୍‌ ହେଲା । ତାଙ୍କୁ ପଚାରିଗଲା ଯେ ଏପରି କାହିଁକି ଲେଖିଲ ? ସେ କହିଲେ—ସ୍ୱାମୀ ତୁମେ ଦ୍ୱୀପ ଅଧିପତି । ଧୀ ଯେ ଧୀଶକ୍ତିରେ ବଳୀୟାନ ଏବଂ ମାଛ ଓ ଲୁଣରୁ ଆପଣ ଧନ ପାଉଛନ୍ତି । ରାଜା ଶୁଣି ଖୁସି ହୋଇ ତାଙ୍କୁ ରାଜ ସଭାରେ କିଛି ଦିନ ରଖିଲେ । ସେ କେତେକ କବିତା ଲେଖି ରାଜାଙ୍କ ନାମରେ ଭଣିତ କରିଛନ୍ତି । ପରେ ଆଠଗଡ଼ ରାଜାଙ୍କ ଅନୁରୋଧ କ୍ରମେ ଆଠଗଡ଼କୁ ଫେରି ସଭା କବି ଭାବେ ରହିଲେ ।

କବିଚନ୍ଦ୍ର ଉନବିଂଶ ଶତାବ୍ଦୀର ତୃତୀୟ ଦଶକ ଭିତରେ ମୃତ୍ୟୁବରଣ କରିଥିବା ଜଣାଯାଏ ।

# ପଣ୍ଡିତ ରଘୁନାଥ-
# ରାଜଗୁରୁ ମହାପାତ୍ର

କବି ଗଞ୍ଜାମ ଜିଲ୍ଲା ଆଠଗଡ ତାଲୁକା ଛତିନା ଗ୍ରାମରେ ଅଷ୍ଟାଦଶ ଶତାବ୍ଦୀର ଅଷ୍ଟ ଦଶକରେ ଜନ୍ମଗ୍ରହଣ କରିଥିବା ଜଣାଯାଏ । ତାଙ୍କର ସଂସ୍କୃତ ଓ ଓଡ଼ିଆ ଭାଷାରେ ପାଣ୍ଡିତ୍ୟ ଥିଲି । ସେ ଜଣେ ଅସାଧାରଣ ପଣ୍ଡିତ ଥିଲେ । ତାଙ୍କର ବିଚକ୍ଷଣ ବୁଦ୍ଧି ଓ ରାଜନୀତିରେ ବିଶାରଦ ଥିବା ଯୋଗୁଁ ଖଲିକୋଟ ରାଜା ନାରାୟଣ ମର୍ଦ୍ଦରାଜ ତାଙ୍କୁ ରାଜ ସଭାରେ ପଣ୍ଡିତ ରୂପେ ସ୍ଥାନ ଦେଇଥିଲେ । ରାଜା ଏହି ବିଚକ୍ଷଣ ବୁଦ୍ଧି ଓ ପାଣ୍ଡିତ୍ୟରେ ମୁଗ୍ଧ ହୋଇ ତାଙ୍କୁ ରାଜ୍ୟର ପରିଚାଳନା ପାଇଁ ଦେବାନ୍ ରୂପେ ମନୋନୀତ କରିଥିଲେ । କବି ଟିକିଟି ରାଜା ବିଶ୍ୱମ୍ଭର ରାଜେନ୍ଦ୍ରଙ୍କର ମଧ୍ୟ କିଛି ଦିନ ଦେବାନ୍ ଥିଲେ । ସେ ଟିକିଟି ରାଜାଙ୍କ ନାମରେ 'ରଘୁନାଥ ବିଳାସ' 'ଉଷା ବିଳାସ' 'ରାଧା ପ୍ରେମ-ଲୀଳା' ରଚନା କରିଥିଲେ । ସେ କବିସୂର୍ଯ୍ୟଙ୍କର ଏକନିଷ୍ଠ ଭକ୍ତ ଥିଲେ । ରଘୁନାଥ ରାଜଗୁରୁ 'ଚୌପଦୀ କଳାନିଧି' ନାମକ ଖଣ୍ଡିଏ ମନୋହର ଉପାଦେୟ ସଙ୍ଗୀତ ବହି ଲେଖିଛନ୍ତି ।

ବସୁ ପ୍ରହରାଜ, କବିସୂର୍ଯ୍ୟ, ଯଦୁମଣି, ନାଠୁକି କବିଚନ୍ଦ୍ର ଓ ରଘୁନାଥ ରାଜଗୁରୁ ମହାପାତ୍ରଙ୍କର ସାରସ୍ୱତ ଭଣ୍ଡାରକୁ ଯେଉଁ ଅମୂଲ୍ୟ ଦାନ ଦେଇଛନ୍ତି, ସେଥିପାଇଁ ଆଜି ଆଠଗଡ଼ର ସମ୍ମାନ, ଖ୍ୟାତି ବହୁ ଉଚ୍ଚରେ ।

ମଧୁସୂଦନ ହରିଚନ୍ଦନ ଜଗଦେବ ଆଠଗଡ଼ର ରାଜା ଥିଲେ । ସେ ବୈଶାଖ ମାହାତ୍ମ୍ୟର ସରଳ ଅନୁବାଦ, ନଳ ଚରିତ ଓ ସଂସ୍କୃତ-ରେ ଚଣ୍ଡୀର ପଦ୍ୟାନୁବାଦ 'ଦୁର୍ଗା ରହସ୍ୟ' ଲେଖିଥିଲେ । ଲକ୍ଷ୍ମୀ-ଶରଣ ଭଞ୍ଜ ଆଠଗଡ଼ ପାଖର ରଘୁନାଥପୁର ଶାସନ ଅଧିବାସୀ । ସେ କେତେକ ଖଣ୍ଡ ସିଦ୍ଧ କବିତା ଲେଖିଛନ୍ତି । ଆଠଗଡ଼ ରାଜା ବାଲୁଙ୍କେଶ ହରିଚନ୍ଦନଙ୍କ ପୃଷ୍ଠପୋଷକତାରେ କବିସୂର୍ଯ୍ୟଙ୍କ ଯଶ, କବିତ୍ୱ ଚରମ ସୀମାରେ ଉପନୀତ ହୋଇଥିଲା । ତା'ର ପ୍ରତିଦାନ ସ୍ୱରୂପ ସେ ତାଙ୍କର ଅନେକ ରଚନା ରାଜାଙ୍କ ନାମରେ ଭଣିତ କରିଥିଲେ ।



# ରାଜକବି ଗଜପତି ଜଗନ୍ନାଥ ନାରାୟଣ ଦେବ

ପୁରାତନ କାଳରେ ଗଙ୍ଗ ବଂଶୀୟ କ୍ଷତ୍ରିୟମାନେ ଗଙ୍ଗା ନଦୀ କୂଳରେ ବାସ କରୁଥିଲେ । ସେମାନଙ୍କୁ ଗଙ୍ଗଜାତି ବୋଲି କୁହାଯାଉଥିଲା । ସେହି ଜାତିର ଏକ ଶାଖା ଦକ୍ଷିଣ ମହୀଶୂର ଅଞ୍ଚଳକୁ ଯାଇ ସେଠାରେ ରାଜବଂଶ ସ୍ଥାପନ କଲେ । ସେହି ବଂଶ ପଶ୍ଚିମ ଗଙ୍ଗବଂଶ ନାମରେ ଅଭିହିତ ହେଲା । ଏହି ପଶ୍ଚିମ ଗଙ୍ଗ ବଂଶର ଏକ ଶାଖା ଉତ୍ତର ପୂର୍ବ ଦିଗକୁ ଗତିକରି କଳିଙ୍ଗ ଅଧିକାର କଲେ ଓ ୫ମ ଶତାବ୍ଦୀ ବେଳକୁ ଦନ୍ତପୁର (ପାଲୁରୁ)ରେ ରାଜଧାନୀ ସ୍ଥାପନ କଲେ ।

ଏମାନଙ୍କୁ ପୂର୍ବ ଗଙ୍ଗବଂଶ ବୋଲି କୁହାଯାଏ । କାଳକ୍ରମେ ଏହି ଗଙ୍ଗବଂଶ ଅଧିକ ଶକ୍ତିଶାଳୀ ହୋଇ ପ୍ରତିପତ୍ତି ଲାଭ କଲା । ସେମାନେ ଦନ୍ତପୁରଠାରୁ ୧୦୭୭ ଖ୍ରୀ:ଅ:ରେ କଳିଙ୍ଗନଗର (ମୁଖ୍ୟ-କଳିଙ୍ଗ ବା ମୁଖଲିଙ୍ଗମ୍)କୁ ରାଜଧାନୀ ଉଠାଇ ଆଣିଲେ । ଚୋଡ଼ଗଙ୍ଗଙ୍କ ସମୟରେ ଉତ୍କଳ ଅଧିକାର କରି କିଛି ଦିନ କଳିଙ୍ଗନଗରୀ ଠାରୁ ଯଯାତି ନଗରକୁ ରାଜଧାନୀ ଉଠି ଆସିଥିଲା । ତୃତୀୟ ଅନଙ୍ଗ ଦେବ (୧୧୩୮)ଙ୍କ ସମୟରେ କଟକ ଓଡ଼ିଶାର ରାଜଧାନୀ ରୂପେ ଥିଲା । ପଞ୍ଚଦଶ ଶତାବ୍ଦୀର ପ୍ରଥମ ଭାଗ ପର୍ଯ୍ୟନ୍ତ ଗଙ୍ଗବଂଶର ରାଜତ୍ଵ ଥିଲା ।

ଦେବେନ୍ଦ୍ର ବର୍ମା ରାଜରାଜ ପ୍ରଥମଙ୍କ ମୃତ୍ୟୁ ପରେ ତାଙ୍କ ପୁତ୍ର ଅନନ୍ତ ବର୍ମା ଚୋଡ଼ଗଙ୍ଗ ଦେବ ୧୦୭୭ ଖ୍ରୀ:ଅ:ରେ କଳିଙ୍ଗ ନଗରରେ ସିଂହାସନ ଆରୋହଣ କରି ତ୍ରିକଳିଙ୍ଗାଧିପତି ଉପାଧି ଗ୍ରହଣ କଲେ । ସେହି ସମୟକୁ ଉତ୍ତରରେ ଋଷିକୁଲ୍ୟା, ଦକ୍ଷିଣରେ ସିମାଞ୍ଚଳ, ପଶ୍ଚିମରେ କୋଶଳ, ପୂର୍ବରେ ବଙ୍ଗୋପସାଗର ମଧ୍ୟରେ ରାଜ୍ୟ ସିମାବଦ୍ଧ ଥିଲା । ମାତ୍ର ତାଙ୍କର ବୀରତ୍ଵ ଯୋଗୁଁ ତାଙ୍କ ସାମ୍ରାଜ୍ୟ ୧୧୩୫ ଖ୍ରୀ:ଅ: ବେଳକୁ ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ବିସ୍ତୃତ ଥିଲା । ସୋମ ବଂଶର ଶେଷ ରାଜା ସୁବର୍ଣ୍ଣ କେଶରୀଙ୍କୁ ପରାସ୍ତ କରି ସେ ବଂଶ ଧ୍ଵଂସ କରିଥିଲେ ।

ଚୋଡ଼ଗଙ୍ଗ ଦେବଙ୍କ କୀର୍ତ୍ତି ମଧ୍ୟରେ ସାରଙ୍ଗଗଡ଼, ଯାଜପୁର ଗଣେଶ୍ଵର ମନ୍ଦିର । ସେ ଜଗନ୍ନାଥ ମନ୍ଦିର ନିର୍ମାଣ କାର୍ଯ୍ୟ ଆରମ୍ଭ କରିଥିଲେ ଓ ଅନଙ୍ଗ ଭୀମଦେବ ନିର୍ମାଣ କାର୍ଯ୍ୟ ଶେଷ କରିଥିଲେ । ୧୧୪୭ ଖ୍ରୀ:ଅ:ରେ ଚୋଡ଼ଗଙ୍ଗ ଦେବଙ୍କର ମୃତ୍ୟୁ ହୋଇଥିଲା ।

ଓଡ଼ିଶାରେ ଗଙ୍ଗ ଓ ସୂର୍ଯ୍ୟ ବଂଶର ରାଜାମାନଙ୍କ ସମୟରେ ଓଡ଼ିଶାର ସାହିତ୍ୟ, ସଂସ୍କୃତି, କଳା ଓ ଭାସ୍କର୍ଯ୍ୟ ଚରମ ସୀମାରେ ଉପନୀତ ହୋଇ ସ୍ୱର୍ଣ୍ଣଯୁଗ ବୋଲି ଅଭିହିତ ହୋଇଥିଲା ।

ପ୍ରଥମ ନରସିଂହ ଦେବଙ୍କ ରାଜତ୍ୱ ସମୟରେ ଗଙ୍ଗ ବଂଶର ସାମରିକ ଓ ସାଂସ୍କୃତିକ ଗୌରବ ଚରମ ସୀମାରେ ଉପନୀତ ହୋଇ ଥିଲା । ପରେ ତାଙ୍କ ପୁତ୍ର ପ୍ରଥମ ଭାନୁଦେବ ୧୭ ବର୍ଷ ପର୍ଯ୍ୟନ୍ତ ରାଜା ହେଲେ ଓ ୧୨୭୮ ଖ୍ରୀ:ଅ:ରେ ମୃତ୍ୟୁବରଣ କଲେ । ତାଙ୍କ ପରେ ଦ୍ୱିତୀୟ ନରସିଂହ ଦେବ ୨୮ ବର୍ଷ ରାଜତ୍ୱ କଲେ । ଦ୍ୱିତୀୟ ନର-ସିଂହ ଦେବଙ୍କ ପୁତ୍ର ଦ୍ୱିତୀୟ ଭାନୁଦେବ ୧୩୦୬ ଖ୍ରୀ:ଅ:ରେ ସିଂହାସନ ଆରୋହଣ କରି ୧୩୨୮ ଖ୍ରୀ:ଅ:ରେ ପ୍ରାଣତ୍ୟାଗ କଲେ । ତାଙ୍କ ପୁତ୍ର ତୃତୀୟ ନରସିଂହ ଦେବ ୨୪ ବର୍ଷ ରାଜତ୍ୱ କରିଥିଲେ । ତାଙ୍କ ପରେ ତାଙ୍କ ପୁତ୍ର ତୃତୀୟ ଭାନୁଦେବ ୧୩୫୨ ଖ୍ରୀ:ଅ:ରେ ରାଜା ହେଲେ । ୧୩୭୮ ଖ୍ରୀ:ଅ:ରେ ତାଙ୍କର ମୃତ୍ୟୁ ହେଲା । ପରେ ତାଙ୍କ ପୁତ୍ର ଚତୁର୍ଥ ନରସିଂହ ଦେବ ୩୭ ବର୍ଷ ରାଜତ୍ୱ କରିଥିଲେ । ଏହାଙ୍କ ସମୟରେ ଓଡ଼ିଶାର ଦକ୍ଷିଣ ସୀମାରେ ଅନ୍ଧ୍ର ରେଡ଼ିମାନେ ସିମାଞ୍ଚଳ ଦଖଲ କରିଥିଲେ । ୧୪୧୪ ଖ୍ରୀ:ଅ:ରେ ତାଙ୍କ ମୃତ୍ୟୁ ହୋଇଥିଲା ।

ଏହାଙ୍କ ପରେ ଗଙ୍ଗ ବଂଶର ଶେଷ ରାଜା ଚତୁର୍ଥ ଭାନୁଦେବ (ନିଃଶଙ୍କ ଭାନୁଦେବ ବା ମତ୍ତ ଭାନୁଦେବ) ୧୪୧୪-୧୪୩୫ ଖ୍ରୀ:ଅ: ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । ସେ ବିଳାସ ବ୍ୟସନରେ କାଳାତିପାତ କରିବା ଯୋଗୁଁ ରାଜ୍ୟରେ ଅଶାନ୍ତିର ବାତାବରଣ ସୃଷ୍ଟି ହେଲା ଏବଂ ଉତ୍କଳର ଅଜସ୍ର ସେନାବାହିନୀ ଅନେକ ବିପର୍ଯ୍ୟୟ ବରଣ କରିଥିଲା । ମାଳବର ସୁଲତାନ ଓଡ଼ିଶା ଆକ୍ରମଣ କରିଥିଲେ ।

ଦାକ୍ଷିଣାତ୍ୟରେ ରେଡ୍ଡିମାନେ ଆକ୍ରମଣ କରିବା ଯୋଗୁଁ ପ୍ରତିରୋଧ କରିବା ପାଇଁ ରାଜଧାନୀ ଛାଡ଼ି ଦକ୍ଷିଣକୁ ଅଭିଯାନ କଲେ ସମୟରେ ମନ୍ତ୍ରୀ ଓ ସେନାପତି ଇତ୍ୟାଦି ସାମନ୍ତ ରାଜାମାନେ କପିଳ ରାଉତରାୟ (କପିଳେନ୍ଦ୍ର ଦେବ)ଙ୍କୁ ସିଂହାସନରେ ୧୪୩୫ ଖ୍ରୀ:ଅ:ରେ ଅଭିଷିକ୍ତ କରିଥିଲେ ।

କପିଳେନ୍ଦ୍ର ଦେବ ସୂର୍ଯ୍ୟବଂଶ ପ୍ରତିଷ୍ଠା କଲେ । ଫଳରେ ଚତୁର୍ଥ ଭାନୁଦେବ ରାଜଧାନୀ ପୁଣି ଅଧିକାର ନ କରି ଗଂଗମାନଙ୍କର ମୂଳରାଜ୍ୟ କଳିଙ୍ଗର ଗୁଡ଼ାରୀକୁ ରାଜଧାନୀ କରି ପାରଳାଖେମୁଣ୍ଡି ଓ ବଡ଼ ଖେମୁଣ୍ଡି ରାଜ୍ୟକୁ ରାଜତ୍ୱ କରି ସନ୍ତୁଷ୍ଟ ହୋଇ ରହିଲେ । ଚତୁର୍ଥ ଭାନୁଦେବ ନିଃସନ୍ତାନ ଥିଲେ । ଗଙ୍ଗ ବଂଶର ରାଜାମାନେ ବହୁ ଶତାବ୍ଦୀ ଧରି ପାରଳାଖେମୁଣ୍ଡି ନିକଟସ୍ଥ (ମୁଖଲିଙ୍ଗ) କଳିଙ୍ଗନଗର ଆଦିକୁ ରାଜଧାନୀ କରି ଗଞ୍ଜାମ ଓ ଶ୍ରୀକାକୁଳମ୍ ଜିଲ୍ଲାକୁ ରାଜତ୍ୱ କରୁଥିଲେ ।

ଗଞ୍ଜାମ ଜିଲ୍ଲା ପାରଳାଖେମୁଣ୍ଡି ଗଜପତି ରାଜା ଅନନ୍ତ ପଦ୍ମନାଭ ଦେବ ଅପୁତ୍ରିକ ଥିବାରୁ ସେ ଜଗନ୍ନାଥ ନାରାୟଣଙ୍କୁ ପୋଷ୍ୟପୁତ୍ର କରିଥିଲେ । ତାଙ୍କର ଜନ୍ମ ଅଷ୍ଟାଦଶ ଶତାବ୍ଦୀର ପ୍ରଥମ ଦଶକରେ ପାରଳାଖେମୁଣ୍ଡିରେ ହୋଇଥିଲା ।

ସେ ଗଜପତି ଜଗନ୍ନାଥ ଦେବ ନାମରେ ପରିଚିତ । ସେ ବୀର, ଯୋଦ୍ଧା, କବି, ସଙ୍ଗୀତଜ୍ଞ ଓ ଦାନୀ ଥିଲେ । ତାଙ୍କର ରାଜତ୍ୱ ସମୟରେ ପ୍ରାୟ ୪୦ ବର୍ଷ ୫ ମାସ ୩ ଦିନ ତାଙ୍କର ରାଜ୍ୟ ଛତିଶଗଡ଼-ଠାରୁ ଗୋଦାବରୀ ପର୍ଯ୍ୟନ୍ତ ବିସ୍ତାରଲାଭ କରିଥିଲା । ସେ ବୈଷ୍ଣବ ଧର୍ମ ଗ୍ରହଣ କରିଥିଲେ । ତାଙ୍କର କୀର୍ତ୍ତି ଭିତରେ କପିଳେଶ୍ୱର ମହାଦେବ ମନ୍ଦିର, ବାଣପୁର ଭଗବତୀ ମନ୍ଦିର ଓ ଅନେକ ଏବଂ ବହୁତ ଶାସନ ପ୍ରତିଷ୍ଠା କରିଥିଲେ ।

ସିକାକୋଲମ ଠାରେ ନବାବ ଜାଫିର ଖାଁ ଶିବିର ସ୍ଥାପନ କରିଥିଲେ । ମୂଷାଦ୍ଦାଦାମ ନାମକ ଜଣେ ସେନାପତି ଗଞ୍ଜାଠାରେ ସେଠାର ଜମିଦାରମାନଙ୍କୁ ପରାସ୍ତ କରିବା ପାଇଁ ଯୁଦ୍ଧ ଆୟୋଜନ କରୁଥିଲେ । ନାରାୟଣ ଦେବ ତାଙ୍କୁ ପରାସ୍ତ କରିବା ପାଇଁ ତାଙ୍କର ସେନାପତି ହରିଶ୍ଚନ୍ଦ୍ର ପାତ୍ରଙ୍କୁ ଗଞ୍ଜା ପଠାଇଥିଲେ । ବିଧର୍ମୀ ରାଜା ଜାଫିର ଖାଁ । ଗଞ୍ଜାମର ଅଠଗଡ଼, ଚିକିଟି, ମନ୍ଦରସ ଇତ୍ୟାଦି ୧୮ ଜଣ ରାଜାଙ୍କୁ ବନ୍ଦୀକରି ନେଇ ଯାଉଥିଲା । ବୀର ନାରାୟଣ ଦେବ ବଡ଼ଖେମୁଣ୍ଡି ଠାରେ ମୂଷାଦ୍ଦାଦାମଙ୍କୁ ୧୭୫୮ ଖ୍ରୀ:ଅ:ରେ ପରାସ୍ତ କରି ହତ୍ୟା କଲେ ଓ ଉକ୍ତ ରାଜାମାନଙ୍କୁ ମୁକୁଳାଇ ଥିଲେ । ପଂକ୍ତି ଭୋଜନ କରାଇ ସଂସ୍କାର କରାଇଥିଲେ । ଜାଫିର ଖାଁ ଠାରୁ ବସ୍ତ୍ର ଚନ୍ଦ୍ର ହାତୀ, ନିମା ହସ୍ତିନୀ, ମହାମର ମଞ୍ଜବାଳା, ଡ଼ଙ୍କା ନୋବତ୍ ଛଡ଼ାଇ ଆଣିଥିଲେ । ପୁଣି ଗଞ୍ଜାମକୁ ଆସି ମୂଷାଦ୍ଦାଦାମ ନବାବଙ୍କୁ ହତ୍ୟା କଲେ । ଗଞ୍ଜାମରେ ରହି ନବାବଗିରି କଲେ । ଛତ୍ରଗଡ଼ ଆପ୍ତ କଲେ । ବାଣପୁରରେ ଠଣା କଲେ ।

ସେତେବେଳେ ଓଡ଼ିଶା କହିଲେ ସୁବର୍ଣ୍ଣରେଖା ନଦୀର ଦକ୍ଷିଣକୁ ଚିଲିକା ହ୍ରଦ ପର୍ଯ୍ୟନ୍ତ ବାଲେଶ୍ୱର କଟକ ଓ ପୁରୀ ଅଞ୍ଚଳକୁ ବୁଝାଉଥିଲା । ଗଞ୍ଜାମ ଜିଲ୍ଲା ଗୋଲକୁଣ୍ଡାର କୁତବଶାହି ସୁଲତାନଙ୍କ ଅଧୀନରେ ଥିଲା ।

ନାରାୟଣ ଦେବଙ୍କ ସମସ୍ତ ବେଳକୁ ମରହଟ୍ଟାମାନଙ୍କ ପ୍ରବୋକ୍ତ ଅଞ୍ଚଳଥିଲା । ଚିକାକୋଳ ସରକାରର ଏକ ଅଂଶ ରୂପେ ଗଞ୍ଜାମ ଜିଲ୍ଲା ହାଇଦରାବାଦ ନିଜାମଙ୍କ ଅଧିନ ଥିଲା । ଇଚ୍ଛାପୁର ଠାରେ ଜଣେ ନାଏବ ଅବସ୍ଥାନ କରି ଏହାର ଶାସନକାର୍ଯ୍ୟ ପରିଚାଳନା କରୁ-

ଥିଲେ । ୧୭୫୧ ଖ୍ରୀ:ଅ:ରେ ହାଇଦରାବାଦର ନିଜାମ ସଲବତଜଂଗ ଫରାସୀମାନଙ୍କ ସାହାଯ୍ୟରେ ସିଂହାସନ ଲାଭ କରିଥିବା ଯୋଗୁଁ ଦାନ ସ୍ୱରୂପ ଗଞ୍ଜାମ ଜିଲ୍ଲା ଓ ଶ୍ରୀକାକୁଲମ ସମେତ ଉତ୍ତର ସରକାର ଫରାସୀ ମାନଙ୍କୁ ଦେଇଥିଲେ । ଫରାସୀ ନେତା ବୁସୀ ଗଞ୍ଜାମ ଅଧିକାର କଲାପରେ ସେଠାରେ ତାଙ୍କର ପ୍ରତିନିଧି ରୁଟେ ମୋରାସିନ୍‌ଙ୍କୁ ଶାସନ ଦାୟିତ୍ୱ ଦେଇଥିଲେ । ସେ ଗଞ୍ଜାମର ଋଷିକୁଲ୍ୟା ନଦୀ ମୁହାଣରେ ଏକ ବାଣିଜ୍ୟ କୋଠି ସ୍ଥାପନ କରିଥିଲେ ।

୧୭୫୮ ଖ୍ରୀ:ଅ:ରେ ପେଦାପୁର ଯୁଦ୍ଧରେ ଫରାସୀମାନେ ପରାସ୍ତ ହେବା ଯୋଗୁଁ ଇଁରେଜମାନେ ଗଞ୍ଜାମ ଅଭିମୁଖେ ଅଗ୍ରସର ହେଲେ । ୧୭୫୯ ଖ୍ରୀ:ଅ:ରେ ଫରାସୀମାନେ ଗଞ୍ଜାମ ଛାଡ଼ିଲେ । ହାଇଦରାବାଦର ନିଜାମ ସଲବତ ଜଙ୍ଗଙ୍କୁ ଇଁରେଜମାନେ ତାଙ୍କୁ ରାଜା କରିବା ସାହାଯ୍ୟ ଯୋଗୁଁ କୃତଜ୍ଞତା ସ୍ୱରୂପ ୧୭୬୬ ଖ୍ରୀ:ଅ:ରେ ଇଁରେଜ ସେନାପତି ଫୋର୍ଡଙ୍କ ସହିତ ଚୁକ୍ତି ବଳରେ ଇଁରେଜମାନେ ଗଞ୍ଜାମ ସମେତ ଉତ୍ତର ସରକାର ଅଧିକାର କଲେ । ଗଞ୍ଜାମରେ ଇଁରେଜମାନେ କାର୍ଯ୍ୟାଳୟ ପାଇଁ ପୋତାଗଡ଼ ଦୁର୍ଗ ମରାମତି କରିଥିଲେ । ଗଞ୍ଜାମ ଅଧିକାର କଲାବେଳେ ନାରାୟଣ ଦେବ ପାଇକ ସେନାର ନେତୃତ୍ୱ ନେଇ ବିଦ୍ରୋହ କରି ଟିକାଲି, ହାବେଲି ଦଖଲ କରି ଇଁରେଜ ସେନାଛାଉଣୀ ଉପରେ ଅତର୍କିତ ଆକ୍ରମଣ ଚଳାଇ ତାଙ୍କର ସେନାଧ୍ୟକ୍ଷଙ୍କୁ ବନ୍ଦୀ କଲେ । ପରେ "କର୍ଣ୍ଣେଲ୍ ପିଚ୍" ଜଲମୁରଠାରେ ତାଙ୍କୁ ପରାସ୍ତ କଲେ ।

ଖୋର୍ଦ୍ଧାର ରାଜା ବୀରକିଶୋର ଦେବଙ୍କ ସମୟରେ ଗଙ୍ଗବଂଶର ରାଜା ଚତୁର୍ଥ ଭାନୁଦେବଙ୍କ ବଂଶଧର ପାରଳାଖେମୁଣ୍ଡିର ରାଜା

ଜଗନ୍ନାଥ ନାରାୟଣ ଦେବ ଆଉଥରେ ନିଜ ବଂଶ ପ୍ରତିଷ୍ଠା କରିବା ପାଇଁ ୧୭୬୦ ଖ୍ରୀ.ଅ.ରେ ଖୋର୍ଦ୍ଧା ଆକ୍ରମଣ କରି ବୀରକିଶୋର ଦେବଙ୍କୁ ପରାସ୍ତ କରି ରାଜା ହୋଇଥିଲେ ।

ସେତେବେଳେ ଓଡିଶାର ଅଧିକାଂଶ ଅଞ୍ଚଳ ମରହଟ୍ଟାମାନଙ୍କ ଅଧିନରେ ଥିଲା । କେତେକ ଜମିଦାର ଗୋଟିଏ ଗୋଟିଏ ଅଞ୍ଚଳର ଜମିଦାର ଥାଇ ମରହଟ୍ଟାମାନଙ୍କୁ ଖଜଣା ଦେଉଥିଲେ । ପୁରୀ ରାଜା କେବଳ ଖୋର୍ଦ୍ଧା ଇଲାକାର ରାଜାଥିଲେ । ବଡ ଠାକୁରଙ୍କ ମନ୍ଦିର ଓ ଓ ପରିଚାଳନା ତାଙ୍କ ଅଧିନରେ ରହିଥିଲା । ବହୁ ଗଜାରୋହୀ ସେନା ଥିବା ଯୋଗୁଁ ତାଙ୍କୁ ଲୋକମାନେ ଗଜପତି ମହାରାଜା ବୋଲି କହୁଥିଲେ ।

ବୀରକିଶୋର ଦେବ ସେତେବେଳେ ମରହଟ୍ଟା ନବାବ ଶିବ ଭଟ୍ଟଙ୍କ ଆଶ୍ରୟ ନେଲେ । ବୀରକିଶୋର ଦେବ ମରହଟ୍ଟାମାନଙ୍କ ସାହାଯ୍ୟ ପାଇ ଜଗନ୍ନାଥ ନାରାୟଣ ଦେବଙ୍କୁ ପରାସ୍ତ କଲେ । ଶିବ-ଭଟ୍ଟ ନାରାୟଣ ଦେବଙ୍କୁ ରାଜବନ୍ଦୀ କରି କଟକରେ ରଖିଲେ । ସେ କିନ୍ତୁ ବନ୍ଦୀଶାଳରୁ କୌଶଳକ୍ରମେ ପଳାୟନ କଲେ ।

ପରିଶେଷରେ ଶିବଭଟ୍ଟ ଖୋର୍ଦ୍ଧା ରାଜାଙ୍କଠାରୁ ଯୁଦ୍ଧରେ ସାହାଯ୍ୟ ଯୋଗୁଁ ଧନ ବଦଳରେ ଲମ୍ବାଇ, ରହଙ୍ଗ, ଚଉବିଶକୁଦ ଓ ପୁରୀ ପାଇଲେ । ଏହା ସହିତ ପୁରୀ ମନ୍ଦିରକୁ ଆସୁଥିବା ଯାତ୍ରୀମାନଙ୍କ ଠାରୁ ଯେଉଁ ଯାତ୍ରୀକର ଆଦାୟ ହେଉଥିଲା ତାହା ମଧ୍ୟ ଦେଇଦେଲେ । ସେ କେବଳ ଖୋର୍ଦ୍ଧା ଅଞ୍ଚଳର ରାଜା ହୋଇ ରହିଲେ । କିନ୍ତୁ ଏଥି ପାଇଁ ବାର୍ଷିକ ଟ ୨୨୦୦ ଙ୍କା କର ଦେବାକୁ ପଡିଲା । ସେ ମଧ୍ୟ ଯୁଦ୍ଧ-ରେ କୁଜଙ୍ଗର ରାଜା ଷଣ୍ଢଙ୍କୁ ପରାସ୍ତ କରିଥିଲେ ।

ନାରାୟଣ ଦେବଙ୍କର ମୟୂରଭଞ୍ଜରେ ବିବାହ ହୋଇଥିଲା । ସେ ବୈଷ୍ଣବ ଧର୍ମ ଗ୍ରହଣ କରି ବୃନ୍ଦାବନ ଆଦି ତୀର୍ଥଯାତ୍ରା କରିଥିଲେ । ପରିଶେଷରେ ସେ ମାଣ୍ଡଗୁଲ ଠାରେ ପ୍ରାଣତ୍ୟାଗ କରିଥିଲେ ।

ନାରାୟଣ ଦେବଙ୍କ ଲେଖା ଭିତରେ 'ବୃନ୍ଦାବନ ବିହାର' ଶ୍ରୀକୃଷ୍ଣ ଗୋପ ଓ ମଥୁରା ଲୀଳା ଦଶଟି ସର୍ଗ ଛାନ୍ଦରେ ଲିଖିତ । ଏହା ପାଣ୍ଡୁଲିପି ଆକାରରେ ଅଛି । ସଂସ୍କୃତରେ ସେ 'ସଙ୍ଗୀତ ନାରାୟଣ' (କେତେକାଂଶରେ ପ୍ରକାଶିତ),'ଅଳଙ୍କାର ଚନ୍ଦ୍ରିକା' ଗ୍ରନ୍ଥ(ଆଜିପର୍ଯ୍ୟନ୍ତ ମିଳିନାହିଁ) ଓ 'ସଙ୍ଗୀତ କୌମୁଦୀ ଲେଖିଛନ୍ତି ।

କବି ଚିନ୍ତାମଣି ପାରଳାଖେମୁଣ୍ଡି ର ଅବଦାନରେ ବିମୁଗ୍ଧ ହୋଇ ଏହାକୁ 'ପୁଣ୍ୟ ପୀଠ' ରୂପରେ ନାମିତ କରିଛନ୍ତି । ଏ ମାଟି ବହୁ ସାହିତ୍ୟିକ, ଐତିହାସିକ, ସଙ୍ଗୀତଜ୍ଞ, କଳାକାର, ନାଟ୍ୟକାରଙ୍କୁ ଜନ୍ମଦେଇ ଗର୍ବିତ । ଜଗନ୍ନାଥ ନାରାୟଣ ଦେବଙ୍କ ପରି ବୀରମାନଙ୍କୁ ଧରି ବୀର ପ୍ରସବିନୀ ହୋଇ ପାରିଛି । ଭଗୀରଥ ଯେପରି ନିଜ ଜାତିକୁ ଉଦ୍ଧାର କରିଥିଲେ ସେହିପରି କର୍ମବୀର କୃଷ୍ଣଚନ୍ଦ୍ର ଦେବ ନୂତନ ଓଡ଼ିଶା ପ୍ରଦେଶକୁ ମୃତସଞ୍ଜୀବନୀ ଦେଇ ଗଠନ କରି ଇତିହାସରେ ଚିର ସ୍ମରଣୀୟ ହୋଇ ରହିବେ । ତାଙ୍କର ଜାତି ପାଇଁ ଉତ୍ସର୍ଗିତ ଜୀବନ ଯୋଗୁଁ ସେ ଜାତିର ଚିର ନମସ୍ୟ ।

ଓଡ଼ିଆ ଜାତି ଯଦି ବଞ୍ଚି ରହିଛି କେବଳ ତା'ର ଶିଳ୍ପକଳା ଗୃହୁରୀ ଓ ତାର ଅମର ସାହିତ୍ୟକୁ ନେଇ । ସାରସ୍ୱତ ଭୂମିଭାବେ ଗଞ୍ଜାମ ପ୍ରସିଦ୍ଧ । ସାହିତ୍ୟ, ସଂସ୍କୃତି, କାବ୍ୟ, ନୃତ୍ୟ, କଳା, ସ୍ଥାପତ୍ୟ ଓ ଦେଶପ୍ରାଣ-ସନ୍ତାନର ଜନନୀ କ୍ଷେତ୍ରରେ ମଧ୍ୟ ଗଞ୍ଜାମର ଅତୀତ ସ୍ୱର୍ଣ୍ଣାଭ ।

ଏହି କବି, ଲେଖକ, ସଂଗୀତଜ୍ଞ, ନାଟ୍ୟକାର, ସାହିତ୍ୟିକ, ସମାଲୋଚକ, ଗବେଷକ ଓ ଐତିହାସିକମାନଙ୍କ ଦ୍ୱାରା ପାରଳାଖେମୁଣ୍ଡି ଗର୍ବିତ ।

ଭକ୍ତକବି ବନମାଳୀ—ରାଧାକୃଷ୍ଣ ରସ ମାଧୁରୀ ଶିକ୍ତ 'ଭଜନାମୃତ-ସଂଗୀତ' ରଚନା କରିଥିଲେ ।

ଭକ୍ତକବି ଗୋପାଳକୃଷ୍ଣ ପଟ୍ଟନାୟକ (୧୭୮୫)ଙ୍କର ଓଡ଼ିଶୀ ସଙ୍ଗୀତକୁ ଅନବଦ୍ୟ ଦାନ 'ଗୋପାଳକୃଷ୍ଣ ପଦ୍ୟାବଳୀ' ।

କବି ଗୌରହରି ପରିଚ୍ଛା—'ଗୌରହରି ଗ୍ରନ୍ଥାବଳୀ' ।

ରଘୁନାଥ ପରିଚ୍ଛା—ଜନ୍ମ ୧୭୮୫ ଖ୍ରୀ:ଅ: । ସେ ହେଉଛନ୍ତି ଓଡ଼ିଶାର ପ୍ରଥମ ନାଟକ 'ଗୋପୀନାଥ ବଲ୍ଲଭ'ର ଲେଖକ । ରାମଲୀଳା, କୃଷ୍ଣଲୀଳା, ମାନ ଶତକ, ସଂଗୀତ ରତ୍ନାକର, ରାଧାମାଧବ ବିଳାସ, ରାଧା କୃଷ୍ଣ ପରିହାସ ଚିନ୍ତାମଣି ପ୍ରଭୃତିର ଲେଖକ ।

ପଦ୍ମନାଭ ପରିଚ୍ଛା—ସର୍ବ ପ୍ରଥମେ କର୍ଣ୍ଣାଟ ସଙ୍ଗୀତ ପଦ୍ଧତିର ସଙ୍ଗୀତ ଲେଖି ଜଗନ୍ନାଥ ନାରାୟଣ ଦେବଙ୍କ ନାମରେ ରଚନା କରିଥିଲେ ।

ଅପର୍ଣ୍ଣା ପାଣିଗ୍ରାହୀ—ବିଶିଷ୍ଟ ସଙ୍ଗୀତଜ୍ଞ ।

ପଦ୍ମନାଭ ଦେବ—ଓଡ଼ିଶାର ପ୍ରଥମ ରଙ୍ଗାଳୟ (ପଦ୍ମନାଭ ରଙ୍ଗାଳୟ) ସ୍ଥାପନ କରି ଗୌରଚନ୍ଦ୍ର ଦେବ ଓ ନିଜର 'ଧ୍ରୁବ ନାଟକ' 'ଚନ୍ଦ୍ରାବଳୀ ସ୍ୱୟମ୍ବର', 'ବାଣ ଦର୍ପ ଦଳନ', 'ପ୍ରହଲ୍ଲାଦ' 'ଉଷା ହରଣ' ନାଟକ ଅଭିନୟ କରିଥିଲେ ।

ଅଧ୍ୟାପକ ଗୋପୀନାଥ ନନ୍ଦ—ସର୍ବ ପ୍ରଥମ ଓଡ଼ିଆ ଭାଷାତତ୍ତ୍ୱ ରଚୟିତା । ଓଡ଼ିଆ ଅଭିଧାନ, ଶବ୍ଦତତ୍ତ୍ୱ, ପୀୟୂଷ ଧାରା, ଭାରତ ଦର୍ପଣ, ଦ୍ରୌପଦୀ ବସ୍ତ୍ର ହରଣ ନାଟକ, ଶକୁନ୍ତଳା ନାଟକ ।

ଶ୍ୟାମସୁନ୍ଦର ରାଜଗୁରୁ—ଜନ୍ମ ୧୮୭୦ ଖ୍ରୀ: ଅ: । ଓଡ଼ିଶାର ପ୍ରଥମ ଗ୍ରାଜୁଏଟ୍, ଉତ୍କଳ ହିତୈଷିଣୀ ସମାଜ ଗଠନ, ସାହିତ୍ୟ ପତ୍ରିକାର ସମ୍ପାଦକ, ପ୍ରବନ୍ଧମାଳା, ଉତ୍କଳ କୋର୍ଟର ରଙ୍ଗମଞ୍ଚ ଅଭିନେତା ।

ବୈଦ୍ୟନାଥ ମିଶ୍ର—ଲଟି ଚରେଇ, ହାସ୍ୟ ରସାତ୍ମକ ଲେଖକ ।

ସିଂହାଦ୍ରୀ ପଟ୍ଟନାୟକ—(ଜନ୍ମ ୧୮୯୫ ଖ୍ରୀ.ଅ: ଗୋପାଳକୃଷ୍ଣଙ୍କ ନାତି) ପୃଥ୍ୱୀରାଜ ନାଟକ, ଅନଙ୍ଗ ଭୀମଦେବ ନାଟକ, ଗଙ୍ଗାବତରଣ, ଗୀତିକାବ୍ୟ ।

ପଣ୍ଡିତ ଗୋପୀନାଥ ରଥ—ଭଞ୍ଜ, କବିସୂର୍ଯ୍ୟ ସାହିତ୍ୟର ସମାଲୋଚକ, ଲଗ୍ନଘଡ଼ି ନିର୍ମାଣ ।

ଡାକ୍ତର ସତ୍ୟନାରାୟଣ ରାଜଗୁରୁ—ଲବ୍ଧ ପ୍ରତିଷ୍ଠିତ ସାହିତ୍ୟିକ, ଐତିହାସିକ, ଗବେଷକ, ଅଭିନେତା ଓ ନିର୍ଦ୍ଦେଶକ । ସେ ଓଡ଼ିଶାର ଶିଳାଲିପି ଉପରେ ୪ ଗୋଟି ବହି ଓଡ଼ିଶାର ଇତିହାସ ୨ ଗୋଟି' କଳିଙ୍ଗ ବିଜୟ ନାଟକ ଲେଖିଛନ୍ତି ।

ଗୋପିନାଥ ପାଡ଼—ରାମଚନ୍ଦ୍ର ବିହାର, କବି ଚନ୍ଦ୍ରମଣି, ସଂସ୍କୃତ ଭାଷାରେ ଅଳଙ୍କାର ଗ୍ରନ୍ଥ ।

ହରବନ୍ଧୁ ବେବର୍ତ୍ତା ପଟ୍ଟନାୟକ – ହରବନ୍ଧୁ ପଦ୍ୟାବଳୀ ।



# ଜଣ ପୁରୁଷୋତ୍ତମ
# ଅନଙ୍ଗଭୀମ ଦେବ

ଗଞ୍ଜାମ ଜିଲ୍ଲାର ଆଧୁନିକ ପାରଳାଖେମୁଣ୍ଡି ଓଡ଼ିଶାର ଗଙ୍ଗ ବଂଶୀୟ ରାଜାମାନଙ୍କର ବଂଶଧର ହୋଉଛନ୍ତି ବଡଖେମୁଣ୍ଡି ରାଜବଂଶ। ବଡଖେମୁଣ୍ଡିର ରାଜଧାନୀ ଥିଲା ବିଜୟନଗର ଗଡ। ୧୭୦୭ ଖ୍ରୀ:ଅ: ବେଳକୁ ଉକ୍ତ ରାଜ୍ୟକୁ ଗଙ୍ଗ ବଂଶୀୟ ଦୁଇ ଭାଇଙ୍କ ମଧ୍ୟରେ ବିଭକ୍ତ କରାଗଲା। ବଡ ଭାଇ ଗଜପତି ନାରାୟଣ ଦେବ ଜ୍ୟେଷ୍ଠାଂଶ ପାରଳା-ଖେମୁଣ୍ଡି ଓ ସାନ ଭାଇ ଅନଙ୍ଗଭୀମ ଦେବ ବଡ଼ଖେମୁଣ୍ଡି ପାଇଲେ।

ଅଷ୍ଟାଦଶ ଶତାବ୍ଦୀର ପ୍ରଥମ ଭାଗ ବେଳକୁ ଏହି ବଡଖେମୁଣ୍ଡି ରାଜ୍ୟର ରାଜାଥିଲେ ପୀତାମ୍ବର ଅନଙ୍ଗଭୀମ ଦେବ। ଜଣାଯାଏ ଯେ ସେ ଅପୁତ୍ରିକ ହୋଇ ପ୍ରାଣ ତ୍ୟାଗ କରିଥିବା ଯୋଗୁଁ ତାଙ୍କ ପରେ ତାଙ୍କର କନିଷ୍ଠ ଭାଇ ବାସୁଦେବ ରାଜା ହେଲେ।

ପୁରୁଷୋତ୍ତମ ଅନଙ୍ଗଭୀମ ଦେବ ୧୭୦୬ ଖ୍ରୀ:ଅ:ରେ ଜନ୍ମଗ୍ରହଣ କରିଥିଲେ। ବାସୁଦେବଙ୍କର ଅଳ୍ପ କାଳ ରାଜତ୍ୱ କରିବା ପରେ ଅକାଳ ବିୟୋଗ ହୋଇଥିବା ଯୋଗୁଁ ସେ ଜ୍ୟେଷ୍ଠ ପୁତ୍ର ହିସାବରେ ପୁରୁଷୋତ୍ତମ ଅନଙ୍ଗଭୀମ ଦେବ ଗଜପତି ନାମ ଧାରଣ କରି ୧୭୨୮ ଖ୍ରୀ ଅ·ରେ ସିଂହାସନ ଆରୋହଣ କଲେ।

ଇଂରେଜମାନେ ଗଞ୍ଜାମକୁ ଅଧିକାର କରିବା ପାଇଁ କୂଟନୈତିକ ଅନୁପ୍ରବେଶ ଦ୍ୱାରା ଗୃହ ବିବାଦକୁ ଉତ୍କୁସାଇ ଥିଲେ। ପୁରୁଷୋତ୍ତମ

ଅନଙ୍ଗଭୀମ ଦେବ ବଡ଼ଖେମୁଣ୍ଡିର ରାଜା ଥିଲେ । ଇଂରେଜମାନେ ତାଙ୍କ ରାଜତ୍ୱ ସମୟରେ ତାଙ୍କର ବଡପୁଅ ପଦ୍ମନାଭ ଦେବ (ମଣିଦେଓ)ଙ୍କୁ ରାଜା କରିବେବା ପାଇଁ ପ୍ରଲୋଭିତ କରି ପିତାଙ୍କ ବିରୋଧ କଲେ । ୧୭୬୨ ଖ୍ରୀ.ଅ. ପଦ୍ମନାଭ ଦେବ ଇଂରେଜ ସୈନ୍ୟଙ୍କ ସହାୟତାରେ ପୁରୁଷୋତ୍ତମ ଅନଙ୍ଗଭୀମ ଦେବଙ୍କୁ ପରାସ୍ତ କଲେ । ବଡ଼ଖେମୁଣ୍ଡିର ବହୁ ଦୁର୍ଦ୍ଧର୍ଷ ପ୍ରଜାମାନେ ଇଂରେଜମାନଙ୍କର ଅଧୀନତା ସ୍ୱୀକାର ନ କରି ପୁରୁଷୋତ୍ତମ ଅନଙ୍ଗଭୀମ ଦେବଙ୍କୁ ସମର୍ଥନ କରିଥିଲେ । ଇଂରେଜମାନଙ୍କ ସହିତ ଯୁଦ୍ଧରେ ବଡ଼ଖେମୁଣ୍ଡିର ପ୍ରାଚୀନ ଦୁର୍ଗ ବିଜୟନଗରର ଗଡ଼ ଧ୍ୱଂସପ୍ରାପ୍ତ ହୋଇଗଲା । ସେମାନେ ବ୍ୟବହାର କରିଥିବା କମାଣ ଏବେ ସୁଦ୍ଧା ସ୍ଥାନୀୟ ତହସିଲ ଅଫିସ ସାମନାରେ ସଂରକ୍ଷିତ । ପୁରୁଷୋତ୍ତମ ଅନଙ୍ଗଭୀମ ଦେବ ପରାସ୍ତ ପରେ ପଦ୍ମନାଭ-ଦେବଙ୍କୁ ରାଜ୍ୟଭାର ଦେବେ ବୋଲି ରାଜି ହେଲେ । ୧୭୬୭ ଖ୍ରୀ ଅ ରେ ପୁରୁଷୋତ୍ତମ ଦେବଙ୍କର ମୃତ୍ୟୁ ହେଲା । ଇଂରେଜମାନେ ପ୍ରଶାସନିକ ଦୃଷ୍ଟିରୁ ଖେମୁଣ୍ଡିକୁ ଦୁଇଭାଗ କରି ତାଙ୍କର ଦୁଇ ପୁଅଙ୍କ ମଧ୍ୟରେ ବାଣ୍ଟି ଦିଆଗଲା । ବଡ଼ ଭାଗଟି ବଡଖେମୁଣ୍ଡି ଓ ସାନ ଭାଗଟି ସାନ-ଖେମୁଣ୍ଡି ବୋଲି ଗଲା ।

ବଡ଼ ପୁଅ ପଦ୍ମନାଭ ଦେବ ପ୍ରତାପ ଗିରି (ସାନଖେମୁଣ୍ଡି) ଓ ଦ୍ୱିତୀୟ ପୁଅ ଜଗନ୍ନାଥ ଦେବ ବିଜୟ ନଗର (ବଡଖେମୁଣ୍ଡି) ପାଇବା ପାଇଁ ସ୍ଥିର ହେଲା । ପୁରୁଷୋତ୍ତମ ଦେବଙ୍କୁ ବିରୋଧ କରିଥିବା ଯୋଗୁଁ ବିଜୟନଗରର ସମ୍ଭ୍ରାନ୍ତ ସମାଜ ଭଲ ପାଇଲେ ନାହିଁ । ପୁରୁଷୋତ୍ତମ ଦେବଙ୍କ ପ୍ରିୟ ପୁତ୍ର ଜଗନ୍ନାଥଙ୍କ ବିରୋଧରେ ପଚିଶି ବର୍ଷ କାଳ ଧାରା-ବାହିକ ଭାବେ ଯୁଦ୍ଧରେ ପଦ୍ମନାଭ ଦେବ ବ୍ୟାପୃତ ରହିଲେ । ପୁରୁଷୋତ୍ତମ ଦେବଙ୍କ ମୃତ୍ୟୁ ପରେ ପଦ୍ମନାଭ ଦେବ ବିଜୟନଗର

ରାଜ୍ୟ ଜଗନ୍ନାଥ ଦେବଙ୍କୁ ନ ଦେଇ ନିଜେ ଦଖଲ କଲେ । ପରବର୍ତ୍ତୀ କାଳରେ ଜଗନ୍ନାଥ ପ୍ରତାପଗିରି (ପାରଳାଖେମୁଣ୍ଡି ବା ପୋଡ଼ାମାଗୁ) ଦଖଲ କଲେ । ୧୮୦୨ ଖ୍ରୀ.ଅ.ରେ ବଗପଦଣ୍ଡି (ବଡ଼ଖେମୁଣ୍ଡି) ରାଜଧାନୀ ହେଲା । ତହିଁ ରାଜଧାନୀ ବିଜୟନଗର ଗଡ଼ ଯୁଦ୍ଧରେ ଧ୍ୱଂସ ହୋଇ ଯାଇଥିଲା । ତାହା ବଡ଼ଖେମୁଣ୍ଡି ଠାରୁ ୮ ମାଇଲ ଦୂରରେ ଥିବା ଘୋଡ଼ାହାଡ଼ ନଦୀ ତୀରରେ ଅବସ୍ଥିତ ଥିଲା । ବର୍ତ୍ତମାନ ଘୋଡ଼ାହାଡ଼ ନଦୀବନ୍ଧ ଯୋଗୁଁ ଜଳମଗ୍ନ । ଏହି ଗଡ଼ର ଗୋଟିଏ ପାର୍ଶ୍ୱରେ ରାମଗଡ଼ ପର୍ବତ ଓ ଅନ୍ୟ ପାର୍ଶ୍ୱରେ କାଆଁଝର ପର୍ବତ ।

ରାଜକବି ପୁରୁଷୋତ୍ତମ ଅନଙ୍ଗଭୀମ ଗଜପତି ଦେବ ନିଜେ ଜଣେ ସୁକବି ଥିଲେ । ତାଙ୍କର ବିଜୟନଗର ରାଜ ସଭାରେ ବହୁ ବିଖ୍ୟାତ ପଣ୍ଡିତ ଆଶ୍ରୟ ନେଇ ସମ୍ମାନିତ ହୋଇଥିଲେ । ପାରଳା-ଖେମୁଣ୍ଡିର ରାଜା ଜଗନ୍ନାଥ ନାରାୟଣ ଦେବ (୧୭୪୯-୧୭୬୭) ବିଜୟନଗରର ରାଜା ପୁରୁଷୋତ୍ତମ ଅନଙ୍ଗଭୀମ ଦେବ (୧୭୨୮-୧୭୭୬) ସମସାମୟିକ କବିରୂପେ ପରିଚିତ । ପୁରୁଷୋତ୍ତମ 'କୃଷ୍ଣ-କେଳୀ ତରଙ୍ଗିଣୀ' ନାମକ ଏକ ସୁଲଳିତ ଖଣ୍ଡକାବ୍ୟ ରଚନା କରି-ଛନ୍ତି । ଏହା ଚଉପଦୀ ଢଙ୍ଗରେ ଦଶଗୋଟି ଛାନ୍ଦରେ ସଂପୂର୍ଣ୍ଣ । ଏଥିରେ ରାଧାକୃଷ୍ଣଙ୍କର ଚିରନ୍ତନ ପ୍ରେମର ରସକେଳୀ ବର୍ଣ୍ଣିତ । ଏହାର ଭାଷା ସାବଲୀଳ, ସରସ, ମନମତାଣିଆ, ବହୁ କ୍ଷେତ୍ରରେ ଉପମା, ରୂପକ ଯମକ, ଅନୁପ୍ରାସ ଓ ଶ୍ଳେଷ ଆଦି ଅଳଙ୍କାର ପରିପୂର୍ଣ୍ଣ । ଏହା ଅଦ୍ଭୁତ ରସାତ୍ମକ ଉଚ୍ଚକୋଟୀର ଗୀତି କାବ୍ୟ ।

'ଦେଖି ଶ୍ୟାମଘନ ରସ ଉଦ୍ଦୀପନ ଚଞ୍ଚଳା ଯୁବତୀ ମତି
ଦେଖି ଶ୍ୟାମ ଘନରସ ଉଦ୍ଦୀପନ ଚଞ୍ଚଳା ଯୁବତୀ ମତି

ଇନ୍ଦ୍ର ଗୋପମଣ୍ଡି ତଳେ ପ୍ରକାଶିଲେ   ଅନୁରାଗ ଚଉ ବାସ
ଇନ୍ଦ୍ର ଗୋପ ମଣ୍ଡିତଳେ ପ୍ରକାଶିଲେ   ଅନୁରାଗ ଚଉ ବାସ
'ସଖି, ଏ ବ୍ୟଭିଚାରିଣୀ ନାଶ କରଏ   କରତେ ହେ ଇନ୍ଦୁ ଯମୁନା
ଉଭୟ କୂଳ ଅନୁରାଗ ଛୁଡ଼ି ଏ   ବଂଶୀଗତେ ସଙ୍କଳିଲ ।
ସଙ୍ଗୀତ, ଅଭି ରମ୍ଭିକା ରସବତୀ
ପୁନ୍ନାଗଧବ ନିକଟେ ଥାଇକଲ୍ ସାଗର ନାଗରେ ଟିଂରଙ୍ଗ,···
'ସର୍ବ ଜାତିକୁଳ ଦେଖୁଣ୍ଣ ଅଛନ୍ତି   ଆଉର ପୁନ୍ନାଗଧବ
ନିଜ ବେନି କୂଳ ଛୁଡ଼ି ଯାଉଅଛି   ଭାବେ ସମୁଦ୍ର ଭାବ'···

ପୁରୁଷୋତ୍ତମ ଦେବ ଦେଖିବାକୁ ଗଲେ ଜଣେ ସ୍ୱଦେଶାଭିମାନୀ, ଉଚ୍ଚାଭିଳାଷୀ ରାଜାଥିଲେ । ତାଙ୍କ ସମୟରେ ଓଡ଼ିଶାର ରାଜନୀତି ରଙ୍ଗମଞ୍ଚରେ ବହୁବାର ଓ ପରିବର୍ତ୍ତନ ହେବା ଦେଖାଯାଉଛି । ମୋଗଲ ସାମ୍ରାଜ୍ୟର ରବି ଅସ୍ତମିତ ହେବାକୁ ଯାଉଛି । ମରହଟ୍ଟାମାନଙ୍କ ଲୁଣ୍ଠନ ଆକ୍ରମଣ ହେଉଛି । ଫରାସୀ ଓ ଇଂରେଜମାନଙ୍କ ମଧ୍ୟରେ ସାମ୍ରାଜ୍ୟ ବିସ୍ତାର ପାଇଁ ଭିଡ଼ା ଓଟରା ଲାଗିଛି । ହାଇଦରାବାଦର ନିଜାମଙ୍କୁ ସାମରିକ ସାହାଯ୍ୟ ବଦଳରେ ଉତ୍ତର ସରକାର ପାଇଛନ୍ତି । ଏଥିରେ ଇଂରେଜମାନେ ୧୭୬୮ ଖ୍ରୀ:ଅ:ରେ ଗଞ୍ଜାମରେ କୂଟନୈତିକ ଅନୁପ୍ରବେଶ କରିବାରେ ସୁଯୋଗ ପାଇଛନ୍ତି । ଇଂରେଜମାନେ ପୁରୁଷୋତ୍ତମଙ୍କୁ ଗଞ୍ଜାମର ଜଣେ ବିଶିଷ୍ଟ ଉପଦ୍ରବ ଜନକ ରାଜା ବୋଲି ଦର୍ଶାଇଛନ୍ତି । କାରଣ ସେ ଥିଲେ ମୁକ୍ତିକାମୀ ରାଜା ।

ରାଜା ପୁରୁଷୋତ୍ତମ ଅନଙ୍ଗଭୀମ ଦେବଙ୍କ ମୃତ୍ୟୁ ୧୭୭୬ ଖ୍ରୀ:ଅରେ ହୋଇଥିଲା ।

ବଡ଼ଖେମୁଣ୍ଡି ରାଜସଭା ବୁଧ-ହଂସକେଳି ସରୋବର ଥିଲା । ରାଜା ପୁରୁଷୋତ୍ତମ ଅନଙ୍ଗଭୀମ ଦେବ (୧୭୨୮-୧୭୭୬) ଓଡ଼ିଆରେ କୃଷ୍ଣକେଳି ତରଙ୍ଗିଣୀ, କବିସୂର୍ଯ୍ୟଙ୍କର ପିତା ଉଜ୍ଜ୍ୱଳ ରଥ କବିରାଜ ବ୍ରହ୍ମା 'ସଜ୍ଜନାନନ୍ଦ ଚମ୍ପୂ' 'ରାମ ଚମ୍ପୂ', ବ୍ରଜସୁନ୍ଦର ପଟ୍ଟନାୟକ 'ରସ କଳ୍ପଲତା' ଓ ସଂସ୍କୃତରେ 'ସୁଲୋଚନା ମାଧବ, 'ନେତ୍ର ଶତକ' ତାଙ୍କ ପୁତ୍ର ଚକ୍ରପାଣି ପଟ୍ଟନାୟକ (୧୭୩୬-୧୭୭୯ ଚକ୍ରବାକ ପଟ୍ଟନାୟକ) 'ଗୁଣ୍ଡିଚା ଚମ୍ପୂ' ସଂସ୍କୃତରେ ୧୭୭୮ 'ବଙ୍କପ୍ରି ପୁଷ୍ପମାଳା' 'କଟାକ୍ଷ ଶତକ' ଓ ଓଡ଼ିଆରେ 'କୃଷ୍ଣ ବିଳାସ' । ବାସୁଦେବ ରଥ ସୋମଯାଜୀ 'ଗଙ୍ଗବଂଶାନୁଚରିତମ ଚମ୍ପୂ' (୧୭୬୧) ଲେଖିଥିଲେ ।

ପରମେଶ୍ୱର, ପିତାମ୍ବର ଅନଙ୍ଗ ଦେବ ସଭା ପଣ୍ଡିତ ଥିଲେ । ସେ ଗୋବିନ୍ଦ ରାମ ଭଟ୍ଟାଚାର୍ଯ୍ୟ ଗୌଡ଼ୀୟ ପଣ୍ଡିତଙ୍କୁ ପରାସ୍ତ କରି ସାମନ୍ତରାୟ ପଦ ପାଇଥିଲେ । ସେ ବୈଷ୍ଣବ ତୋଷଣୀ ଟୀକା ସାହାଯ୍ୟରେ 'ଭାଗବତ'ର ପ୍ରାଞ୍ଜଳ ବାଖ୍ୟା କରିଥିଲେ । ରାଜା ପୀତାମ୍ବରଙ୍କ ନିର୍ଦ୍ଦେଶରେ ସଂସ୍କୃତରେ 'କୋଷ ଗ୍ରନ୍ଥ' 'ମଥୁରା-ଭ୍ରମଣମ' ଖଣ୍ଡକାବ୍ୟ ଲେଖିଥିଲେ । ପରମେଶ୍ୱର ସାମନ୍ତରାୟ ଓ ଦାମୋଦର ପଣ୍ଡିତ (ଆଶୁ କବି) ପୁରୁଷୋତ୍ତମ ରାଜାଙ୍କର ସଭା ପଣ୍ଡିତ ଥିଲେ । ପରମେଶ୍ୱରଙ୍କ ପୁତ୍ର ହରି ସେବକ କବିରତ୍ନ 'ଗୋବିନ୍ଦ-ଲୀଳାମୃତ'ର ବୈଷ୍ଣବାହ୍ଲାଦିନୀ ଟୀକା କରିଛନ୍ତି ।

ବଡଖେମୁଣ୍ଡି ରାଜାଙ୍କ ଜ୍ୟେଷ୍ଠପୁତ୍ର ଗିରିବର ଦେବ (ଅରକ୍ଷିତ ଦାସ) ସାଧକ ଗୃହତ୍ୟାଗୀ 'ମହୀମଣ୍ଡଳ ଗୀତା' 'ଭକ୍ତି ଟୀକା' 'ଶରୀର ଭେଦ' ଲେଖିଥିଲେ । ସେ ଖଣ୍ଡଗିରି ନିକଟବର୍ତ୍ତୀ ଓଲାଶୁଣି ପାହାଡରେ ଶେଷ ଜୀବନ କଟାଇଥିଲେ ।

ଶେଖର ଦାସ 'ଗୋବିନ୍ଦ ଚନ୍ଦ୍ର' ଗ୍ରନ୍ଥ ଲେଖିଥିଲେ । ଈଶ୍ୱର ବ୍ରହ୍ମା 'ନାମାମୃତ ମହାଭାରତ' ଏକ ବିଶାଳ ଗ୍ରନ୍ଥ ଲେଖିଛନ୍ତି । କେଶବ ରଥ କବିରାଜ ପୁରୁଷୋତ୍ତମଙ୍କ ସମ୍ପାଦିତ ଥିଲେ । ସେ 'ଅନଙ୍ଗ ରଙ୍ଗିଣୀ' କାଳ୍ପନିକ କାବ୍ୟ ରଚନା କରିଛନ୍ତି ।

ଭୁବନେଶ୍ୱର ଜୀବଚନ୍ଦ୍ର 'ଜଟମାସ୍ଥା', ଶ୍ରୀନିବାସ ପତିଙ୍କର ସରଳ ପଦ୍ୟାନୁବାଦ କରିଥିଲେ । ମାଗୁଣି ପାଠୀ—ଜ୍ୟୋତିର୍ବିଦ ଓ ଗଣିତଜ୍ଞ 'ଭୃଗୁଚଣ୍ଡ' ଜ୍ୟୋତିଷ ଗ୍ରନ୍ଥର ଟୀକା, ଭାସ୍କରାଚାର୍ଯ୍ୟଙ୍କ ପ୍ରଣିତ ବୀଜଗଣିତର ଓଡ଼ିଆ ୧୭୪୧ରେ ବ୍ୟାଖ୍ୟା ଲେଖିଥିଲେ । ଅନ୍ୟାନ୍ୟ ପଣ୍ଡିତମାନଙ୍କ ମଧ୍ୟରେ ଉଲ୍ଲେଖଯୋଗ୍ୟ ବଡ଼ପଣ୍ଡା ବୟାକରଣିକ, ବଳଭଦ୍ର ମିଶ୍ର-ତର୍କବିଦ୍ୟା ବିଚକ୍ଷଣ, ଲୋକନାଥ ମିଶ୍ର ବୈଦାନ୍ତିକ, ଧାଉଁ ମହାପାତ୍ର ପଣ୍ଡିତ, ପଦ୍ମନାଭ ମିଶ୍ର କୋବିଦ ଥିଲେ ।



# ରାଜକବି କୃଷ୍ଣ ସିଂହ

କବି କୁଞ୍ଜ ପୁଞ୍ଜ ମଞ୍ଜୁଳ ଗଞ୍ଜାମ ଜିଲ୍ଲାର ଧରାକୋଟକୁ ଓଡ଼ିଶାର ବାରାଣସୀ ବୋଲି କୁହାଯାଏ । ଏହିଠାରେ ରାଜତ୍ୱ କରୁଥିବା ରାଜାମାନେ ରାଜପୁତ ବଂଶଜ । କିମ୍ବଦନ୍ତୀ କୁହେ ଯେ ପ୍ରଥମେ 'ଗୋବିନ୍ଦଚନ୍ଦ୍ର ସିଂହ' ନାମକ ଜଣେ ବୀର ନଳବର କୋଟରୁ ଆସି ଦ୍ୱାଦଶ ଶତାବ୍ଦୀ ସମୟରେ ଏଠାରେ ପାଟ ମଳିକ ଓ ତାର ଭାଇକୁ ହତ୍ୟା କରି 'ଖିଡ଼ିସିଙ୍ଗି' ରାଜ୍ୟ ସ୍ଥାପନ କରିଥିଲେ । ଏହି ରାଜ୍ୟ

ବର୍ତ୍ତମାନ ଶେରଗଡ଼, ଧବଳକୋଟ, ବଡ଼ଗଡ଼ ଓ ସୋରଡ଼ା ନାମରେ ବିଭକ୍ତ । ଶୋଭାଚନ୍ଦ୍ରଙ୍କ ପରେ ଛଅଜଣ ରାଜା ରାଜତ୍ୱ କରିଥିଲେ । ବଳିଆର ସିଂହ ହେଉଛନ୍ତି ଶେଷ ରାଜା । ସେ ତାଙ୍କର ତିନି ପୁତ୍ରଙ୍କୁ ଉପରୋକ୍ତ ରାଜ୍ୟମାନ ତିନିଭାଗ କରି ବଣ୍ଟନ କରି ଦେଇଥିଲେ । ପରିଶେଷରେ ସେ ଶେରଗଡ଼ଠାରେ କନିଷ୍ଠ ପୁତ୍ର ପାଖରେ ରହିଥିଲେ । ମଧ୍ୟମ ପୁତ୍ର 'ହାଡ଼ୁ ସିଂହ' ଧବଳକୋଟରେ ରାଜା ହେଲେ ।

'ଧବଳ' ନାମକ ଜଣେ ଦୁର୍ଦ୍ଧର୍ଷ ଶବର ରାଜାକୁ ପରାସ୍ତ କରି କୋଟଗଡ଼ ସ୍ଥାପନ କରିଥିବା ଯୋଗୁଁ ଏହା ଧବଳକୋଟ ନାମରେ ପରିଚିତ । କିମ୍ବଦନ୍ତୀ କହେ ଯେ ଧବଳ ଶବର ପ୍ରବଳ ପ୍ରତାପୀ ଥିଲା । ତାର ଭାଇ ନୀଳ ଅସାଧାରଣ ବୀର ଥିଲା । ଦୁହେଁ 'ଖଡ଼ସିଙ୍ଗି' ସେନା ପରିଚାଳନା କରି ଶତ୍ରୁକୁ ପରାସ୍ତ କରୁଥିଲେ । ତାଙ୍କର ପାର୍ବତ୍ୟ ଗଡ଼ ଗଡ଼ଖାଇ ଦ୍ୱାରା ସୁରକ୍ଷିତ ହୋଇଥିଲା । ଏଥିଯୋଗୁଁ ହାଡ଼ୁ ସିଂହ କରଖାଇ ଜଙ୍ଗଲରେ ଗଡ଼ବାନ୍ଧି, ତାଳପଟ୍ଟ ବାବାଙ୍କର ମନ୍ତ୍ର ବଳରେ ଧବଳ ଓ ନୀଳକୁ ପୌଷ ପୂର୍ଣ୍ଣିମା ଦିନ ବନ୍ଦୀକରି ହତ୍ୟାକଲେ । ତା' ପରେ ଶୁକଳିଆ ପର୍ବତର ପାଦ ଦେଶରେ ଧବଳକୋଟ ଗଡ଼ ନିର୍ମାଣ କଲେ । କଥିତ ଅଛି ଯେ ଧବଳର ଅନ୍ତିମ ଅନୁରୋଧ ଯୋଗେ ଧବଳକୋଟ ରାଜବଂଶର ରାଜାମାନେ ଅଭିଷେକ ସମୟରେ ଧବଳବଂଶର ବଂଶାନୁକ୍ରମେ ଶିରୋପା ମୁଣ୍ଡରେ ବାନ୍ଧୁଛନ୍ତି ।

ଓଡ଼ିଶା ଗଙ୍ଗବଂଶ ଓ ସୂର୍ଯ୍ୟବଂଶର ରାଜାମାନଙ୍କର ଶାସନ କାଳରେ ବିଶେଷ ପ୍ରଗତି ହାସଲ କରିଥିଲା । ଓଡ଼ିଶାର ଶ୍ରେଷ୍ଠ ଓଡ଼ିଆ ଗଜପତି ସମ୍ରାଟ କପିଳେନ୍ଦ୍ର ଦେବ (କପିଳ ରାଉତ) ୧୪୩୫ ଖ୍ରୀ:ଅ: ଠାରୁ ୧୪୬୭ ଖ୍ରୀ:ଅ: ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । ସେ ସୂର୍ଯ୍ୟ ବଂଶର

ପ୍ରତିଷ୍ଠାତା ଥିଲେ । ଉତ୍ପୋନ୍ମତ୍ତ ଦୁର୍ଦ୍ଧର୍ଷ ଓଡ଼ିଆ ଜାତିର ସେନା-ବାହିନୀକୁ ସୁସଜ୍ଜିତ, ନିୟନ୍ତ୍ରଣ କରି ପ୍ରବଳ ପରାକ୍ରମୀ ହୋଇ ଓଡ଼ିଶା ସାମ୍ରାଜ୍ୟ ବିସ୍ତାର କରିଥିଲେ । ତାଙ୍କର ସାମ୍ରାଜ୍ୟ ଗଙ୍ଗାଠାରୁ କାବେରୀ ପର୍ଯ୍ୟନ୍ତ ଥିଲା । ତାଙ୍କ ସମୟରେ ପ୍ରଥମେ ଓଡ଼ିଆ ସାହିତ୍ୟ ସୃଷ୍ଟି ହୋଇଥିଲା । ସେ ନିଜେ କବି ଥାଇ ବହୁ କବିମାନଙ୍କୁ ଦରବାରରେ ସମ୍ମାନ ପ୍ରଦର୍ଶନ କରି ସେମାନଙ୍କର ପୃଷ୍ଠପୋଷକତା କରିଥିଲେ ।

ସୂର୍ଯ୍ୟବଂଶର ରାଜାମାନେ ପଞ୍ଚଦଶ ଶତାବ୍ଦୀଠାରୁ ଷୋଡ଼ଶ ଶତାବ୍ଦୀ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । ଚତୁର୍ଦ୍ଦିଗରେ ସାମ୍ରାଜ୍ୟ ବିସ୍ତାର କରିବା ସଙ୍ଗେ ସଙ୍ଗେ ସାହିତ୍ୟ, ସଂସ୍କୃତି, କଳା ଓ ଭାସ୍କର୍ଯ୍ୟର ଚରମ ସୀମାରେ ଉପନୀତ ହୋଇ ଶାନ୍ତି ବିରାଜିତ ଥିଲା । କପିଳେନ୍ଦ୍ରଙ୍କ ପୁତ୍ର ଗଜପତି ସମ୍ରାଟ ପୁରୁଷୋତ୍ତମ ଦେବ, ୧୪୬୭ ଖ୍ରୀ:ଅ: ଠାରୁ ୧୪୯୭ ଖ୍ରୀ:ଅ: ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । ସେ କାଞ୍ଚି ରାଜାଙ୍କୁ ଯୁଦ୍ଧରେ ପରାସ୍ତ କରି ତାଙ୍କ ରୂପସୀ କନ୍ୟା ପଦ୍ମାବତୀଙ୍କୁ ବିବାହ କରିଥିଲେ । ପୁରୁଷୋତ୍ତମ ଦେବଙ୍କ ପୁତ୍ର ପ୍ରତାପରୁଦ୍ର ଦେବ ସୂର୍ଯ୍ୟ-ବଂଶର ଶେଷ ସମ୍ରାଟ । ସେ ୧୫୪୦ ଖ୍ରୀ:ଅ:ରେ ମୃତ୍ୟୁବରଣ କରି-ଥିଲେ । ତାଙ୍କ ପରେ ୧୫୬୭ ଖ୍ରୀ:ଅ:ରେ କଳଙ୍ଗର ଭୋଇ ବଂଶୀୟ ରାଜାମାନଙ୍କ କାଳରେ ମୁକୁନ୍ଦଦେବ (୧୫୫୯ ଠାରୁ ୧୫୬୮ ଖ୍ରୀ:ଅ: ଙ୍କ ସମୟରେ ଓଡ଼ିଶା ସ୍ୱାଧୀନତା ହରାଇଲା । ସେ ବଂଗ ନବାବଙ୍କ ଦ୍ୱାରା ୧୫୬୮ ଖ୍ରୀ ଅବ୍ଦରେ ପରାସ୍ତ ହେଲେ । ତା'ପରେ ତାଙ୍କର ମୃତ୍ୟୁ ହୋଇଥିଲା । ସେ ଥିଲେ ଓଡ଼ିଶାର ଶେଷ ସ୍ୱାଧୀନ ହିନ୍ଦୁ ଗଜପତି ରାଜା ।

ସାରଳା ଦାସ ଗଜପତି ସମ୍ରାଟ କପିଳେନ୍ଦ୍ର ଦେବଙ୍କର ସମସାମୟିକ ଥିଲେ । ସର୍ବ ପ୍ରଥମେ ସାରଳା ଦାସ ଓଡ଼ିଆରେ 'ମହାଭାରତ' ରଚନା କରିଥିଲେ । ଏହା ସଂସ୍କୃତ ମହାଭାରତର ଛାୟାରେ ଲେଖା ହୋଇଥିଲେ ମଧ୍ୟ ସ୍ଥାନେ ସ୍ଥାନେ ସେ ନିଜର କଳ୍ପନା ବିଳାସରେ କିଛି କିଛି ପରିବର୍ତ୍ତନ କରି ଜୀବନ୍ତ କରି ତୋଳିଛନ୍ତି । ସେଥିପାଇଁ ତାଙ୍କୁ 'ଆଦିକବି ସାରଳା ଦାସ' ବୋଲି କହନ୍ତି । ସେ ଶୁଦ୍ର ଜାତିରେ ଜନ୍ମ ହୋଇଥିଲେ ମଧ୍ୟ ସାରଳାଙ୍କୁ ପୂଜା କରି ପାଣ୍ଡିତ୍ୟ ଅର୍ଜନ କରିଥିବା ଯୋଗୁଁ ତାଙ୍କୁ 'ଶୁଦ୍ରମୁନି' ବୋଲି ମଧ୍ୟ କହନ୍ତି । ତାଙ୍କର ପ୍ରକୃତ ନାମ ସିଦ୍ଧେଶ୍ବର ପରିଡ଼ା । ତାଙ୍କ ପରି-ବାରର ଜୀବିକା ଥିଲି କୃଷି । ସେ ୧୪୨୦ ବା ୧୪୨୫ ଖ୍ରୀ:ଅ:ରେ ଓଡ଼ିଶା କଟକ ଜିଲ୍ଲାର ଏକ ନଦୀ ତଟସ୍ଥ ଝଙ୍କଡ଼ପଲ୍ଲୀ ଗ୍ରାମରେ ଜନ୍ମ ଗ୍ରହଣ କରିଥିଲେ । ପ୍ରାୟ ୧୪୭୫ ଖ୍ରୀ:ଅ:ରେ ଲେଖାଲେଖି ଆରମ୍ଭ କରିଥିଲେ । ସେ ମଧ୍ୟ ରାମାୟଣ ଇତ୍ୟାଦି ଅନେକ ଲେଖା ଲେଖିଛନ୍ତି । ତାଙ୍କର 'ମହାଭାରତ' ମୂଳ ସଂସ୍କୃତର ଅନୁବାଦ ନୁହେଁ । ସାରଳା ମହାଭାରତ ଏ ଦେଶର ଜାତୀୟ କାବ୍ୟ । ସେଥିପାଇଁ ଆଦିକବି ସାରଳା ଦାସ ସର୍ବସାଧାରଣରେ ଓଡ଼ିଆ ଭାଷାରେ 'ମହାଭାରତକାର' ରୂପେ ପରିଚିତ । ସାରଳା ଦାସଙ୍କର ସଂସ୍କୃତରେ ପାଣ୍ଡିତ୍ୟ ଥିଲି । ସେ ଗଣ ଭାଷାରେ ସରଳ ଭାବରେ ମହାଭାରତ ରଚନା କରିଥିବାରୁ ତାଙ୍କର ଲେଖା ଓଡ଼ିଆଙ୍କ ଘରେ ଘରେ ସୁପରିଚିତ ଓ ସମାଦୃତ ।

ସେ ଓଡ଼ିଆ ଜାତିର ଆଚାର ବ୍ୟବହାର, ଚାଲିଚଳନ, ବେଶ-ଭୂଷା ଚିତ୍ରଣ କରିବାରେ ସିଦ୍ଧହସ୍ତ ଥିଲେ । ସାମନ୍ତବାଦୀ ସମାଜର ନଗ୍ନ ଚିତ୍ର ପ୍ରକାଶ କରିବାର ଅଭିନବ କୌଶଳ ତଥା ଶୈଳୀ ପ୍ରକାଶ କରିଛନ୍ତି । ପ୍ରଥମେ ସାରଳା ଦାସ ଓଡ଼ିଆ ଭାଷାରେ ମହାଭାରତ

ରଚନା କରିଥିଲେ । ଭାରତୀୟ ସାହିତ୍ୟରେ ଏପରି ପୂର୍ଣ୍ଣାଙ୍ଗ, ମୌଳିକ, ବିଶାଳକାୟ ମହାଭାରତ ରଚନା ହେବାର ଦେଖାଯାଏ ନାହିଁ । ମାତ୍ର ରାଜକବି କୃଷ୍ଣସିଂହ ତାଙ୍କ ପରେ ସଂସ୍କୃତ ମହାଭାରତକୁ ଓଡ଼ିଆରେ ଅନୁବାଦ କରିଥିଲେ ।

ଶୋଡ଼ଷ ଶତାବ୍ଦୀରେ ଆସାମୀ, ମରାଠୀ, ମାଲୟାଲମ୍ ଭାଷାରେ ମହାଭାରତ ରଚିତ ପରେ ଓଡ଼ିଆ ସାହିତ୍ୟରେ ମହାଭାରତ ଲେଖା ହୋଇଥିଲା । ଏହି ମହାଭାରତରେ ଦକ୍ଷିଣ ଭାରତରେ ସଂସ୍କୃତର ପ୍ରଭାବ ବହୁତ ଥିଲାବେଳେ ପୂର୍ବ ଭାରତରେ ତା'ର ପ୍ରଭାବ ମୁକ୍ତ ଥିଲା ।

ଦଶମ ଶତାବ୍ଦୀରେ କନ୍ନଡ଼ ଭାଷାରେ କବି "ପମ୍ପା" ବିକ୍ରମାର୍ଜୁନ ବିଜୟମ୍ ନାମକ ଅର୍ଜୁନଙ୍କୁ ନାୟକ କରି 'ପମ୍ପା ମହାଭାରତ' ଲେଖିଥିଲେ । ୧୦୨୦ ଠାରୁ ୧୩୨୦ ଖ୍ରୀ:ଅ: ନାନ୍ନୟା, ତିକ୍କଣ, ଏରନ୍ନା ତେଲୁଗୁରେ ମହାଭାରତ ଲେଖିଥିଲେ । ପରେ 'ଏରପ୍ରାପଡ଼ା' ପ୍ରବନ୍ଧ ଶୈଳୀରେ ମହାଭାରତ ରଚନା କଲେ ।

ଦ୍ୱାଦଶ ଶତାବ୍ଦୀ ଠାରୁ ଚତୁର୍ଦ୍ଦଶ ଶତାବ୍ଦୀ ମଧ୍ୟରେ କନ୍ନଡ଼ ଭାଷାରେ ମହାଭାରତ ଲେଖା ହୋଇଥିଲା । ପଞ୍ଚଦଶ ଶତାବ୍ଦୀରେ ନାରାଣପ୍ପା ମହାଭାରତ ଲେଖିବା ଆରମ୍ଭ କରିଥିଲେ, ମାତ୍ର ଅବଶିଷ୍ଟ ତିମନ୍ନା ଲେଖିଥିଲେ ।

ଗୁଜରାଟି ଭାଷାରେ ୧୫୦୦ ଠାରୁ ୧୫୭୫ ଖ୍ରୀ:ଅ: ମଧ୍ୟରେ 'ନକର', ୧୫୭୪ ଠାରୁ ୧୬୩୨ ବିଷ୍ଣୁଦାସ ମହାଭାରତ ରଚନା କରିଥିଲେ ।

ଦ୍ରାବିଡ଼ ଗୋଷ୍ଠୀର ପ୍ରାଚୀନତମ ସାହିତ୍ୟ ମାଲୟାଲମ ଭାଷାରେ ମହାଭାରତ 'ତି ରାମାନୁଜ-ଏତ୍ତୁଚାଚ୍ଛନ' ଓ 'ଏଲୁତ୍ତକ୍‌କାନ'ଙ୍କ ଦ୍ୱାରା ଲିଖିତ ହୋଇଥିଲା ।

ଶୋଡ଼ଶ ଶତାବ୍ଦୀରେ ଆସାମୀ ଭାଷାରେ ମହାଭାରତ 'ରାମ ସରସ୍ୱତୀ' ପ୍ରଣୟନ କରିଥିଲେ ।

ଶୋଡ଼ଷ ଶତାବ୍ଦୀରେ 'ମୁକ୍ତେଶ୍ୱର' ମରାଠୀ ଭାଷାରେ ମହା-ଭାରତ ଲେଖିଥିଲେ । ସାରଳା ଦାସଙ୍କ ଏକଶତ ବର୍ଷ ପରେ 'କାଶୀ-ରାମ ଦାସଙ୍କ' ଦ୍ୱାରା ବଙ୍ଗଳା ଭାଷାରେ ମହାଭାରତ ଲେଖିଥିବାର ଜଣାଯାଏ । ୧୭୭୮ ଖ୍ରୀ:ଅ:ରେ ପଞ୍ଜାବୀ ଭାଷାରେ ମହାଭାରତ 'କୃଷ୍ଣ-ଲାଲ' ରଚନା କରିଥିଲେ ।

ସବଶେଷରେ ଅଷ୍ଟାଦଶ ଶତାବ୍ଦୀରେ ହିନ୍ଦୀ ଭାଷାରେ 'ଗୋକୁଳ ନାଥ' ମହାଭାରତ ଲେଖିଥିଲେ । କାରଣ ତୁଳସୀ ଦାସ-ଙ୍କର ରାମାୟଣରେ ଅଭିଭବ ଲୋକଙ୍କ ଉପରେ ବିଶେଷ ପ୍ରଭାବ ପକାଇ ଥିଲା । ସେଥିପାଇଁ ହିନ୍ଦୀରେ ମହାଭାରତ ଲେଖିବା ପାଇଁ ଲେଖକ ମାନଙ୍କ ଆଗ୍ରହ ଦେଖା ନଥିଲା ।

ଭାରତ ବର୍ଷରେ ରାଜନୀତି, ଧର୍ମନୀତି, କୂଟନୀତି, ଅର୍ଥନୀତି, ଯୁଦ୍ଧବିଦ୍ୟା ଏବଂ ପ୍ରଶାସନିକ ବିଷୟ ନେଇ ମହାଭାରତ ଗୋଟିଏ ଜାତୀୟ ମହାକାବ୍ୟ । ଏହା ଘୋଷଣା କରେ ଯେ 'ଧର୍ମର ଜୟ ଓ ପାପର କ୍ଷୟ' । ନିର୍ଦ୍ଦେଶ ଦିଏ ଯେ କର୍ମକରି ଯାଅ ଫଳରେ ଆଶା ରଖ ନାହିଁ । କର୍ତ୍ତବ୍ୟ ପାଳନ କର । ସୁଖରେ ବିଭୋର ବା ଦୁଃଖରେ କାତର ହୁଅ ନାହିଁ । ଧୈର୍ଯ୍ୟ, ସହନଶୀଳତା ସହ, ସେବା ତ୍ୟାଗପୂତ ସରଳ

ଜୀବନ ଯାପନ କରି ଉଚ୍ଚ ଚିନ୍ତାରେ ମନ ନିବେଶ କର । ପର ଉପ-କାର ଓ ମାନବିକତା ଦେବତ୍ୱର ପରିଚାୟକ । ଗୁରୁଜନମାନଙ୍କ ଠାରେ ଭକ୍ତିରଖି ଦେବତା ପୂଜା କର । ଗର୍ବକଲେ ଖର୍ବହୁଏ । ଯେଉଁମାନେ ଅହଂକାରୀ ହୁଅନ୍ତି ସେମାନଙ୍କର ପତନ ହୁଏ । ଧନ, ଜନ, ଯୌବନ ଓ ପ୍ରତିଷ୍ଠା ଜଳୁଆର ଜଳ ସମାନ । ଐଶ୍ୱରୀକ ଶକ୍ତି ବିନା ମଣିଷ ବଳବାନ ହୋଇପାରେ ନାହିଁ । ପାର୍ଥିବ ଶକ୍ତିରେ ସୁଖ ଥାଇପାରେ ମାତ୍ର ଶାନ୍ତି ମିଳେ ନାହିଁ ।

ନାରାୟଣ ସିଂହ ଧରାକୋଟରେ ରାଜାଥିଲେ । ତାଙ୍କପରେ ତାଙ୍କ ପୁତ୍ର **ପୁରୁଷୋତ୍ତମ ସିଂହ** ରାଜା ହେଲେ ।

‘ନାରାୟଣ ସିଂହ ନରପତିଙ୍କ ସୁତ
ପୁରୁଷୋତ୍ତମ ସିଂହ ନୃପତି ବିଖ୍ୟାତ’

ରାଜା ପୁରୁଷୋତ୍ତମ ସିଂହଙ୍କ ପରେ ତାଙ୍କର ବିଖ୍ୟାତ ଜ୍ୟେଷ୍ଠ ପୁତ୍ର **ରାମଚନ୍ଦ୍ର ସିଂହ** ରାଜା ହେଲେ । ସେ ଯୁଦ୍ଧରେ ରାଜ୍ୟ ଜୟ କରି ବିରପୁରୁ କଲେ । ପିତାଙ୍କ ପରି ସୁଶାସନ କରି ଖ୍ୟାତି ଅର୍ଜନ କରିଥିଲେ ।

‘ଅର୍ଜିଲେ ପ୍ରବଳ ଦେଖାଇ
ଶୂର ପଣେ ତାଙ୍କ ସମାନ ଏକା ସେହି
ଭଜିଲେ ତାଙ୍କ ପାଦେ ବହୁ ଶତ୍ରୁ ଜନ
ରଞ୍ଜିଲେ ସ୍ୱ ଗୁଣରେ ନିଜ ଜନମାନ’

**ଜୟ ସିଂହ**—ରାମଚନ୍ଦ୍ର ସିଂହ ବଣତି ବର୍ଷରେ ସଂସାର ଜଞ୍ଜାଳରେ ଅତୃପ୍ତ ହୋଇ ନିଜ ରାଜ୍ୟଭାର ପୁତ୍ର ଜୟ ସିଂହଙ୍କ ହସ୍ତରେ ଅର୍ପଣ କରି ତୀର୍ଥଯାତ୍ରା କଲେ । ସେ ବୈଷ୍ଣବ ଥିଲେ ।

'ବତିଶ ବରଷରେ ଘୁଞ୍ଚି ରାଜ୍ୟ ଭାର
ଦେଖିଲେ ସେତୁବନ୍ଧ ରାମେଶ୍ୱର
ଗୃହିଙ୍କୁ ସେଠୁ ନିଜ ସଙ୍ଗତେ ଘେନି ଗଲେ
ପୁରୁଷୋତ୍ତମ କ୍ଷେତ୍ରେ ପ୍ରବେଶ ହୋଇଲେ'

ସେ ବୈଷ୍ଣବ ଥିବା ଯୋଗୁଁ ବୃନ୍ଦାବନରେ ଯମୁନାରେ ସ୍ନାନ କରି ରାଧା କୁଣ୍ଡ, ଶ୍ୟାମ କୁଣ୍ଡରେ ବୁଡ଼ ପାରି ବୈଷ୍ଣବ ବନ୍ଦନା କରିଥିଲେ ।

'ପୁରୁଷୋତ୍ତମ ସିଂହ ନୃପ ପଣନାତି
ରାମଚନ୍ଦ୍ର ସିଂହ ରାଜାଙ୍କ ମୂର୍ଦ୍ଧି ନାତି
ଜୟସିଂହ ରାଜା ମୋହର ଜ୍ୟେଷ୍ଠ ଭାତ
କରିଥିଲେ ପୂର୍ବେ ସେ ଦ୍ରୋଣପର୍ବ ଗୀତ ।'

ରାଜା ଜୟସିଂହ ତାଙ୍କର ଜୀବିତ ଅବସ୍ଥାରେ କେବଳ ଦ୍ରୋଣପର୍ବ ରଚନା କରିଥିଲେ । ଯାହାକି ପରେ କୃଷ୍ଣ ସିଂହଙ୍କ ଦ୍ୱାରା ପରିସମାପ୍ତି ହୋଇଥିଲା ।

**ରାଜେନ୍ଦ୍ର ସିଂହ**—ଜୟ ସିଂହଙ୍କର ସାନ ଭାଇ । ସେ ଜୟ ସିଂହଙ୍କ ମୃତ୍ୟୁ ପରେ ରାଜା ହେଲେ । ପୁଣି ଶ୍ରୀ କ୍ଷେତ୍ରରେ କାନ୍ଥୁ ବନ ଭକ୍ତ ମାର୍ଗରେ କାଳାତିପାତ କରି ସେଠାରେ ପରଲୋକ ଗମନ କଲେ ।

**ନୀଳାଦ୍ରୀ ସିଂହ**—ରାଜେନ୍ଦ୍ର ସିଂହଙ୍କର କନିଷ୍ଠ ଭାଇ । ରାଜେନ୍ଦ୍ର ସିଂହଙ୍କ ମୃତ୍ୟୁ ପୂର୍ବରୁ ତାଙ୍କର ମୃତ୍ୟୁ ହୋଇଥିଲା ।

'ନୀଳାଦ୍ରୀ ସିଂହ ନାମେ ଜନକ ତାଙ୍କର'
ଅ.ଗୁଁତ ପରଲୋକେ କରଥିଲେ ଘର'

ଜୀବିତ ଅବସ୍ଥାରେ ତାଙ୍କର ଦୁଇଟି ଜ୍ୟେଷ୍ଠ ପୁତ୍ରଙ୍କର ମୃତ୍ୟୁ ହୋଇ ଯାଇଥିଲା ।

'ତାହାଙ୍କ ଥାଉ ତାଙ୍କ ଜ୍ୟେଷ୍ଠ ସୁତ ଦୁଇ
ମର୍ତ୍ତ୍ୟ ଲୋକଙ୍କଭ ଧର୍ମକୁ ଥିଲେ ପାଇ'

**କୃଷ୍ଣଚନ୍ଦ୍ର ସିଂହ**—କୃଷ୍ଣଚନ୍ଦ୍ର ସିଂହ ନୀଳାଦ୍ରି ସିଂହଙ୍କ ମଧ୍ୟମ ପୁତ୍ର । ସେ ୧୭୩୯ ଖ୍ରୀ:ଅ:ରେ ଜନ୍ମ ଗ୍ରହଣ କରିଥିଲେ । ବନ୍ଧୁମାନଙ୍କ ସହିତ ସଦ୍‌ଭାବ ନଥିବା ଯୋଗୁଁ ସେ ବାଲ୍ୟ ସମୟରେ ପିତାଙ୍କ ସହିତ ନୟାଗଡ଼ରେ ରହିଥିଲେ । ଏଠାରେ ତାଙ୍କର ପିତା ନୀଳାଦ୍ରୀ ସିଂହଙ୍କ ମୃତ୍ୟୁ ହୋଇଥିଲା । ଆଗରୁ ଜ୍ୟେଷ୍ଠଭାଇ ରାଜେନ୍ଦ୍ର ସିଂହଙ୍କର ପୂର୍ବରେ ମୃତ୍ୟୁ ହୋଇଥିଲା । ପ୍ରଜାମାନେ ଅନ୍ୟ କୌଣସି ବ୍ୟକ୍ତିଙ୍କୁ ରାଜା କରିବା ପାଇଁ ଚେଷ୍ଟା କରୁଥିଲେ । ଏହି ବାର୍ତ୍ତା ପାଇ କୃଷ୍ଣଚନ୍ଦ୍ର ସିଂହ, ନୟାଗଡ଼ରୁ ଧରାକୋଟ ଆସି ସାମନ୍ତମାନଙ୍କୁ ଆୟତ୍ତ କରି ତାଙ୍କର ସାହାଯ୍ୟରେ ୧୭୮୧ ଖ୍ରୀ:ଅ:ରେ ବୟାଳିଶି ବର୍ଷରେ ଧରାକୋଟରେ ରାଜା ହେଲେ । ଜଣାଯାଏ ସେ ସାତବର୍ଷ ରାଜତ୍ୱ କରିଥିଲେ । ତାଙ୍କର ୧୭୮୮ ଖ୍ରୀ:ଅ:ରେ ମୃତ୍ୟୁ ହୋଇଥିଲା ।

କୃଷ୍ଣଚନ୍ଦ୍ର ସିଂହ, ନୀଳାଦ୍ରୀ ସିଂହଙ୍କର ମଧ୍ୟମ ପୁତ୍ର ଥିବାରୁ ସେ ରାଜେନ୍ଦ୍ର ସିଂହଙ୍କ ଉତ୍ତରାଧିକାରୀ ସୂତ୍ରରେ ରାଜା ହୋଇଥିଲେ ।

ମାତ୍ର ୧୮୨୮ ଖ୍ରୀ:ଅ:ରେ ତାଙ୍କର ମହାଭାରତ ଲେଖା ଶେଷ ହୋଇଥିଲା । ବୋଧହୁଏ ତାଙ୍କର ମୃତ୍ୟୁପରେ ଅନ୍ୟାନ୍ୟ ପଣ୍ଡିତମାନେ ଏହା ଲେଖି ତାଙ୍କ ନାମରେ ନାମିତ କରିଛନ୍ତି ।

# କୃଷ୍ଣସିଂହ ମହାଭାରତର ରଚନା ସମୟ

କୃଷ୍ଣଚନ୍ଦ୍ର ସିଂହ ଧରାକୋଟରେ ରାଜା ହୋଇ, ରାଜତ୍ୱର ବର୍ଷକ ଭିତରେ ମହାଭାରତ ଲେଖା ଆରମ୍ଭ କରି ସାତ ବର୍ଷରେ ଶେଷ କରିଥିଲେ ।

ତାଙ୍କ ପୂର୍ବରୁ ତାଙ୍କର ଜ୍ୟେଷ୍ଠ ତାତ ଜୟସିଂହ ଦ୍ରୋଣପର୍ବ ଲେଖିଥିଲେ । ମହାଭାରତକୁ ସଂପୂର୍ଣ୍ଣ କରିବା ପାଇଁ ସେ ୧୭୮୮ରେ ବନ୍ଧୁମାନଙ୍କର ପରାମର୍ଶ କ୍ରମେ ଆଉ ଥରେ ଦ୍ରୋଣପର୍ବ ଅନୁବାଦ କରିଥିଲେ । ସତରଟି ପର୍ବ ଲେଖିବା ପରେ ଦ୍ରୋଣପର୍ବ ଲେଖି-ଥିଲେ । ଅଶ୍ୱମେଧ, ବ୍ୟାସାଶ୍ରମ, ମୌଷଳେ, ଯାନ, ସ୍ୱର୍ଗାରୋହଣ ଏହି ପାଞ୍ଚୋଟି ପର୍ବକୁ ତିନି ବର୍ଷରେ ଶେଷ କରିଥିଲେ ।

| | | | |
|---|---|---|---|
| ଆଦି ପର୍ବ | ୧୭୮୨ ଖ୍ରୀ:ଅ: | ଅନୁଶାସନ ପର୍ବ | ୧୭୮୫ ଖ୍ରୀ:ଅ: |
| ବିରାଟ ପର୍ବ | ୧୭୮୩ ଖ୍ରୀ:ଅ: | ଦ୍ରୋଣ ପର୍ବ | ୧୭୮୮ ଖ୍ରୀ:ଅ: |
| ଭୀଷ୍ମ ପର୍ବ | ୧୭୮୪ ଖ୍ରୀ:ଅ: | ସ୍ୱର୍ଗାରୋହଣ ପର୍ବ | ୧୭୮୫ ଖ୍ରୀ:ଅ: |
| କର୍ଣ୍ଣ ପର୍ବ | ୧୭୮୪ ଖ୍ରୀ:ଅ: | ବନ ପର୍ବ | ୧୮୨୮ ଖ୍ରୀ:ଅ: |
| ସ୍ତ୍ରୀ ପର୍ବ | ୧୭୮୪ ଖ୍ରୀ:ଅ: | ଉଦ୍ଯୋଗ ପର୍ବ | ୧୮୨୮ ଖ୍ରୀ:ଅ: |

ଏଥିରୁ ଜଣାଯାଏ ଯେ ସେ ୧୮୨୮ ଖ୍ରୀ:ଅ: ପର୍ଯ୍ୟନ୍ତ ଜୀବିତ ଥିଲେ ବୋଲି । କାରଣ ବନ ପର୍ବ, ଉଦ୍ଯୋଗ ପର୍ବ ସେ ୧୮୨୮ ଖ୍ରୀ:ଅ:ରେ ଲେଖି ଯାଇଛନ୍ତି । ମାତ୍ର ସେ ପ୍ରକୃତରେ ୧୭୮୮ ଖ୍ରୀ:ଅ:ରେ ପରଲୋକ ଗମନ କଲେ । ତାଙ୍କର ମହାଭାରତ ରଚନା ଯଦି ୧୮୨୮ ଖ୍ରୀ:ଅ:ରେ ଶେଷ ହୁଏ ତାହା ହେଲେ ସେ ଅଶୀନବେ ବର୍ଷ ଜୀବିତ

ଥିବା କଥା । ମହାଭାରତ ଛଡା କୃଷ୍ଣ ସିଂହ ହରିବଂଶ ଅନୁବାଦ କରି ଥିଲେ । ତାଙ୍କର ରଚନାରୁ ପ୍ରତିପାଦନ ହେଉଛି ଯେ ସେ ସଂସ୍କୃତରୁ ଓଡିଆ ଭାଷାରେ ଅନୁବାଦ କରିବାରେ ସୁନିପୁଣ ଶିଳ୍ପୀ ଥିଲେ ।

ସଂସ୍କୃତ ଭାଷାର ମୂଳ ମହାଭାରତ ସାରଳା ଦାସ ଅନୁବାଦ କରି ନାହାନ୍ତି । ସାରଳା ଦାସ ନିଜେ ତାହାର ସ୍ରଷ୍ଟା । ତାଙ୍କର ଭାଷା ଏତେ ସରଳ ଓ ସାବଲୀଳ ଯେ ତାହା ଘରେ ଘରେ ଆଦର ପାଇଛି । ଲୋକେ ଆଗ୍ରହରେ ମୁଗଧ୍ ହୋଇ ପାଠ କରୁଛନ୍ତି ।

ମୂଳଗ୍ରନ୍ଥ ଜାଣିବାକୁ ହେଲେ କୃଷ୍ଣ ସିଂହଙ୍କ ମହାଭାରତ ପଢିବାକୁ ହୁଏ । କାରଣ ମୂଳ ସଂସ୍କୃତରୁ ଅଧିକାଂଶ ଅନୁବାଦିତ । କୃଷ୍ଣ ସିଂହ ମହାଭାରତକୁ ସାତବର୍ଷ ମଧ୍ୟରେ ରଚନା କରି ପାରି-ଥିଲେ । ଏଥିରୁ ତାଙ୍କର ନିଷ୍ଠା, ତନ୍ମୟ, ଏକାଗ୍ରତା, ଅଧ୍ୟବସାୟର ପରିଚୟ ମିଳେ । ସେ ସଂସ୍କୃତ ଶବ୍ଦର ବହୁଳ ବ୍ୟବହାର କରିଛନ୍ତି । ସେଥିରୁ ଜଣାଯାଏ ଯେ ସେ ସଂସ୍କୃତ ଭାଷାକୁ ଉତ୍ତମ ରୂପେ ଆୟତ୍ତ କରି ପାରିଥିଲେ । ସେ ମଧ୍ୟ ଉଚ୍ଚକୋଟୀର ପଣ୍ଡିତ ଥିଲେ । ତାଙ୍କର ଲେଖାରେ ଭକ୍ତଜନୋଚିତ ସୌଜନ୍ୟ, କବି ସୁଜନ ସୁଲଭ ଦୈନ୍ୟ ପ୍ରକାଶ ପାଇଅଛି ।

'ମୂର୍ଖମାନଙ୍କର ମୁଁ ଅଟେ ହିଁ ମୂରୁଖ
ମୋ ଗୀତ ଶୁଣି ମନେ ନୋହିବ ବିମୁଖ'

ଭାଷାରେ ଲୌକିକ ଭାଷା, ସାଧୁ ଭାଷା, ପଣ୍ଡିତ ଭାଷା, ଦେଖିବାକୁ ମିଳେ । ଓଡିଆ ଭାଷାର ବୈଶିଷ୍ଟ୍ୟତା ରକ୍ଷାକରି ଓଡ଼ିଆ ସମାଜର ଆଚାର, ବ୍ୟବହାରର ନିଖୁଣ ଚିତ୍ର ଦେଇଛନ୍ତି । ଏପରିକି

ମାୟାବେଶ ବର୍ଣ୍ଣନାରେ ଜୂଡ଼ା, ଚୂଡ଼ୀ, ଡାଡ଼, ଯାଗୁଡ଼ଲଗା ବଳା, ପାହୁଡ଼, ଝୁଣ୍ଟିଆ, ନାକଚଣା, କାନଫୂଲ, କଅାପତୀ, ସୁନାଚମ୍ପା, ଇତ୍ୟାଦି ଓଡ଼ିଆଣୀର ଅଳଙ୍କାର ଦ୍ୱାରା ନାୟିକାକୁ ଭୂଷିତ କରିଛନ୍ତି ।

କୃଷ୍ଣଚନ୍ଦ୍ର ନିଜ ରାଜ୍ୟର ପ୍ରଶାସନିକ ଦାୟିତ୍ୱ ହରିହର ଗ୍ରାମୁ ପଟ୍ଟନାୟକ ଓ ଜୟ ବେବର୍ତ୍ତାଙ୍କ ହସ୍ତରେ ନ୍ୟସ୍ତକରି ପାଞ୍ଚଜଣ ସଂସ୍କୃତ ପଣ୍ଡିତଙ୍କ ସହଯୋଗରେ ରହି ସଂସ୍କୃତ ଭାଷାର ଅଧିକାଂଶ ଆକ୍ଷରିକ ଅନୁବାଦରେ ଓଡ଼ିଆ ମହାଭାରତ ଲେଖିବା ପାଇଁ ବ୍ରତୀ ହୋଇଥିଲେ ।

ମୂଳ ସଂସ୍କୃତ ଭାଷାର ମହାଭାରତର ଭାବ, ରସ, ମାଧୁର୍ଯ୍ୟ ଓ ରଚନା ଶୈଳୀ ଜାଣିବାକୁ ହେଲେ କୃଷ୍ଣଚନ୍ଦ୍ରଙ୍କ ମହାଭାରତ ପଢ଼ିବାକୁ ହୁଏ ।

ଏକଦା ଧରାକୋଟ ରାଜ୍ୟ ଅନ୍ତର୍ଗତ ଗୋଟିଏ ଗ୍ରାମର ବ୍ରାହ୍ମଣ ପରିବାର ଘରକୁ ଜଣେ ସନ୍ୟାସୀ ଅତିଥି ହୋଇ ଆସି ଗୋଟିଏ ରାତି ଅତିବାହିତ କରିଥିଲେ । ସେ ସନ୍ୟାସୀ ଅର୍ଦ୍ଧରାତିରେ ବ୍ରାହ୍ମଣ ଗୃହିଣୀ ପୈଶାଚିକ କର୍ମରେ ପ୍ରବୃତ୍ତ ଥିବା ଦେଖି ଗୃହ ସ୍ୱାମୀଙ୍କୁ କହି, ତହିଁଆର ଦିନ ତାହା ତାଙ୍କୁ ଦେଖାଇଲେ । ଏହି ମାତ ପ୍ରକୃତ କଥା ସ୍ୱାମୀ ସ୍ତ୍ରୀକୁ ପଚ୍ଚରନ୍ତେ ସ୍ତ୍ରୀ ତାଙ୍କର ସ୍ୱାମୀଙ୍କୁ ପ୍ରାଣରେ ଖାଇଦେବା ପାଇଁ ଧମକ ଦେଲେ । ସ୍ୱାମୀ ଭୟଭୀତ ହୋଇ ରାଜା କୃଷ୍ଣ ସିଂହଙ୍କର ଶରଣାପନ୍ନ ହେଲେ । ରାଜା ତା କଥାକୁ ହାସ୍ୟରେ ନେଇ ତା'ର ଶରଣ ରକ୍ଷାର ବ୍ୟବସ୍ଥା କରୁ ହେଲେ କଲେ ନାହିଁ । ସତକୁ ସତ ସେ ରାତି ପାହିବା ପରେ ଉକ୍ତ ବ୍ରାହ୍ମଣର ମୃତ ଶରୀରକୁ ସେଠାରେ ଦେଖିବାକୁ ପାଇଲେ ।

ସେ ଉତ୍କୃଷ୍ଟ ଭାବରେ ବ୍ରହ୍ମହତ୍ୟା ଦୋଷରେ ଦୋଷୀ ହେଲେ । ଏହି ବ୍ରହ୍ମହତ୍ୟା ଦୋଷରୁ ମୁକ୍ତି ପାଇବା ଆଶାରେ ପଣ୍ଡିତମାନଙ୍କ ପରାମର୍ଶ ଅନୁଯାୟୀ ପ୍ରାୟଶ୍ଚିତ୍ତ ସ୍ୱରୂପ ପୁରାଣ ଲେଖା ଓ ଧର୍ମ କର୍ମରେ ମନ ନିବେଶ କରି ମହାଭାରତ ଲେଖିବା ପାଇଁ ବ୍ରତୀ ହୋଇଥିଲେ ।

## ବୁଧ ହଂସକେଳି ସରୋବର, ଧରାକୋଟ

କବିବର ଚିନ୍ତାମଣି ଧରାକୋଟ ବିଷୟରେ ଲେଖିଛନ୍ତି—

'କବି-ପୁଂଜ-କୁଞ୍ଜ ଚଞ୍ଚାମ ମଧ୍ୟେ ସାହିତ୍ୟ ଖଣି
ମେଳିଅଛି ମଞ୍ଜୁ ମାଧୁରୀ ଧରାକୋଟ ଧରଣୀ'
× × ×
'ଧନ୍ୟ ଧରାକୋଟ ଧରଣୀ ମହାକବି ଜନନୀ
ଲକ୍ଷ୍ମୀ ସରସ୍ୱତୀ ମିଳନ ଭୂମି ଶୋଭା ବିପଣୀ'

ଜଦୁ ସିଂହ—(୧୭ଶ ଶତାବ୍ଦୀ) 'କ୍ଷେତ୍ର ମାହାତ୍ମ୍ୟ' ଓ 'ଭଗବତ ଗୀତ' ଲେଖିଥିଲେ ।

ବ୍ରଜସୁନ୍ଦର ସିଂ—(୧୮ଶ ଶତାବ୍ଦୀ) 'ଅଭିନବ ବର୍ଣ୍ଣ' ଲେଖିଥିଲେ ।

ମଦନ ମୋହନ ସିଂହ—(୧୯ଶ ଶତାବ୍ଦୀ) 'ଜଗନ୍ନାଥ ଜଣାଣ' ରଚନା କରିଥିଲେ ।

ନିଧି ରଥ –(୧୮ଶ ଶତାବ୍ଦୀ) 'ଭଲମନ୍ଦ ଚଉତିଶା' ଓ 'ଋତୁ ସଂହାର' ଅନୁବାଦ କରିଥିଲେ ।

କୃଷ୍ଣଚରଣ ପଟ୍ଟନାୟକ–(୧୯ଶ ଶତାବ୍ଦୀ) ଓଡ଼ିଆରେ 'ଭଗବତ' ଓ 'ରାମାୟଣ' ଲେଖିଥିଲେ ।

କାହ୍ନୁ ଦାସ—ମଙ୍ଗଳପୁର ଗ୍ରାମରେ ୧୭୬୮ରେ ଜନ୍ମ ଗ୍ରହଣ କରି 'ରାମ ରସାମୃତ ସିନ୍ଧୁ' (ସିନ୍ଧୁ ରାମାୟଣ) ଲେଖିଥିଲେ ।

କୃପାସିନ୍ଧୁ ଦାସ—(୧୮ଶ ଶତାବ୍ଦୀ) ମଙ୍ଗଳପୁରରେ ଜନ୍ମ ଗ୍ରହଣ କରି 'କୃପାସିନ୍ଧୁ ରାମାୟଣ' ଲେଖିଥିଲେ ।

ଏହାବ୍ୟତୀତ ରଘୁନାଥ ସିଂହ—'ରାମଲୀଳା', ଦାମୋଦର ସିଂହ—'ଭକ୍ତିଶୁଦ୍ଧ ମାଳିକା', ସଦାଶିବ— ଗୋବନ୍ଦ ନାଟକ, ଜଗନ୍ନାଥ 'ତୀର୍ଥ ମାହାତ୍ମ୍ୟ', ଶ୍ୟାମସୁନ୍ଦର ବିଦ୍ୟାଳଙ୍କାର—'ଋଷିକୁଲ୍ୟା କାବ୍ୟ' ସାରଥି ଦାସ—'ପ୍ରେମ ଜ୍ଞାନାମୃତ', ଭରତ ସେନ—ଗ୍ରନ୍ଥ, ରଚନା ଲେଖିବାରେ ପ୍ରତିଷ୍ଠିତ କବି ଥିଲେ ।



# ଖଲକୋଟ ରାଜବଂଶ

ଖଲିକୋଟ ରାଜବଂଶ ଇତିହାସ ପ୍ରସିଦ୍ଧ ପ୍ରାଚୀନ କ୍ଷତ୍ରିୟ ଉଦୟପୁର ରାଣା ପ୍ରତାପଙ୍କ ବଂଶଧର । ପ୍ରାୟ ପଞ୍ଚଦଶ ଖ୍ରୀ:ଅ:ର ଶେଷ ଭାଗରେ ଏହି ବଂଶର ରେଣୁବୃଣା ଓ ଜାର୍ଜିନ ରାଣା ନାମକ ଦୁଇ ବୀର ଭାଇ ଗଞ୍ଜାମରେ ଦକ୍ଷିଣରେ କେତେକ ଶାସକମାନଙ୍କୁ ନିଜ ବାହୁ ବଳରେ, ପରେ କଳ, ବଳ, କୌଶଳରେ ପରାସ୍ତ କରିଥିଲେ । ଖଲିକୋଟଠାରେ ସେହି ବଂଶର ରାଜାଙ୍କୁ ହତ୍ୟାକରି ରାଜ୍ୟ ପ୍ରତିଷ୍ଠା କରିଥିଲେ । ସେଥିପାଇଁ ଉକ୍ତ ରାଣାଙ୍କର ଅନୁରୋଧ କ୍ରମେ ପିତୃପୁରୀ ଶ୍ରାଦ୍ଧ ଖଲିକୋଟ ରାଜାମାନେ ଦେଇ ଆସୁଛନ୍ତି ।

ଗେଣ୍ଡ୍ରୁ ରାଣା ଖଲିକୋଟରେ ରାଜା ହେଲେ । ତାଙ୍କର ସାନ ଭାଇ କୀର୍ତ୍ତିନ ରାଣା ଜଳନ୍ତରଠାରେ ରାଜ୍ୟର ପ୍ରଥମ କ୍ଷତ୍ରୀୟ ରାଜାରୂପେ ପ୍ରତିଷ୍ଠିତ ହେଲେ । କଥିତ ଅଛି ଯେ, ଖଲିକୋଟର ରାଜଧାନୀ ପ୍ରଥମେ ଗୋପକୁଦା, କୃଷ୍ଣଗିରି, କେଶପୁରଠାରୁ ପରେ ଖଲିକୋଟରେ ହୋଇଥିଲା ।

ଏହି ଗେଣ୍ଡ୍ରୁ ରାଣାଙ୍କର ତ୍ରୟୋଦଶ ବଂଶଧର ରୂପେ ନାରାୟଣ ମର୍ଦ୍ଦରାଜ ସୁପରିଚିତ । ତାଙ୍କର ଜନ୍ମ ୧୮୨୫ ଖ୍ରୀ:ଅ:ରେ ହୋଇଥିଲା । ସେ ବୌଦ୍ଧ ରାଜ କନ୍ୟାକୁ ବିବାହ କରିଥିଲେ । ପୁତ୍ର ସନ୍ତାନ ପାଇଁ ରଣପୁର ରାଜବଂଶର ବର୍ଦ୍ଧନ ସାମନ୍ତଙ୍କ କନ୍ୟାଙ୍କୁ ବିବାହ କରିଥିଲେ । ତାଙ୍କର ପ୍ରଥମ ପୁତ୍ର ହରିହର ମର୍ଦ୍ଦରାଜ ୧୦-୭-୧୮୭୧ ଖ୍ରୀ:ଅ:ରେ ଜନ୍ମ ଗ୍ରହଣ କରିଥିଲେ । ଦ୍ୱିତୀୟ ପୁତ୍ର ବ୍ରଜସୁନ୍ଦର ଅଳ୍ପ ବୟସରେ ପ୍ରାଣତ୍ୟାଗ କରିଥିଲେ । ଚାରିଗୋଟି କନ୍ୟାଙ୍କୁ ବାଳ ଆଠଗଡ଼ ରାଜା ରଘୁନାଥ ବର୍ମା, ସୁରଙ୍ଗୀ ରାଜା ଚନ୍ଦ୍ରଚୂଡ଼ାମଣି ହରିଚନ୍ଦନ ଜଗଦେବ, ଧରାକୋଟ ରାଜା ମଦନମୋହନ ସିଂ, ଶେରଗଡ ରାଜା ଶୋଭାଚନ୍ଦ୍ର ସିଂହଙ୍କୁ ବିବାହ ଦେଇ ଥିଲେ ।

ତାଙ୍କ ସମୟରେ ସେ ଅଗ୍ନିଷ୍ଟୋମ ଯଜ୍ଞ କରିଥିଲେ । ଆଜିର ଯଜ୍ଞନାରଣ ମଠ ତାର ମୂକସାକ୍ଷୀ । ରାଜଗୁରୁ ବଂଶକୁ ନାରାୟଣ ମର୍ଦ୍ଦରାଜ ପାଂଶୁଲା ଗ୍ରାମ ଦାନ କରିଥିଲେ । ଆଠଗଡରେ ମଧ୍ୟ ବ୍ରାହ୍ମଣମାନଙ୍କୁ ଅନେକ ଶାସନ ଦାନ କରିଥିଲେ । ସେ ବାଲୁଙ୍କେଶ୍ୱର ମନ୍ଦିର ତିଆରି କରି ପାଠଛତ୍ର ବନ୍ଧ ଖୋଲାଇଥିଲେ । ଲିଙ୍ଗରାଜ ମନ୍ଦିର ପାକଶାଳା ନିର୍ମାଣ କରି, ଜଗନ୍ନାଥଙ୍କ ପାଇଁ ଗୋଟିଏ ସୁନ୍ଦର ଗୁନ୍ଦୁଆ ଦେଇଥିଲେ ।

ତତ୍କାଳୀନ ଆଠଗଡ଼ ରଚନାରେ ପ୍ରସିଦ୍ଧ ବିଦ୍ୱାନ ପଣ୍ଡିତ ରାଜମାନ୍ୟ ବିଶାରଦ ରଘୁନାଥ ରାଜଗୁରୁ ମହାପାତ୍ରଙ୍କୁ ରାଜସଭାରେ ପଣ୍ଡିତ କରିଥିଲେ । ଏହାଙ୍କର ବିଚକ୍ଷଣ ବୁଦ୍ଧି ଓ ପାଣ୍ଡିତ୍ୟରେ ମୁଗ୍ଧ ହୋଇ ତାଙ୍କୁ ରାଜ୍ୟର ପରିଚାଳନା ପାଇଁ ଦେୱାନ୍ ରୂପେ ମନୋନୀତ କରିଥିଲେ । ପଣ୍ଡିତ ରଘୁନାଥ କବି ରାଜା ବିଶ୍ୱମ୍ଭର ରାଜେନ୍ଦ୍ରଙ୍କ ଦେୱାନ ମଧ୍ୟ ଥିଲେ । ସେ କବି ରାଜାଙ୍କ ନାମରେ ରଘୁନାଥ ବିଳାସ, ଊଷା ବିଳାସ, ରାଧା ପ୍ରେମଲୀଳା, ଭଣିତ କରିଥିଲେ । ସେ କବି ସୂର୍ଯ୍ୟଙ୍କର ଏକନିଷ୍ଠ ଭକ୍ତ ଥିଲେ । ରାଜଗୁରୁ 'ଗୌରୀପଦ କଳାନିଧି' ନାମକ ଖଣ୍ଡିଏ ମନୋହର ସଙ୍ଗୀତ ଗ୍ରନ୍ଥ ଲେଖି ଯାଇଛନ୍ତି ।

୧୮୭୧ ଖ୍ରୀ:ଅ:ରେ ଆଠଗଡ଼ ରାଜ୍ୟର ଦେୱାନ ରୂପେ ଉତ୍ତମ ରାମଲିଙ୍ଗମ୍‌ଙ୍କୁ ନିଯୁକ୍ତ କରିଥିଲେ । ସେ ବଡ଼ ଅତ୍ୟାଚାରୀ ହୋଇଥିବା ଯୋଗୁଁ ବ୍ରହ୍ମପୁରକୁ ଯିବା ରାସ୍ତା ଗୁଣ୍ଡିରିବାଡ଼ିଠାରେ ପ୍ରଜାମାନେ ମେଳ ହୋଇ ତାଙ୍କୁ ହତ୍ୟା କରିଥିଲେ ।

ନାରାୟଣ ମର୍ଦ୍ଦରାଜଙ୍କ ଲେଖା ମଧ୍ୟରୁ 'ରୁକ୍ମିଣୀ ଚଉତିଶା', 'ମହାରାସ' ପ୍ରଧାନ । ନାରାୟଣ ମର୍ଦ୍ଦରାଜ ଦେବଙ୍କର 'ହାସ୍ୟ କଲ୍ଲୋଳ' ଓଡ଼ିଆ ସାହିତ୍ୟର ହାସ୍ୟରସର ସମ୍ପଦ । ସେ ଜଗଦମ୍ବା ସ୍ତୁତି', 'ଦୁର୍ଗା ମାଳଶ୍ରୀ' ରଚନା କରିଥିବା କଥା ଜଣାଯାଏ । ସେ ମଧ୍ୟ ଗୃଷ୍ଟଗୀତର ରଚୟିତା ।

ନାରାୟଣ ମର୍ଦ୍ଦରାଜ ଜଣେ ଅସାଧାରଣ ବ୍ୟକ୍ତି ଥିଲେ । ସେ ଯେପରି ବିଦ୍ୟାନୁରାଗୀ ଥିଲେ ସେହିପରି ଦାତା ଓ ଧର୍ମାନୁରାଗୀ ରାଜା ଥିଲେ । ସେ ୧୮୫୪ ଖ୍ରୀ:ଅ:ରେ ଆଠଗଡ଼ ରାଜ୍ୟକୁ କ୍ରମରେ ନିଯୁ

କରି ନିଜ ରାଜ୍ୟରେ ମିଶାଇଥିଲେ । ନିଜର ଇଷ୍ଟଦେବତା ଜଗନ୍ନାଥଙ୍କ ପାଇଁ ପୁରୀ ମନ୍ଦିର ପରି ଗୋଟିଏ ବିରାଟ ମନ୍ଦିର ଖଲିକୋଟରେ ନିର୍ମାଣ କରିଛନ୍ତି ଓ ତାଙ୍କ ସେବା ପୂଜା ପାଇଁ ବିପୁଳ ଭୂ-ସମ୍ପତ୍ତି ଖଞ୍ଜି ଦେଇ ଯାଇଛନ୍ତି ।

ନାରାୟଣ ମର୍ଦ୍ଦରାଜ ୫୩ ବର୍ଷରେ ୧୮୭୮ ଖ୍ରୀ:ଅରେ ସ୍ୱର୍ଗାରୋହଣ କରିଥିଲେ ।

ନାରାୟଣ ମର୍ଦ୍ଦରାଜଙ୍କ ପୁତ୍ର ଶ୍ରୀ ହରିହର ମର୍ଦ୍ଦରାଜ ୧୦-୬-୧୮୭୧ ଖ୍ରୀ:ଅ:ରେ ଜନ୍ମ ଗ୍ରହଣ କରିଥିଲେ । ସେ ଅପ୍ରାପ୍ତ ବୟସ୍କ ହୋଇଥିବା ଯୋଗୁଁ ୧୮୯୩ ଖ୍ରୀ:ଅ:ରେ ଖଲିକୋଟ ଓ ଆଠଗଡ଼ର ରାଜସିଂହାସନ ପାଇଲେ । ସେ ମୟୁରଭଞ୍ଜ ଶ୍ରେଷ୍ଠରାଜ୍ୟ ବୃନ୍ଦାବନ ଭଞ୍ଜଙ୍କ ପ୍ରଥମା କନ୍ୟାଙ୍କୁ ୧୮୯୪ ଖ୍ରୀ:ଅ.ରେ ବିବାହ କରିଥିଲେ । ଏହି ରାଣୀଙ୍କର ମୃତ୍ୟୁ ପରେ ତାଙ୍କର ଭଗ୍ନୀ କନକମଞ୍ଜରୀଙ୍କୁ ୧୮୯୫ ଖ୍ରୀ:ଅ:ରେ ବିବାହ କରିଥିଲେ । କବିସୂର୍ଯ୍ୟନଗରର କନକମଞ୍ଜରୀ ପାଠାଗାର ତାଙ୍କର ନାମରେ ନାମିତ ହୋଇଛି ।

ବୈଦ୍ୟଚନ୍ଦ୍ର ବାଇକୋଳ ରାଜଗୁରୁଙ୍କୁ ଦେବାନରୂପେ ନିଯୁକ୍ତ ଦେଇଥିଲେ । ବାଘଭୟରୁ ରକ୍ଷା କରିବା ପାଇଁ ସେ ବହୁତ ହିଂସ୍ର ବାଘ ଶିକାର କରିଥିଲେ । ତାଙ୍କ ସମୟରେ ନିର୍ମଳଝର ନିର୍ମାଣ ହୋଇଥିଲା । ସେ ରାଜ୍ୟର ବେଠି ଉଠାଇବା ପାଇଁ ଚେଷ୍ଟା କରି ଥିଲେ ଏବଂ ବହୁ ଜଳଧାର ଖନନ କରିଥିଲେ । ସେ ଜଣେ ଭୂତତ୍ତ୍ୱବିତ୍ ଥିଲେ । କେତେକ ସ୍କୁଲ, ସଂସ୍କୃତ ଟୋଲ ମଧ୍ୟ ନିର୍ମାଣ କରି ଥିଲେ । ପ୍ରଜାମାନଙ୍କର ସ୍ୱାସ୍ଥ୍ୟ ପାଇଁ ଚିକିତ୍ସାଳୟମାନ ବସାଇଥିଲେ ।

ହରିହର ମର୍ଦ୍ଦରାଜଙ୍କ ପରି ଜଣେ ଉଦାରଚେତା, ବଦାନ୍ୟ, ଗୁଣଗ୍ରାହୀ ଓ ବିଦ୍ୟାନୁରାଗୀ ରାଜା ମିଳିବା ବିରଳ । ତାଙ୍କରି ଗୁଣରେ ମୁଗ୍‌ଧ ହୋଇ ଇଂରେଜ ସରକାର ତାଙ୍କୁ 'ରାଜ ବାହାଦୂର' ଉପାଧି ଦେଇଥିଲେ । ତାଙ୍କର ଅକାତର ଦାନ ଫଳରେ ବ୍ରହ୍ମପୁରଠାରେ ଖଲିକୋଟ କଲେଜ ଓ ଟାଉନ୍‌ହାଲ୍ ପ୍ରତିଷ୍ଠିତ ହୋଇଛି । ମହାରାଜ ମାଳିନୀ ଶୋକ ପାଶୋରି ଚିଲିକା ହ୍ରଦକୁ ଉପଭୋଗ କରିବା ପାଇଁ ୧୮୯୭ ଖ୍ରୀ:ଅ:ରେ ରମ୍ଭାଠାରେ ଗୋଟିଏ ମନୋହର ରାଜପ୍ରସାଦ ନିର୍ମାଣ କରିଛନ୍ତି । ପ୍ରଜାମାନଙ୍କୁ ଶିକ୍ଷିତ କରିବା ପାଇଁ 'ପ୍ରଜାବନ୍ଧୁ' ନାମକ ଗୋଟିଏ ପତ୍ରିକା ସେ ପ୍ରକାଶ କରିଥିଲେ । ତାଙ୍କର ଉଦ୍ୟମ ଫଳରେ 'ଉତ୍କଳ ସମ୍ମିଳନୀ' ନାମକ ଗୋଟିଏ ଓଡ଼ିଆ ଅନୁଷ୍ଠାନର ସୂତ୍ରପାତ ହୋଇ ୧୯୦୩ ଖ୍ରୀ:ଅ: ଏପ୍ରିଲ ମାସରେ ଗଞ୍ଜାମ ସମ୍ମିଳନୀର ଅଧିବେଶନ ହୋଇଥିଲା ।

ଓଡ଼ିଶା ପ୍ରଦେଶ ଗଠନ କରିବାରେ ସେ ଥିଲେ ଓଡ଼ିଶାର ପ୍ରଥମ କର୍ଣ୍ଣଧାର । ତା'ପରେ ଅନ୍ୟମାନେ ଅନୁପ୍ରାଣିତ ହୋଇଥିଲେ ବୋଲି କହିହେଲ ଚଳେ ।

ରାଜ୍ୟରେ ମରୁଡ଼ି ହୋଇଥିବା ଯୋଗୁଁ ସେ ପ୍ରଜାମାନଙ୍କୁ ଏକଲକ୍ଷ ପଚିଶ ହଜାର ଟଙ୍କା ବାକି ରାଜସ୍ୱ ଛାଡ଼ି ଦେଇଥିଲେ । ଏଥିରୁ ତାଙ୍କର ଅସାଧାରଣ ବଦାନ୍ୟତା ଜଣାପଡ଼େ । ସେ ୧୬ବର୍ଷ ରାଜତ୍ୱ କରି ୧୯୦୯ ଖ୍ରୀ:ଅ:ରେ ପରଲୋକ ଗମନ କଲେ ।

କବି ହିସାବରେ ହରିହର ମର୍ଦ୍ଦରାଜ 'ସର୍ବମଙ୍ଗଳା ମାଳଶ୍ରୀ', 'ଦୁର୍ଗା ମାଳଶ୍ରୀ', 'ଗୁଳି ମାଳଶ୍ରୀ', 'ମଙ୍ଗଳା ମାଳଶ୍ରୀ', 'ଜଗନ୍ନାଥ-ମାଳଶ୍ରୀ' ଓ 'ଚଉପଦୀ ସାଗର' ଲେଖିଥିବା ଜଣାଯାଏ ।



ରାଜାକବି ନାରାୟଣ ମର୍ଦ୍ଦରାଜ

ହରିହର ମର୍ଦ୍ଦରାଜଙ୍କ ପୁତ୍ର ରାମଚନ୍ଦ୍ର ମର୍ଦ୍ଦରାଜ ରାଜବାହାଦୁର ୧୩-୧-୧୯୦୦ ଖ୍ରୀ:ଅ:ରେ ଜନ୍ମ ଗ୍ରହଣ କରିଥିଲେ । ସେ ବି ଏ. ପର୍ଯ୍ୟନ୍ତ ପଢ଼ିଥିଲେ । ପ୍ରାପ୍ତ ବୟସ ହେବା ପରେ ରାଜ୍ୟ ସିଂହାସନ ଆରୋହଣ କରିଥିଲେ । ସେ ଦେଶ ଓ ଜାତି ପାଇଁ ବହୁ ଜନହିତକର କାମ କରି ସୁନାମ ଧନ୍ୟ ହୋଇ ଯାଇଛନ୍ତି ।

କୃଷିର ଉନ୍ନତି ପାଇଁ ବିରାଟ ଜଳଭଣ୍ଡାର 'ସିଂହାସିନୀ ବାଇ' ସେ ନିର୍ମାଣ କରିଥିଲେ । ଦୁର୍ଭିକ୍ଷର ଆଶଙ୍କା ମଧ୍ୟ ସେ ଦୂର କରିଥିଲେ । ସେ ମାନ୍ଦ୍ରାଜ କାଉନସିଲର ଜଣେ ବିଶିଷ୍ଟ ସଭ୍ୟଥିଲେ । ଗଞ୍ଜାମ ଜିଲା ଡିଷ୍ଟ୍ରିକ୍ଟ ବୋର୍ଡ଼ର ବହୁ ଦିନ ସଭ୍ୟ ଥାଇ ସେ ବହୁତ ସଡ଼କ, ପୋଲ ଓ ରାସ୍ତା ନିର୍ମାଣ କରିଥିଲେ । ଖଲିକୋଟ ଓ କବି-ସୂର୍ଯ୍ୟନଗରରେ ଦୁଇଟି ବିଦ୍ୟାଳୟ ପ୍ରତିଷ୍ଠା କରିଥିଲେ । ସଂସ୍କୃତ ସାହିତ୍ୟକୁ ବଞ୍ଚାଇବା ପାଇଁ ସେ ଖଲିକୋଟରେ ସଂସ୍କୃତ ବିଦ୍ୟାଳୟ ସ୍ଥାପନ କରିଥିଲେ । ପରିଶେଷରେ ସେ ଓଡ଼ିଶା ରାଜ୍ୟରେ ଜଣେ ମନ୍ତ୍ରୀ ହେବାର ଗୌରବ ଅର୍ଜନ କରିଥିଲେ ।

ତାଙ୍କର ପୁତ୍ରବଧୂ ସୁଜ୍ଞାନୀ କୁମାରୀ ଦେବୀ ଜନହିତକର କାର୍ଯ୍ୟଯୋଗୁଁ ଲୋକମାନଙ୍କର ପ୍ରିୟପାତ୍ର ହୋଇ ବହୁବାର ଥର ପାଇଁ ଓଡ଼ିଶା ରାଜ୍ୟ ବିଧାନ ସଭାର ସଭ୍ୟରୂପେ ଆସନ ଅଳଂକୃତ କରିଛନ୍ତି ।

ଅନିରୁଦ୍ଧ ଶ୍ରେଷ୍ଠରାୟ ଖଲିକୋଟ ରାଜା ରାଜସିଂହ ମର୍ଦ୍ଦ-ରାଜଙ୍କ ନାତି ଓ ମଦନ ଗୋପାଳ ଶ୍ରେଷ୍ଠରାୟଙ୍କ ପୁତ୍ର । ସେ ରାଜକୁଳ ସମ୍ଭୂତ ଥିଲେ ମଧ୍ୟ କନିଷ୍ଠ ବଂଶଧର ହୋଇଥିବାରୁ ସିଂହାସନ

ଅଧିକାର କରି ନଥିଲେ । ସେ ୧୭୭୮ ଖ୍ରୀ:ଅ:ରେ 'ଜନ୍ମାଷ୍ଟମୀ ବ୍ରତ' ରଚନା କରିଥିଲେ । ନାରାୟଣ ମର୍ଦ୍ଦରାଜ ଖଲିକୋଟ ରାଜା ସିଂହଙ୍କ ପୁତ୍ର ଭଞ୍ଜଙ୍କ ଅନୁକରଣରେ ୧୭୭୭ ଖ୍ରୀ:ଅ:ରେ 'ଲାବଣ୍ୟବତୀ' କାଳ୍ପନିକ କାବ୍ୟ ଲେଖିଥିଲେ । ଚଇତନ ଦାସ 'କୋଇଲି ରଚନା' ଓ 'ଖଲିକୋଟ ରାଜାଙ୍କର ଯଶ' ରଚନା କରିଥିଲେ ।



## ରାଜକବି

## ରାଧାମୋହନ ରାଜେନ୍ଦ୍ର ଦେବ

ଅତୀତରେ ଓଡ଼ିଶାର ଗଞ୍ଜାମ ଜିଲ୍ଲା ଯେ ସାହିତ୍ୟ କ୍ଷେତ୍ରରେ ଅଗ୍ରଣୀ ଥିଲା, ସ୍ୱାଧୀନତା ଆନ୍ଦୋଳନରେ ତା'ର ଅସୀମ ତ୍ୟାଗ ଥିଲା, ସ୍ୱତନ୍ତ୍ର ପ୍ରଦେଶ ଗଠନରେ ତାର ଅବଦାନ, ପ୍ରାଣପାତ ଉଦ୍ୟମ ଓ ନିଷ୍ଠା ଥିଲା, ଏହା କେହି ଅସ୍ୱୀକାର କରିବେ ନାହିଁ । ଗଞ୍ଜାମର କବିମାନେ ଉତ୍କଳ ଭାରତୀର ସାରସ୍ୱତ ଭଣ୍ଡାରକୁ ନିଜର ରଚନା ରତ୍ନ ଦ୍ୱାରା ଭରପୂର କରି ତାଙ୍କର ମୁକୁଟରେ ପଦ୍ମରାଗ ଫୁଟାଇ ଥିଲେ ।

ଏକଦା 'ଗଞ୍ଜାମ ମାଦ୍ରାଜ' 'ଓଡ଼ିଆ ଏକ ସ୍ୱତନ୍ତ୍ର ଭାଷା ନୁହେଁ' ଧ୍ୱନି ଦେଇ ଯେତେବେଳେ ଭାଷା ସାମ୍ରାଜ୍ୟବାଦ ଆମର ଭାଷା ରାଜ୍ୟ ଉପରେ ପ୍ରଚଣ୍ଡ ଆକ୍ରମଣ ଚଳାଇଥିଲେ, ସେହି ଦୁର୍ଦ୍ଦିନରେ ଏହି କବି ପୁଙ୍ଗବମାନେ ତାଙ୍କର ଯଶସ୍ୱୀ ଲେଖନୀ ମୁନରେ ଏହି ପ୍ରବଳ ଆକ୍ରମଣରେ ପ୍ରତିରୋଧ କରିଥିଲେ । ଉନବିଂଶ ଶତାବ୍ଦୀରେ ଓଡ଼ିଆ ଭାଷା ଓ

ସାହିତ୍ୟ ସୌରଭରେ ସେଇ ସମୃଦ୍ଧପଣବେଗେ ସମୃଗ୍ଧ ହୋଇ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ପାଇଁ ସ୍ୱପ୍ନ ଦେଲେ ।

ଏକଦା ଗଞ୍ଜାମର ଜମିଦାରୀ ରାଜ୍ୟମାନଙ୍କ ମଧ୍ୟରୁ ଗୋଟିଏ କରଦ ରାଜ୍ୟ । ଏହାର କ୍ଷେତ୍ରଫଳ ପ୍ରାୟ ଭଉଦ କୋଶ । ପୂର୍ବରେ ବଙ୍ଗୋପସାଗର ମହୋଦଧି । ଦକ୍ଷିଣରେ ଜଳନ୍ତର, ସୁରଙ୍ଗୀ, ଜରଡ଼ା, ପଶ୍ଚିମ ଉତ୍ତରକୁ ବଡଖେମୁଣ୍ଡୀ ଓ ମନ୍ଦସା ରାଜ୍ୟ । ଏକଦା ତେଲୁଗୁରେ ଅର୍ଥ ଅନ୍ଧାର ! ଏକଦା ଗଡ଼, ପେଣ୍ଠ ଦୁଇଭାଗରେ ବିଭକ୍ତ । ଏକଦା ଗଡ଼ଟି ରତ୍ନେଇ ପର୍ବତର ପାଦ ଦେଶରେ ଅବସ୍ଥିତ । ବାଳକୁମାରୀ ଦେବୀ ଏଠିକାର ପ୍ରତ୍ୟକ୍ଷ ଦେବୀ ରୂପେ ପରିଚିତ । ପର୍ଯ୍ୟଟକମାନଙ୍କୁ ଏହି ସ୍ଥାନଟି ଆକୃଷ୍ଟ କରିଥାଏ । ଏହା ଗୋଟିଏ ମନ୍ଦିର ମଠ ମାଳିକା ସ୍ଥାନ । ମଠମାନଙ୍କ ମଧ୍ୟରେ ଜେମାଦେଇ ମଠ, ଜଗନ୍ନାଥ ମଠ, ସଦାବ୍ରତ ମଠ, ରାଧାକାନ୍ତ ମଠ, ବାଲଜୀ ମଠ, ରାମସ୍ୱାମୀ ମଠ ପ୍ରଧାନ । କେତେକ ସ୍ଥାନରେ ଅଭ୍ୟାଗତ ପାରୁଷ ମିଳେ । ରାଜନହର ଭିତରେ ବୃନ୍ଦାବନ ଚନ୍ଦ୍ର, ଗୋପୀନାଥ, ଦୁର୍ଗାଦେବୀ ଓ ବ୍ରଜରାଜ ଦେବାଦେବୀ ପ୍ରତିଷ୍ଠିତ ।

ସଲଗ୍ନ ବସନ୍ତବନ ମଧ୍ୟରେ ପ୍ରମୋଦ ଭବନ, ସୁନ୍ଦର ବଗିଚା ଦିନେ ଲୋଭନୀୟ ଥିଲା । ଅଚ୍ୟୁତ ସରୋବରଟି ମଧ୍ୟ ମୂକସାକ୍ଷୀ ରୂପରେ ଅଛି । ଅଖଣ୍ଡ ପାଠାଗାରଟି ମଧ୍ୟ ପାଠକ ଓ ଜ୍ଞାନୀମାନଙ୍କର ମିଳନ ସ୍ଥାନ । ଏଠିକାର ଜଳବାୟୁ ମହାଦେଶୀୟ ଜଳବାୟୁ ପରି ।

ଏକଦା 'ରାମଲୀଳା' ଓ 'ରାଧା ପ୍ରେମଲୀଳା' ଓଡ଼ିଶା ବିଖ୍ୟାତ ।

ଏହି ରାଜ୍ୟକୁ କ୍ରମାଗତ ଭାବେ ବିଶ୍ୱମ୍ଭର ରାଜେନ୍ଦ୍ରଦେବ, କିଶୋରଚନ୍ଦ୍ର ରାଜେନ୍ଦ୍ରଦେବ, ରାଧାମୋହନ ରାଜେନ୍ଦ୍ର ଦେବ ଓ ଗୌରଚନ୍ଦ୍ର ଦେବ ରାଜତ୍ୱ କରି ଆସୁଥିଲେ । ଜମିଦାରୀ ଶାସନ ବିଲୋପ ପରେ ଏହା ସରକାରଙ୍କ ଅଧୀନକୁ ଆସିଗଲା । ଏହା ବର୍ତ୍ତମାନ ବିଜ୍ଞାପିତ ଅଞ୍ଚଳ । ଏଠାରେ ତହସିଲ ଅଫିସ, ବ୍ଲକ ଅଫିସ, କଲେଜ, ଟ୍ରେନିଂ ସ୍କୁଲ, ଡାକ୍ତରଖାନା ଓ ବ୍ୟାଙ୍କ୍ ଆଦି ଅଛି ।

ବହୁବର୍ଷ ପୂର୍ବେ **ବିଶ୍ୱମ୍ଭର ରାଜେନ୍ଦ୍ର ଦେବ** ଏହି ରାଜ୍ୟର ରାଜା ଥିଲେ । ସେ ଜଣେ କବି ଓ ଭକ୍ତ ଥିଲେ । ସେ 'ରାଧା-ପ୍ରେମଲୀଳା' ରଚନା କରିଥିଲେ । ପରେ ତାଙ୍କ ପୁତ୍ର କିଶୋରଚନ୍ଦ୍ରଙ୍କ ନାମରେ ଉତ୍ସର୍ଗ ହୋଇଥିଲା । ଅଗଣିତ ଜନତାର ଏହା ଗୋଟିଏ ଚିତ୍ତବିନୋଦର ମାଧ୍ୟମ ଥିଲା । ତାଙ୍କର ଚାରିଗୋଟି ପୁତ୍ର କିଶୋର ଚନ୍ଦ୍ର, ବୀର କିଶୋର, ଲକ୍ଷ୍ମୀ ନରସିଂହ ଓ ପୀତାମ୍ବର ଥିଲେ ।

ଜ୍ୟେଷ୍ଠ ପୁତ୍ର **କିଶୋରଚନ୍ଦ୍ର ରାଜେନ୍ଦ୍ର ଦେବ** ପିତାଙ୍କ ପରେ ରାଜ ସିଂହାସନ ଆରୋହଣ କରିଥିଲେ । ସେ ପାରଳାରେ ବିବାହ କରିଥିଲେ । ତା'ପରେ ସେ 'ବସନ୍ତ ରାସ' 'ରଘୁନାଥ ବିଳାସ' ଲେଖିଥିଲେ । ଶ୍ରୀରୂପ ଗୋସ୍ୱାମୀଙ୍କ ସଂସ୍କୃତ 'ବିଦଗ୍ଧ ମାଧବ ନାଟକ' ଓଡ଼ିଆରେ ଅନୁବାଦ କରିଥିଲେ । ତାହା ୧୯୧୧ ଖ୍ରୀ:ଅ.ରେ ପ୍ରକାଶ ପାଇଥିଲା ।

ଦ୍ୱିତୀୟ ପୁତ୍ର ବୀର କିଶୋର ଦେବ ଆଠଗଡ଼ ରାଜା ଥିଲେ । ସେ ଅପୁତ୍ରିକ ଥିଲେ ।

ତୃତୀୟ ପୁତ୍ର ଲକ୍ଷ୍ମୀ ନରସିଂହ ଦେବ ଢେଙ୍କାନାଳ ରାଜ୍ୟକୁ ଦତ୍ତପୁତ୍ର ହୋଇଥିଲେ ।

ଚତୁର୍ଥ ପୁତ୍ର ପୀତାମ୍ବର ଭ୍ରମରବର ଦେବ 'ଜାନକୀ ବିଳାସ' ରଚନା କରିଥିଲେ । ତାହା ୧୯୧୧ ଖ୍ରୀ:ଅ:ରେ ପ୍ରକାଶିତ ହୋଇଥିଲା । ସେ ଅପୁତ୍ରିକ ଥିଲେ ।

ରାଜା କିଶୋରଚନ୍ଦ୍ର ରାଜେନ୍ଦ୍ର ଦେବଙ୍କର ତିନି ପୁତ୍ର । ରାଧାମୋହନ, ଛବି ମୋହନ ଓ ଦୁର୍ଗାମାଧବ ।

ପିତା କିଶୋରଚନ୍ଦ୍ରଙ୍କ ପରେ **ରାଧାମୋହନ ରାଜେନ୍ଦ୍ର ଦେବ** ସିଂହାସନ ଆରୋହଣ କରିଥିଲେ ।

ଦ୍ୱିତୀୟ ପୁତ୍ର ଛବିମୋହନ ଦେବ (ଥାଟରାଜ) ସେ କେନ୍ଦ୍ରାପଡାରେ ବିବାହ କରିଥିଲେ । ସେ ଜଣେ ନାଟ୍ୟକାର ଥିଲେ । ଜ୍ୟେଷ୍ଠ ଭାଇଙ୍କ ଆନୁକୁଲ୍ୟରେ ଖରିଆରେ ଗୋଟିଏ ରଙ୍ଗମଞ୍ଚ ସ୍ଥାପନ କରି ପିତୃବ୍ୟ ଭ୍ରମରବରଙ୍କ 'ଜାନକୀ ବିଳାସ' ନାଟକ ପରିବେଷଣ କରି ଥିଲେ ।

ତୃତୀୟ ପୁତ୍ର ଦୁର୍ଗାମାଧବ ଦେବ ବାପ୍ପା ହାଣ୍ଡି ନାମରେ ପରିଚିତ । ରାଧାମୋହନ ରାଜେନ୍ଦ୍ର ଦେବଙ୍କର ଦୁଇଗୋଟି ରାଣୀ ଓ ତିନିଗୋଟି ପୁତ୍ର । ପ୍ରଥମ ରାଣୀଙ୍କର ଦୁଇଟି ପୁତ୍ର ଗୌରଚନ୍ଦ୍ର ଦେବ ଶରତଚନ୍ଦ୍ର ଦେବ (ସାହେବ ଦେଉ) । ଦ୍ୱିତୀୟ ରାଣୀଙ୍କର ପୁତ୍ର ଉଦୟଚନ୍ଦ୍ର ଦେବ ବୁଢ଼ାର ସିଂହ ରାଜ ବଂଶକୁ ଦତ୍ତପୁତ୍ର ହୋଇ ଥିଲେ ।

**ଗୌରଚନ୍ଦ୍ର ରାଜେନ୍ଦ୍ର ଦେବ** ୨୪-୭-୧୯୦୨ ଖ୍ରୀ:ଅ: ରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କର ଶିକ୍ଷାଗୁରୁ ଥିଲେ ତାରକାନାଥ ବୋଷ । ସେ ୧୭ ୧୧-୧୯୨୧ ଖ୍ରୀ:ଅ:ରେ ରାଜ ସିଂହାସନ ଅଳଙ୍କୃତ କରିଥିଲେ । ସେ ବରଗଡର କିଶୋରଚନ୍ଦ୍ର ସିଂହଦେବଙ୍କ

ଜ୍ୟେଷ୍ଠା କନ୍ୟା ରାଜଲକ୍ଷ୍ମୀଙ୍କୁ ବିବାହ କରିଥିଲେ । ତାଙ୍କର ଏକ ପୁତ୍ର ତିନ କନ୍ୟା ଜନ୍ମ ଗ୍ରହଣ କରିଥିଲେ । ସେ ଜଣେ ଚରିତ୍ରବାନ, ସରଳ, ବିନୟୀ, ମିଷ୍ଟଭାଷୀ ଓ ପରୋପକାରୀ ଥିଲେ । ସେ ଅତ୍ୟନ୍ତ ପିତୃଭକ୍ତ ଥିଲେ ।

ସେ ୨୭-୧୧-୧୯୩୪ ଖ୍ରୀ:ଅ:ରେ ମୃତ୍ୟୁବରଣ କରିଥିଲେ । ଭାଷା ଜାତି ସୂତ୍ରରେ ପ୍ରଦେଶ ଗଠନ କରିବା ପାଇଁ ସେ ପ୍ରାଣପାତ ଚେଷ୍ଟା କରିଥିଲେ । ହାବକ ଶାସନ କମିଟିରେ ମନୋନୀତ ସଭ୍ୟ ଥିଲେ । ଫିଲିପ୍ ଡଫ୍ କମିଶନ, ସାଇମନ କମିଶନ ଓ ଓଡ଼ୋନାଲଡ଼ କମିଟି ସହ ସେ ସଂପୃକ୍ତ ଥିଲେ । ବିଚ୍ଛିନାଞ୍ଚଳକୁ ଓଡ଼ିଶାରେ ମିଶାଇବା ପାଇଁ ଉତ୍କଳ ସମ୍ମିଳନୀ ଜରିଆରେ ବହୁ ପରିଶ୍ରମ କରି ମାତୃଭୂମିର ଟେକ ରଖିଥିଲେ ।

ଓଡ଼ିଶାକୁ ସାମ୍ରାଜ୍ୟବାଦୀ ଇଂରେଜ ସରକାର ୧୮୦୩ ଖ୍ରୀ:ଅ:ରେ ଅଧିକାର କଲେ । ମାତ୍ର ଗଞ୍ଜାମ ଘୁମୁସର ରାଜ୍ୟକୁ ୧୮୩୭ ଖ୍ରୀ:ଅ: ପର୍ଯ୍ୟନ୍ତ ନିଜ ଅଧିନକୁ ଆଣିପାରି ନଥିଲେ ଓ ଉନବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧ ପର୍ଯ୍ୟନ୍ତ ଇଂରେଜମାନଙ୍କୁ ନାନା ବିଦ୍ରୋହର ସମ୍ମୁଖୀନ ହେବାକୁ ପଡ଼ିଥିଲା । ରଣୋନ୍ମତ୍ତ ଦୁର୍ଦ୍ଧର୍ଷ ଓଡ଼ିଆ ଜାତିକୁ ଦୁର୍ବଳ କରିବା ପାଇଁ ଇଂରେଜମାନେ ଓଡ଼ିଶାକୁ ଖଣ୍ଡ ବିଖଣ୍ଡ କରି ବଙ୍ଗଳା, ବିହାର ଓ ମେଡ୍ରାସ ସହିତ ମିଶାଇ ଦେଇଥିଲେ । 'ନଅଙ୍କ ଦୁର୍ଭିକ୍ଷ' ସମୟରେ ହଜାର ହଜାର ହା-ଅନ୍ନ ଓଡ଼ିଶାବାସୀଙ୍କୁ ମଶା, ମାଛି ପରି ମରିବା ପାଇଁ ମୃତ୍ୟୁମୁଖକୁ ପେଲି ଦେଇଥିଲେ । ୧୮୯୨ ଖ୍ରୀ:ଅ: ପର୍ଯ୍ୟନ୍ତ ମଧ୍ୟ ରେଳ ରାସ୍ତା ତିଆରି କରି ନଥିଲେ ।

୧୯୩୬ ଖ୍ରୀ:ଅ ପର୍ଯ୍ୟନ୍ତ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ନଥିଲା । ମାତୃଭାଷାର ଶିକ୍ଷା ଓ ଜନ୍ମଭୂମିର ସଂସ୍କୃତି ପ୍ରସ୍ଥର ଉପରେ ତାର

ସ୍ଥିତି ଓ ଗୌରବ ଫେରିବା ପାଇଁ ଓଡ଼ିଶା କପରି ଏକ ସ୍ୱତନ୍ତ୍ର ପ୍ରଦେଶ ଭାବେ ସ୍ୱୀକୃତି ପାଇବ ସେ ଅନ୍ୟାନ୍ୟଙ୍କ ସହିତ ନିରବଚ୍ଛିନ୍ନ ଚେଷ୍ଟାରେ ଗୌରଚନ୍ଦ୍ର ଦେବ ଲାଗି ପଡ଼ିଥିଲେ । ସେ ସେଥିପାଇଁ ଓଡ଼ିଆ ଜାତିର ନମସ୍ୟ ହୋଇ ରହିବେ ।

ଶରତଚନ୍ଦ୍ର ଦେବ ପ୍ରଥମ ରାଣୀ ସାରଦା ଦେବୀଙ୍କର ଦ୍ୱିତୀୟ ପୁତ୍ର । ସେ ସାହେବ ଦେଉ ନାମରେ ଜନସାଧାରଣରେ ପରିଚିତ । ସେ ଥିଲେ ଓଡ଼ିଶାର ଜଣେ ବିଶିଷ୍ଟ ଚିତ୍ରଶିଳ୍ପୀ । ତାଙ୍କର ପ୍ରାଚ୍ୟ ଓ ପାଶ୍ଚାତ୍ୟ ଚିତ୍ରକଳା ଉପରେ ଗଭୀର ଜ୍ଞାନ ଥିଲା । ଚିତ୍ରକଳାରେ ଓଡ଼ି-ଶାକୁ ତାଙ୍କର ଅବଦାନ ବହୁତ । ଗଞ୍ଜାମରେ ଚିତ୍ରକଳା ଶିକ୍ଷା ଦାନ କରିବା ପାଇଁ ଅନୁଷ୍ଠାନ ସ୍ଥାପନ ଦିଗରେ ସରକାରଙ୍କଠାରେ ବିଶେଷ ପ୍ରସ୍ତାବ ପକାଇ ସେ ଚିର ସ୍ମରଣୀୟ । ଚିତ୍ରକଳାର ଗଭୀର ଅଧ୍ୟୟନ ପାଇଁ ସେ ମଧ୍ୟ ବିଳାତ ଯାଇଥିଲେ । ତାଙ୍କର ଅମାୟିକ ବ୍ୟବହାର ସମସ୍ତଙ୍କୁ ମୁଗ୍ଧ କରୁଥିଲା ।

ଗୌରବଚନ୍ଦ୍ର ଦେବ ୧୯୩୪ ଖ୍ରୀ:ଅ:ରେ ମୃତ୍ୟୁ ବରଣ କଲା ବେଳକୁ ତାଙ୍କ ପୁତ୍ର ସଚ୍ଚିଦାନନ୍ଦ ଦେବ ନାବାଳକ ଥିଲେ । ସେ ୩୦-୬-୪୫ ଖ୍ରୀ:ଅ:ରେ ରାଜା ହୋଇଥିଲେ । ସେ ତାଙ୍କର ଅଳ୍ପ-କାଳ ରାଜତ୍ୱରେ ସ୍ଥାନୀୟ ଲୋକମାନଙ୍କର ଜନହିତକର କାମ କରି ଥିଲେ ।

## ଜୀବନୀ

ରାଧାମୋହନ ରାଜେନ୍ଦ୍ର ଦେବଙ୍କ ପିତାଙ୍କ ନାମ କିଶୋର ଚନ୍ଦ୍ର ରାଜେନ୍ଦ୍ର ଦେବ । ରାଧାମୋହନ ରାଜେନ୍ଦ୍ର ଦେବ ଶିକ୍ଷକଙ୍କଠାରେ

ତା ୧୮-୭-୧୮୮୧ ଖ୍ରୀ:ଅ:ରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କର ବାଲ୍ୟ ଶିକ୍ଷା ଉଚ୍ଚକୋର୍ଟରେ ପଣ୍ଡିତମାନଙ୍କ ଦ୍ୱାରା ମାତୃଭାଷା ଓ ସଂସ୍କୃତରେ ଦିଆଯାଇ ଥିଲା । ତାଙ୍କର ସ୍ମରଣ ଶକ୍ତି ପ୍ରଖର ଥିଲା । ସେ ପଣ୍ଡିତମାନଙ୍କ ସହଯୋଗରେ ଉଚ୍ଚ ସାହିତ୍ୟ ଚର୍ଚ୍ଚା କରିବାର ସୁଯୋଗ ପାଇଥିଲେ । ତାଙ୍କ ଉପରେ ପିତୃବ୍ୟ ଭ୍ରମରବରଙ୍କ 'ଜାନକୀ ବିଳାସ' ନାଟକର ବିଶେଷ ପ୍ରଭାବ ପଡ଼ିଥିଲା ।

ତାଙ୍କର ବ୍ରତୋପନୟନ ୧୮୮୯ ଖ୍ରୀ:ଅ:ରେ ହୋଇଥିଲା । ପ୍ରଥମେ ୧୯୦୦ ଖ୍ରୀ:ଅ:ରେ ଅଳି ଜେମା ଶାରଦା ଦେବୀଙ୍କୁ ବିବାହ କରିଥିଲେ । ତାଙ୍କର ଔରସରୁ ଗୌରଚନ୍ଦ୍ର ଦେବ, ଶରତଚନ୍ଦ୍ର ଦେବ (ସାହେବ ଦେଉ) ଜନ୍ମଲଭ କରିଥିଲେ । ତାହା ପରେ ସେ ତା ୭-୫-୧୯୧୪ ଖ୍ରୀ:ଅ:ରେ କୁଡ଼ାରସିଂହ ରାଜଜେମା ପଦ୍ମାବତୀ ଦେବୀଙ୍କୁ ବିବାହ କରିଥିଲେ । ତାଙ୍କର ପୁତ୍ର ଉଦୟଚନ୍ଦ୍ର ଦେବ କୁଡ଼ାରସିଂହଙ୍କୁ ଦତ୍ତପୁତ୍ର ହୋଇଥିଲେ ।

ରାଧାମୋହନ ରାଜେନ୍ଦ୍ର ଦେବ ତାଙ୍କର ସେହି ପୁରାତନ ରାଜନଅରର ଜରାଜୀର୍ଣ୍ଣତାକୁ ସଂସ୍କାର କରି ଆଧୁନିକ ରୁଚି ସମ୍ପନ୍ନ କରି ୧୯୨୧ ଖ୍ରୀ:ଅ:ରେ ବସନ୍ତ ୧୮ ମଧ୍ୟରେ ପ୍ରମୋଦ ଭବନ ନିର୍ମାଣ କରିଥିଲେ । ଗିରିଶୋଲ, ରାଧାମୋହନ ପୁର, ଯୋଗପୁର, ହରିଦ୍ୱାର ଓ ପୁରୀଠାରେ ବଙ୍ଗଳା ନିର୍ମାଣ କରିଥିଲେ । ସେ ସଂସ୍କୃତ ପଣ୍ଡିତମାନଙ୍କୁ ବିଶେଷ ସମ୍ମାନିତ କରୁଥିଲେ । ଜ୍ୟୋତିଷାର୍ଣ୍ଣବ, ପଣ୍ଡିତ ଗଦାଧର ବିଦ୍ୟାଭୂଷଣ, ପଣ୍ଡିତ ସଦାଶିବ ବିଦ୍ୟାଭୂଷଣଙ୍କ ସହଯୋଗେ ରାଜ ଦରବାରରେ ପଣ୍ଡିତ ସଭା କରି ସାହିତ୍ୟ ଚର୍ଚ୍ଚା କରୁଥିଲେ । ସାହିତ୍ୟ, ସଂଗୀତ ଓ ଜ୍ୟୋତିଷ ଶାସ୍ତ୍ରରେ ତାଙ୍କର ବିଶେଷ ଦକ୍ଷତା

ଥିଲ । ସେ ମଧ୍ୟ ସୂର୍ଯ୍ୟଘଡ଼ି ନିର୍ମାଣ କରିଥିଲେ । ତାଙ୍କର ପ୍ରଥମ ପଦ୍ୟାବଳୀରୁ ସଙ୍ଗୀତ ଜ୍ଞାନ ସୂଚିତ ହୁଏ । ନାଟ୍ୟକାର ପଣ୍ଡିତ ରାଧାମୋହନ ପଣ୍ଡାଙ୍କ ସହାୟତାରେ ସେ ନାଟକମାନ ଲେଖିବାର ସୁଯୋଗ ପାଇଥିଲେ । ରାଧାମୋହନ ରାଜେନ୍ଦ୍ର ଦେବ ପ୍ରଜାରଂଜନ ରାଜା ତୁଳନାରେ ସାହିତ୍ୟ କ୍ଷେତ୍ରରେ ଅମର ହୋଇ ରହିବେ ।

ସେ ସମାଜ ସଂସ୍କାର କରିବା ପାଇଁ ପ୍ରବଳ ଚେଷ୍ଟା କରିଥିଲେ । ଦେଶରୁ କୁସଂସ୍କାରକୁ ଲୋପ କରିବା ପାଇଁ ଚେଷ୍ଟିତ ଥିଲେ । ସେ ଜଣେ ଦେଶବତ୍ସଳ ଓ ସ୍ୱାଧୀନଚେତା ରାଜା ଥିଲେ । ସେ ନାରୀ ଶିକ୍ଷାର ପ୍ରସାର ପାଇଁ ଉଦ୍ୟମ କରିଥିଲେ । ବାଲ୍ୟ ବିବାହ ଓ ଅବରୋଧ ପ୍ରଥାର ବିରୋଧୀ ଥିଲେ । ସମବାୟ ଆନ୍ଦୋଳନର ପରିସର ବଢ଼ାଇବା ପାଇଁ ଚେଷ୍ଟିତ ଥିଲେ । ଭୂ-ସଂପଦ ଓ ଓଡ଼ିଶାର ଖଣିଜ ପଦାର୍ଥର ବିନିଯୋଗ ପାଇଁ ତାଙ୍କ ପ୍ରାଣ କାନ୍ଦି ଉଠୁଥିଲା । ଯୁବକମାନଙ୍କୁ କର୍ତ୍ତବ୍ୟପରାୟଣ, ଆତ୍ମନିର୍ଭରଶୀଳ ହେବା ପାଇଁ ପ୍ରେରଣା ଦେଉଥିଲେ । ଧର୍ମ ମନ୍ଦିରମାନଙ୍କରେ ପରିଚାଳକମାନଙ୍କର ନିଜର ସ୍ୱାର୍ଥ ପାଇଁ ଯେଉଁ ବ୍ୟଭିଚାର ଚାଲିଥିଲା ତାହାକୁ କଟୁ ସମାଲୋଚନା କରୁଥିଲେ । ତାଙ୍କର ବିଭିନ୍ନ ବକ୍ତୃତାରେ ଏଠିରୁ ତାଙ୍କର ଦେଶ ପ୍ରେମର ସୂଚନା ମିଳେ ।

ପରିଣତ ବୟସରେ ସେ ୩୦-୭-୧୯୬୩ରେ ନିଜ ପୁତ୍ର ଗୌରଚନ୍ଦ୍ରଙ୍କୁ ରାଜ୍ୟଭାର ଅର୍ପଣ କରି ପରମାର୍ଥୀ ଜୀବନ ଯାପନ କରିଥିଲେ । ଶେଷ ଜୀବନରେ ସେ 'ପରମାର୍ଥ ପ୍ରଦୀପ' ଓ ଓଡ଼ିଆରେ ଯୋଗ ବଶିଷ୍ଠ ରାମାୟଣ ରଚନା କରିଥିଲେ ।

ମାତ୍ର ୨୭-୧୧-୩୪ରେ ପିତୃଭକ୍ତ ଗୌରଚନ୍ଦ୍ରଙ୍କର ମୃତ୍ୟୁ ପରେ ସେ କଷ୍ଟ ବନ ପାଇଁ ପୁଣି ରାଜା ହୋଇଥିଲେ । ପରେ ୨୨-୧-୧୯୩୭ ରେ ରସିଗର ରାଜ୍ୟର ପ୍ରଶାସନକ ଦାୟିତ୍ୱ ନେଲେ । ୯-୧୧-୧୯୩୮ ରେ ଏହା କୋର୍ଟ ଆଫ୍ ୱାର୍ଡ଼ସ୍ ହୋଇଥିଲା । ହରିରାମ ସାହୁ ଓ ପୁରୁଷୋତ୍ତମପୁରର ହରିହର ଦାସ ଏହାର ମେନେଜର ଥିଲେ ।

ରାଜା ଗୌରଚନ୍ଦ୍ରଙ୍କ ପୁତ୍ର ନାବାଳକ ଥିଲେ । ସେ୩୦-୬-୪୫ ରେ ରାଜା ହୋଇଥଲେ ।

ରାଧାମୋହନ ରାଜେନ୍ଦ୍ର ଦେବ ୭୦ ବର୍ଷରେ ୧୭-୬-୧୯୪୧ ଖ୍ରୀ:ଅ:ରେ ସ୍ୱର୍ଗାରୋହଣ କରିଥିଲେ ।

ରାଧାମୋହନ ରାଜେନ୍ଦ୍ର ଦେବ ଜଣେ ସଂସ୍କୃତଜ୍ଞ ରାଜାଥିଲେ । ଓଡ଼ିଆରେ ଅସାଧାରଣ ଜ୍ଞାନ ଓ ପୁରାଣ ଇତିହାସରେ ଗବେଷଣା କରିଥିଲେ । ଭଞ୍ଜ ସାହିତ୍ୟ ପାଇଁ ତାଙ୍କର ହୃଦୟର ଦରଦ ଥିଲା । ତାଙ୍କର ପିତୃବ୍ୟ ଭ୍ରମରବରଙ୍କ 'ଜାନକୀ ବିଳାପ' ନାଟକ ତାଙ୍କୁ ଓଡ଼ିଆ ସାହିତ୍ୟରେ ରଚନା କରିବା ପାଇଁ ପ୍ରଥମେ ବିଶେଷ ପ୍ରେରଣା ଦେଇଥିଲେ ।

ସମାଜ ସଂସ୍କାରକ ରାଜା ରାମମୋହନ ରାୟଙ୍କ ପରି ତାଙ୍କର ଲେଖାମାନଙ୍କରୁ ନାନା ପ୍ରକାର ସଂସ୍କାର ନିର୍ଦ୍ଦେଶ ମିଳେ । ଯଥା—ସ୍ତ୍ରୀ ଶିକ୍ଷାର ପ୍ରସାର, ବାଲ୍ୟ ବିବାହ ବନ୍ଦ କରିବା, ଅବରୋଧ ପ୍ରଥା ଉଠାଇ ଦେବା ଇତ୍ୟାଦି । ସେ ଅନ୍ଧ ବିଶ୍ୱାସ ଦ୍ୱାରା ପରିଚାଳିତ ପ୍ରଥାକୁ ସମାଲୋଚନା କରୁଥିଲେ ।

ତାଙ୍କର ଐତିହାସିକ ନାଟକ 'ପ୍ରତାପ'ରେ ତାଙ୍କର ଦେଶ ପ୍ରାଣର ପ୍ରକୃଷ୍ଟ ପ୍ରମାଣ ମିଳେ ।

'ପ୍ରକୃତ ପ୍ରଣୟ' ଓ 'ପ୍ରକୃତ ରହସ୍ୟ' ସାମାଜିକ ନାଟକରେ ସେ ସମାଜ ସଂସ୍କାର ପାଇଁ ଅଙ୍ଗୁଳି ନିର୍ଦ୍ଦେଶ କରିଛନ୍ତି । ନୀତି ଓ ଆଦର୍ଶ ପାଇଁ ସେ ବଳିଷ୍ଠ ଯୁକ୍ତି ବାଢ଼ିଛନ୍ତି । ସ୍ତ୍ରୀ ଶିକ୍ଷା, ସ୍ତ୍ରୀ ସ୍ୱାଧୀନତା ପାଇଁ ସେ ପକ୍ଷପାତୀ ଥିଲେ । ପ୍ରକୃତ ପ୍ରଣୟ ନାଟକରେ ତାଙ୍କର ଉପଦେଶ, ବିନମ୍ର ବ୍ୟକ୍ତିତ୍ୱ ପ୍ରଣିଧାନ ଯୋଗ୍ୟ ।

'ପଞ୍ଚାଳୀ ପଞ୍ଚାପହରଣ' 'ପରମଧାମସହ ଗମନ' ପୌରାଣିକ ନାଟକ । ଏଥିରେ ପୌରାଣିକ କଥା ବସ୍ତୁର ଛବି ମିଳେ । ସେ 'ପ୍ରେମ ତରଙ୍ଗ' ବି ରଚନା କରିଛନ୍ତି ।

'ପ୍ରଥମ ପଦ୍ୟାବଳୀ'ଟି ସଙ୍ଗୀତ ଗର୍ଭକ । ସେଥିରୁ ତାଙ୍କର ସଙ୍ଗୀତର ପାରଦର୍ଶିତାର ପ୍ରମାଣ ମିଳେ । ସେହି ସମୟରେ ଲେଖା ଗୁଡ଼ିକୁ ସଙ୍ଗୀତର ରସରେ ରସାଣିତ କରିବା ପାଇଁ କବିମାନେ ଉଚିତ ମନେ କରୁଥିଲେ । ଏହି ସଙ୍ଗୀତ ଗୁଡ଼ିକରେ କର୍ଣ୍ଣାଟକ ସଙ୍ଗୀତର ପ୍ରଭାବ ପଡ଼ିଥିବା ସଙ୍ଗେ ସଙ୍ଗେ ଓଡ଼ିଶୀ ସଙ୍ଗୀତର ବଳିଷ୍ଠ ଇଙ୍ଗିତ ପ୍ରତିଫଳିତ ହୋଇଥିଲା ।

'ପ୍ରେମ ମଞ୍ଜୁଷା' ଭଞ୍ଜୀୟ କାବ୍ୟ ଢଙ୍ଗରେ ଲିଖିତ ଓ ପଦ୍ୟାମୟ ।

ସେଥିରେ ବନ୍ଦନାରେ ଶିବ ଓ ବିଷ୍ଣୁଙ୍କୁ ଏକ ଛନ୍ଦରେ ଆରାଧନା କରାଯାଇଛି —

ଜୟ ଜୟ ଦେବ ଗଣେଶ ବାହନ      ହେ ପରମେଶ୍ୱର
ଗରଶନକାସ ମଖର ନାଶକ      ଶଶିଖଣ୍ଡଧର
ହେ ବିଭୂତିବନ୍ତ ନଗନନ୍ଦିନୀନାଥ      କୁମାରଙ୍କ ତାତ
ମଦନ ଗର୍ବ ନାଶକ ଭୂତାଶ୍ରିତ      ଲଙ୍କେଶ ପୂଜିତ

ଓଡ଼ିଶାର ନାଟ୍ୟକାରଙ୍କ ମଧ୍ୟରେ ସେ ଯେ ଶ୍ରେଷ୍ଠ ଓ ପ୍ରଥମ ବୋଲି ମନେ ହୁଏ । ତାଙ୍କର ପ୍ରତାପ ନାଟକ ପରି ଓଡ଼ିଆରେ ପ୍ରକାଶକାଳ କୌଣସି ଜାତୀୟବାଦୀ ନାଟକ ପୂର୍ବରୁ ଲେଖା ହେବାର ପ୍ରମାଣ ନାହିଁ ।

କବିଙ୍କର 'ପରମାର୍ଥ ଚନ୍ଦ୍ରୋଦୟ' ଓ ଓଡ଼ିଆରେ ଯୋଗ ବଶିଷ୍ଠ ରାମାୟଣ' ବୋଧହୁଏ ପ୍ରକାଶ ପାଇନାହିଁ ।

କିଶୋରଚନ୍ଦ୍ର ରାଜେନ୍ଦ୍ର (ପାଟଦେବ)ଙ୍କ ପିତା ବିଶ୍ୱମ୍ଭର ରାଜେନ୍ଦ୍ର ଦେବ । 'ବିଦଗ୍ଧ ନାଟକ', ରାଧାପ୍ରେମ ଲୀଳା 'ବସନ୍ତରାସ' 'ଝୁଲଣ ଚମ୍ପୂ', 'ଚନ୍ଦନଯାତ୍ରା ଚାଳି', 'କିଶୋରଚନ୍ଦ୍ର ଚାଳି' । କୁଳମଣି ରାଜେନ୍ଦ୍ର (୧୭୩୨-୧୭୬୫) ଏକଟି ରାଜା । ସେ ଜଣେ ସାହିତ୍ୟ ରସ-ପଣ୍ଡିତ । ସେ ଅନେକ ଚଉପଦୀ ଲେଖିଛନ୍ତି । କୃଷ୍ଣଚନ୍ଦ୍ର ରାଜେନ୍ଦ୍ର (୧୭୬୫-୧୭୮୭) ଏକଟି ରାଜା ପିତା କୁଳମଣି ରାଜେନ୍ଦ୍ର । ସଂସ୍କୃତରେ 'ରାଧାବିଳାସ ମହାକାବ୍ୟ', 'ଅର୍ଦ୍ଧ ରାମାୟଣ' 'ରାମଲୀଳା ଗୀତିନାଟ୍ୟ' । ଜଗନ୍ନାଥ ରାଜେନ୍ଦ୍ର 'ଚଉପଦୀ ଭୂଷଣ' ରଚୟିତା । ପିତାମ୍ବର ରାଜେନ୍ଦ୍ର (୧୭୮୭-୧୮୧୪) ଏକଟି ରାଜା କୃଷ୍ଣଚନ୍ଦ୍ର ରାଜେନ୍ଦ୍ରଙ୍କ ପୁତ୍ର । 'ରାମଲୀଳା', 'ଷଣ୍ଡ 'ରାମାୟଣ' ବିଶ୍ୱମ୍ଭର ରାଜେନ୍ଦ୍ର (୧୮୫୧-୧୮୫୨) ଏକଟି ରାଜା । ୧୮୬୯ ଖ୍ରୀ.ଅ.ରେ

'ଶ୍ରୀର ରାମଚନ୍ଦ୍ର ବିଳାସ', 'କୃଷ୍ଣଲୀଳା', 'ରଘୁନାଥ ବିଳାସ', 'ଚଣ୍ଡିପଦୀ ଭୂଷଣ' 'ଉଷା ବିଳାସ', 'ରାଧାମୋହନ ଗୀତ' 'ରାହାସ-ଲୀଳା', । ଇତ୍ୟାଦି ରଚନାପ୍ରାୟ ଜନ୍ମ ଊନବିଂଶ ଶତାବ୍ଦୀର ମଧ୍ୟଭାଗ । ସେକାଳ ରାଜା ବିଶ୍ୱମ୍ଭରଙ୍କୁ 'କ' ଠାରୁ 'କ୍ଷ' ପର୍ଯ୍ୟନ୍ତ ଉଚିତ ଭଜନାର ରଚନାରେ ସାହାଯ୍ୟ କରିଥିଲେ ।



# ରାଜକବି ରାମକୃଷ୍ଣ ଦେବ

ଗଞ୍ଜାମ ର ଏହି ସମୃଦ୍ଧିଶାଳୀ ପାଲୁରୁ ନଗର ବର୍ତ୍ତମାନ ଓଡ଼ିଶା ବଙ୍ଗୋପସାଗରର ବେଳାଭୂମି ଉପକୂଳରେ ଧ୍ୱଂସ ପ୍ରାପ୍ତ ଏକ ଛୋଟିଆ ଜମିଦାରୀ । ଏହାର ପରିବେଷ୍ଟନୀ ପ୍ରାକୃତିକ ସୌନ୍ଦର୍ଯ୍ୟରେ ଭରପୂର । ତା'ର ଚଳଚଞ୍ଚଳ ନୀଳସାଗର, ଅଦୂରସ୍ଥିତ ଶ୍ୟାମଗିରିର ଅପୂର୍ବ ଶୋଭାରାଶି, ସହକାର ବନରେ କୋକିଳର ମଧୁର କୂଜନ ଜନମନକୁ ରଞ୍ଜନ କରୁଅଛି । ଏହାର ପ୍ରାକୃତିକ ସୌନ୍ଦର୍ଯ୍ୟ-ରାଶି କବିଙ୍କୁ ବିଶେଷ ଖୋରାକ ଯୋଗାଇଛି ।

ରାମକୃଷ୍ଣ ଦେବ ପାଲୁରୁ ଯୁବରାଜ । ଅଷ୍ଟାଦଶ ଶତାବ୍ଦୀରେ ଜନ୍ମଗ୍ରହଣ କରି କେତେକ କବିତା ରଚନା କରିଥିଲେ ।

'ତୁ ନଯାରେ ମଦନ ଘାଜାରେ ମୋତେ ମାରି
'ବାମନେତ୍ର କୋଣେ ମାରି ବନ୍ଧୁ ଥରେ ଗୃହଁାରେ'

କୁଞ୍ଜବିହାରୀ ବିଜେନ୍ଦ୍ରଦେବ ପାଲୁରର ରାଜାଥିଲେ । ସେ କେତେକ ଚମ୍ପୂ ରଚନା କରିଛନ୍ତି ।

କବି କେଶବ ପଟ୍ଟନାୟକ 'ନୃତ୍ୟ ରାମାୟଣ' ଲେଖିଛନ୍ତି । ଦଣ୍ଡପାଣି ପ୍ରଧାନ 'ଦଣ୍ଡପାଣି ରାମାୟଣ' ରଚନା କରିଛନ୍ତି । କବି ବିଶ୍ୱନାଥ ଖୁଣ୍ଟିଆ ଏମାନଙ୍କ ମଧ୍ୟରୁ ଅନ୍ୟତମ ବିଶିଷ୍ଟ ଲେଖକ । ସେ ଅଷ୍ଟାଦଶ ଶତାବ୍ଦୀରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର 'ବିଚିତ୍ର ରାମାୟଣ' (ବିଚିତ୍ର ରାମାୟଣ) ଗୋଟିଏ ଅନବଦ୍ୟ ସୃଷ୍ଟି ।

—o—

# ବିଶ୍ୱନାଥ ଖୁଣ୍ଟିଆ

ଗଞ୍ଜାମର ପୁଣ୍ୟତୋୟା ଋଷିକୁଲ୍ୟାର ବଙ୍ଗୋପସାଗର ସଙ୍ଗମ ସ୍ଥାନର ପାର୍ଶ୍ୱରେ ଧ୍ୱଂସ ଦୁର୍ଗ 'ପୋତାଗଡ' ଓ ଅନତି ଦୂରରେ ପାଲୁରୁ (ଗଜପତି ନଗର) ଶ୍ରୀ ସ୍ଥାନ ଭାବେ ଅବସ୍ଥିତ । ସମ୍ଭବତଃ ପାଲୁରୁ ଥିଲା କଙ୍ଗୋଦ ରାଜ୍ୟର ରାଜଧାନୀ ଓ ଆଧୁନିକ ଗଞ୍ଜା ମୁହାଣରେ ଅବସ୍ଥିତ ପୋତାଗଡ଼ ଥିଲା ପାଲୁରୁ ଅନ୍ତର୍ଦେଶୀୟ ବନ୍ଦର । କଙ୍ଗୋଦ ଥିଲା ତତ୍‌କାଳୀନ କଳିଙ୍ଗ ସାମ୍ରାଜ୍ୟର ଗୋଟିଏ ବିଭବଶାଳୀ ରାଜ୍ୟ ଓ ଅର୍ଥନୈତିକ କେନ୍ଦ୍ରବିନ୍ଦୁ ।

କେତେକ କହନ୍ତି ୧୭୩୩ ଖ୍ରୀ:ଅ:ରେ ସୁବାଦାର ବାକର ଖାଁ ଗୋଲକୁଣ୍ଡା ସୁଲତାନଙ୍କୁ ପରାସ୍ତ କରି ମନସୁର୍ ଗଡ଼ (ଗୋପାଳପୁର)

ଅଧିକାର କରି ମୋଗଲ ରାଜା ହୁମାୟୁନଙ୍କ ନାମରେ ହୁମା ରାଜ-ପଦଟି ନାମିତ କରିଥିଲେ। ଗଞ୍ଜର ଅର୍ଥ ବନ୍ଦର ମାଲଗୋଦାମ। ଗଞ୍ଜରୁ ଗଞ୍ଜାମ ହୋଇଛି। ହୁମା, ଗଞ୍ଜା, ଘୋଡ଼ାଗଡ଼ ଓ ପାଲୁର ଏକ ରାଜ୍ୟର ସମଷ୍ଟି। ଘୋଡ଼ାଗଡ଼ ହେଉଛି ଆନ୍ତର୍ଜାତିକ ଖ୍ୟାତି ପ୍ରସିଦ୍ଧ ପାଲୁରୁ ବନ୍ଦର। ଏହା ପ୍ରାଚୀନ ନାମରେ ପାଲୁର, ଦନ୍ତପୁର ଓ ବନ୍ତପୁର ରୂପେ ଦେଶ ବିଦେଶରେ ପରିଚିତ।

ଚୀନ ପରିବ୍ରାଜକ ହୁଏନ୍‌ସା ମତ ଦେଇଛନ୍ତି ଯେ 'ଏହା ବନ୍ଦର ସମୃଦ୍ଧିଶାଳୀ ସେନା ଦ୍ୱାରା ସୁରକ୍ଷିତ ଥିଲା। ଏହି ବନ୍ଦରରୁ ସାଧବମାନେ ଯୁଦ୍ଧ ବାଣିଜ୍ୟ ତଟରେ ହୀରା, ନୀଳା, ମଣି, ପଞ୍ଚଧାତୁ, ନେସର ଚୀନବସନ, ତାରକସି କାମ, ଧାତୁଦ୍ରବ୍ୟ କାମ, ରମ୍ପଚଟ ନେଇ ଜାଭା, ସୁମିତ୍ରା, ବୋର୍ଣ୍ଣିଓ, ସିଂହଳ, ବର୍ମା, କାମ୍ବୋଜ, ତାମ୍ରଲିପ୍ତ, ଅନୁରାଧା ପୁର, ଗଙ୍ଗାସାଗରକୁ ଧାରବାହିକ ଭାବେ ବାଣିଜ୍ୟ ଚଳାଉ ଥିଲେ।

ଅଷ୍ଟମ ଶତକରେ କଳିଙ୍ଗ ସିଂହଳ ରାଜ ବଂଶର ପ୍ରତିଷ୍ଠାତା ଥିବା ଜଣାଯାଏ। ପାଲୁରୁ ଠାରୁ ଖ୍ରୀଷ୍ଟପୂର୍ବ ଶତାବ୍ଦୀରେ ମହାସେନ ବୁଦ୍ଧ ଦେବଙ୍କର ଦନ୍ତ ବୋଇତ ଯୋଗେ ନେଇ କାଣ୍ଡିଠାରେ ପ୍ରତିଷ୍ଠା କରିଥିଲେ।

ଖ୍ରୀଷ୍ଟୀୟ ସପ୍ତମ ଶତାବ୍ଦୀରେ ବିକ୍ରମ ମାଧବରାଜଙ୍କ ରାଜତ୍ୱ କାଳରେ ଚୀନ ପରିବ୍ରାଜକ ହୁଏନ୍‌ସାଂ କଙ୍ଗୋଦ ଆସି ଏହାର ଅଖଣ୍ଡ କ୍ଷମତା, ସାମରିକ ଶକ୍ତି, ଅର୍ଥନୈତିକ ସମୃଦ୍ଧି, ଗୃହକଳା ଓ ସ୍ଥାପତ୍ୟ ସମ୍ବନ୍ଧରେ ଭୂୟସୀ ପ୍ରଶଂସା କରିଛନ୍ତି। ସେ ମଧ୍ୟ ଆହୁରି ଲେଖିଛନ୍ତି

ଯେ 'କଳିଙ୍ଗମାନେ ସାହସୀ ଓ ବାଣିଜ୍ୟ କ୍ଷେତ୍ରରେ ସାଧୁତା ପ୍ରଦର୍ଶନ କରୁଥିଲେ । ତାଙ୍କର ଭାଷା ଓ ବ୍ୟବହାର ମାର୍ଜିତ ଥିଲା ।'

'ପଶ୍ଚିମ ଗଙ୍ଗବଂଶର ଏକ ଶାଖା ଉତ୍ତର ପୂର୍ବଆଡ଼େ ଗନ୍ତକରି ପଞ୍ଚମ ଶତାବ୍ଦୀରେ ତ୍ରିକଳିଙ୍ଗ ଅଧିକାର କରି ପାଲୁରୁ (ଦନ୍ତପୁର) ଠାରେ ରାଜଧାନୀ ସ୍ଥାପନ କଲେ । ପରେ ୧୦୭୭ ଖ୍ରୀ:ଅ:ରେ କଳିଙ୍ଗ ନଗର (ପାରଳାଖେମୁଣ୍ଡିର ମୁଖଲିଙ୍ଗମ୍)କୁ ରାଜଧାନୀ ଉଠାଇ ଆଣି-ଥିଲେ । ମାତ୍ର ୧୧୩୫ ଖ୍ରୀ:ଅ:ରେ ଚୋଡ଼ଗଙ୍ଗ ଦେବ କଟକକୁ ତାହାର ରାଜଧାନୀ ସ୍ଥାନାନ୍ତରିତ କରିଥିଲେ ।

୧୭୫୧ ଖ୍ରୀ:ଅ:ରେ ଚିଲିକାଠାରୁ ଦକ୍ଷିଣରେ ଅବସ୍ଥିତ ଓଡ଼ିଶା (କୋରାପୁଟ, ଫୁଲବାଣୀ ଓ ଗଞ୍ଜାମ) ଗୋଲକୁଣ୍ଡା କୁତବସାହି ଶାସକଙ୍କ ଦ୍ୱାରା ଅଧିକୃତ ହେଲା । ୧୭୬୦ ଖ୍ରୀ:ଅ:ରେ ନିଜାମଙ୍କ ନବାବ ଜାଫିର ଖାଁ ସିକାକୋଲମ୍ ଠାରେ ଶିବିର ସ୍ଥାପନ କରି-ଥିଲେ । ମୁତାହାଦାମ୍‌ଙ୍କ ସଙ୍ଗେ ପାରଳାଖେମୁଣ୍ଡି ବୀର ରାଜା ଜଗନ୍ନାଥ ନାରାୟଣ ଦେବଙ୍କ ସେନାପତି ହରିଶ୍ଚନ୍ଦ୍ର ପାତ୍ରଙ୍କ ସଙ୍ଗେ ଗଞ୍ଜାଠାରେ ଯୁଦ୍ଧ ହୋଇଥିଲା ।

ଜଣାଯାଏ ଯେ ଖ୍ରୀ ପୂ: ୨୬୨ରେ ଧଉଳି ଯୁଦ୍ଧ ପୂର୍ବରୁ ବିଖ୍ୟାତ ମୌର୍ଯ୍ୟ ସମ୍ରାଟ ଅଶୋକ ପାଲୁରୁ ରାଜକନ୍ୟା କାରୁବାକୀର ରୂପ ଲାବଣ୍ୟରେ ଆକୃଷ୍ଟ ହୋଇ ତାଙ୍କର ପାଣିଗ୍ରହଣ କରିବା ଆଶାରେ ଯୁଦ୍ଧ କରି ଏହାକୁ ଶ୍ରୀହୀନ କରି ଧ୍ୱଂସ ମୁହଁରେ ପକାଇ ଥିଲେ । ରକ୍ତାକ୍ତ ଯୁଦ୍ଧରେ ପାଲୁରୁ ରାଜା ପରାସ୍ତ ହୋଇଥିଲେ ମଧ୍ୟ ରାଜକନ୍ୟା ରାଣୀ ପ୍ରତିରୋଧ ପାଇଁ ପୁରୁଷ ବେଶରେ ଘୋଟକ ଉପରେ ରଣାଙ୍ଗନରେ

ଯୁଦ୍ଧ କରିଥିଲେ । ପରେ ବନ୍ଦୀ ହୋଇ ଚଣ୍ଡାଶୋକଙ୍କୁ ଅହିଂସା ମନ୍ତ୍ରରେ ଦୀକ୍ଷିତ କରି ଧର୍ମାଶୋକଙ୍କୁ ବିବାହ କରିଥିଲେ । ଧଉଳ ଯୁଦ୍ଧର ଭୟାବହ ଦୃଶ୍ୟ, ଓ କାରୁବାକୀର ଉପଦେଶରେ ସେ ହୃଦୟ ପରିବର୍ତ୍ତନ କରି ବୌଦ୍ଧ ସନ୍ୟାସୀ ଉପଗୁପ୍ତଙ୍କୁ ଗୁରୁକରି ନେଇଥିଲେ । ଫେରିବା ବାଟରେ ୨୫୦ ଖ୍ରୀ:ପୂ:ରେ ଗଞ୍ଜାମ ଜଉଗଡ଼ଠାରେ ଶିଳାଳିପି ଅନୁଶାସନ ଖୋଦିତ କରିଥିଲେ ଓ ଅଶୋକନଗର (ଆସିକା) ନଗରୀ ସ୍ଥାପନ କରିଥିଲେ ।

**ପାତ୍ରପୁର**, ଓଡ଼ିଶାର ପୂର୍ବ ସାଗର ବେଳାଭୂମିର ଉପକୂଳରେ ଗୋଟିଏ ଛୋଟିଆ ଜମିଦାରୀ । ପ୍ରାକୃତିକ ଶୋଭାରାଶିରେ ଭରପୂର । ଚଳଚଞ୍ଚଳ ନୀଳସାଗର ବିଚିମାଳା ପାଦ ଧୌତକରେ । ଅଦୂର ସ୍ଥିତ ଶ୍ୟାମଗିରି କୁଞ୍ଜରେ କୋକିଳର ମଧୁର କୂଜନ ଜନମନ ହରଣ କରେ । ଏହାର ଅପୂର୍ବ ପ୍ରାକୃତିକ ବିଭବ କବିମାନଙ୍କୁ ଉପାଦାନ ଯୋଗାଇ ଥାଏ ।

କବିଙ୍କ ଲେଖା ମଧ୍ୟରୁ ବିଶି ରାମାୟଣ ବା ବିଚିତ୍ର ରାମାୟଣ ପ୍ରଧାନ । ଏହା ଓଡ଼ିଆ ଭାଷାର ଗୋଟିଏ ସରଳ ଓ ସଂକ୍ଷିପ୍ତ ରାମାୟଣ । ଏହା ସାତ ଭାଗ ଓ ୨୮୯ ଅଧ୍ୟାୟରେ ବିଭକ୍ତ ତଥା ନାନା ବୃତ୍ତ ଓ ସଂଗୀତର ରାଗ, ତାଳରେ ରଚିତ । ନର୍ତ୍ତକୀମାନେ ଏହାକୁ ସଙ୍ଗୀତ ମାଧ୍ୟମରେ ଅଭିନୟ କରି ଗାଇଥାନ୍ତି ।—

"ହେମ ହରିଣୀ, ଧୀରେ ଧାମନ୍ତେ ସୁନ୍ଦର ଧରଣୀ, ଧରୁ ଧରୁ କରୁ ମୃଗ ପଳାଅନ୍ତେ ଗୋଡ଼ାଉଛନ୍ତି ରଘୁମଣି ।" (୯୨ ଅଧ୍ୟାୟ)

"ବନଗିରି ମୋ' କାନ୍ତ ଗଲେ ମୃଗ ମାରି" (୯୫ ଅଧ୍ୟାୟ) ।

"ସୁଲକ୍ଷଣୀ ସୀତା କେଣିକି ଗଲ, ଅନ୍ତର କରି କେ ପତିର ଘରରୁ ମନ୍ତ୍ରର ବା କରି ତାହାକୁ ନେଲ, କ୍ଷୀର ନୀର ପ୍ରୀତି ଅନ୍ତର କଲ ।"
(୧୦୫ ଅଧ୍ୟାୟ) ।

"ମନ୍ତ୍ରୀ ମୁଖଁ ଶୁଣି କୋପେ ବଂଶ ପାଣି ପୃଷ୍ଟକ ଯାନେ ବଜେ କଳ,
ଧନୁଶର ଧରି ଆକାଶେ ରହିଣି ସୁବଳ ଗିରିକ ଗୃହିଲ,
ତୋଳେ ଦେଖିଲ ଦୁର୍ବାଦଳ ଶ୍ୟାମ ଶରୀର ।" (୧୮୪ ଅଧ୍ୟାୟ) ।
"ଆହା ଧନୁର୍ଦ୍ଧର ବୀରବର, ଧନୁଶର ନ ଥିଲ କ କର" ।

(୧୮୯ ଅଧ୍ୟାୟ) ।

ଏହା ସରଳ, ସୁନ୍ଦର ଭାଷା, ପ୍ରକାଶ ଭଙ୍ଗୀ ରାଗ ରାଗିଣୀର ବୈଚିତ୍ର୍ୟ ଯୋଗୁଁ ଜନପ୍ରିୟ ହୋଇଛି । ଲୀଳାଗାୟକ ଓ ନୃତ୍ୟକାରୀ ମାନଙ୍କର ଆଦର ଲଭ କରିଛି । ପ୍ରଥମରେ ଏହା ୨୩୬ ଅଧ୍ୟାୟ ଥିଲ, ମାତ୍ର ପ୍ରକାଶ ପାଇଲ ପରେ ୨୮୯ ଅଧ୍ୟାୟରେ କଳେବର ବୃଦ୍ଧି ପାଇଛି ।

କବି ଅଷ୍ଟାଦଶ ଶତାବ୍ଦୀରେ ଗଞ୍ଜାମ ଜିଲ୍ଲା ପାଲୁରୁ ଠାରେ ଜନ୍ମଗ୍ରହଣ କରିଥିବା ଜଣାଯାଏ । ଏହା ପ୍ରମାଣ ସିଦ୍ଧ ହୋଇ ପାରି-ନାହିଁ । କବି ଖୋର୍ଦ୍ଧା ରାଜା ଦିବ୍ୟସିଂହ ଦେବଙ୍କର ପୃଷ୍ଠ ପୋଷକତା ଲାଭ କରି ଥିଲେ । ସେ ଦୀନକୃଷ୍ଣ ଓ ଉପେନ୍ଦ୍ର ଭଞ୍ଜଙ୍କର ସମସାମୟିକ ବୋଲି ଜଣାଯାଏ ।



# ସୂର୍ଯ୍ୟମଣି ଚମ୍ପାଉ ପଟ୍ଟନାୟକ

କବି ସୂର୍ଯ୍ୟମଣି ଚମ୍ପାଉ ପଟ୍ଟନାୟକ ଗଞ୍ଜାମ ଗୁମୁସର ଡେଙ୍ଗା-ପଦର ଗ୍ରାମରେ ୧୭୭୩ ଖ୍ରୀ:ଅ ରେ ଜନ୍ମ ଗ୍ରହଣ କରିଥିଲେ । ପିତାଙ୍କ ନାମ ବଳଭଦ୍ର ଚମ୍ପାଉ ପଟ୍ଟନାୟକ । "ମୋହର ଜନକ ନାମ ବଳ-

ଭଦ୍ର ଶ୍ରୀ କରଣ ପଟ୍ଟନାୟକ ପଦସିଦ୍ଧି"। ସେ ଗୁମୁସର ରାଜାଙ୍କ ପ୍ରଶାସନିକ ସହକାରୀ ଥିଲେ। ଜଣାଯାଏ ଯେ କେନ୍ଦୁଝରରୁ ଗୁମୁସର ରାଜା ରଘୁନାଥଭଞ୍ଜଙ୍କ ସହିତରେ ଗୁମୁସର ଆସିଥିଲେ। ତାଙ୍କ ପୁତ୍ର ଜଗନ୍ନାଥ ବକ୍‌ସି, ଶ୍ରୀକର ଭଞ୍ଜଙ୍କର ସେନାପତି ରୂପେ ୧୮୧୮ ଖ୍ରୀ:ଅ: ରେ ଆଟଗଡ଼ ନିକଟସ୍ଥ ଯୁଦ୍ଧରେ ଅଳସୁ ଓ କମଣର ଫେରି ଆଣିବା ପାଇଁ ଯୁଦ୍ଧ କରି ନୟାଗଡ଼ ରାଜାଙ୍କୁ ପରାସ୍ତ କରିଥିଲେ। ରତ୍ନ ପଟ୍ଟ-ନାୟକ ଓ ଚ୍ୟାଉ ପଟ୍ଟନାୟକ ବହୁକାଳ ରାଜସ୍ୱ ଓ ସାମରିକ କର୍ମଚାରୀ ରୂପେ ଗୁମୁସର ରାଜ୍ୟରେ କାର୍ଯ୍ୟ କରୁଥିଲେ। ତାଙ୍କର ଲେଖା ଭିତରୁ ଅଧ୍ୟାତ୍ମ ରାମାୟଣ ହେଉଛି ପ୍ରଧାନ।

ତାହା ସଂସ୍କୃତରୁ ଅନୁବାଦ ହୋଇଛି। ଭାଷା ସରଳ ଓ ମାର୍ଜିତ। ଆଗତ ଭବିଷ୍ୟତ କଥା ସେ ଲେଖିଛନ୍ତି—

ଘୋର କଳିଯୁଗଟି ହୁଅନ୍ତେ ପ୍ରପାତ,<br>
ନରମାନେ ହେବେତ ପୁଣ୍ୟ ବିବର୍ଜିତ।<br>
ସତ୍ୟ କଥାରୁ ସର୍ବେ ପରାଂ ମୁଖ ହେବେ,<br>
ଦୁରାଚାର କରଣ ଧନକୁ ସାଧିବେ।<br>
ପର ଅପବାଦରେ ସଦା ରତ ହେବେ,<br>
ପର ଦ୍ରବ୍ୟରେ ଅଭିଳାଷକୁ କରିବେ।<br>
ପର ସ୍ତ୍ରୀରେ ହେବେତ ଆସକ୍ତ ମାନସ,<br>
ପର ହିଂସା ପରପୂଣ ଯେ ହେବେ ପୁଂସ।<br>
ମାତାପିତା ଠାରେ ଦ୍ୱେଷକୁ ବହିବେ,<br>
ସ୍ତ୍ରୀଠାରେ ଦେବତା ବୁଦ୍ଧି କ କରିବେ।<br>
କାମାଶକ୍ତିରେ ହେବେ ତାଙ୍କର କିଙ୍କର,<br>
ଏ କଥାରେ ଭୟଯେ ଜାତ ହୁଏ ମୋର।

ବିପ୍ରମାନେ ଲୋଭ ମୋହ ଗ୍ରସ୍ତ ହେବେ,
ବେଦକୁ ବିକ କରି ଜୀବନ ପୋଡ଼ିବେ ।
ସ୍ତ୍ରୀମାନେ କୈଶୋରରେ ତ ଭ୍ରଷ୍ଟା ହେବେ,
ଅଜ୍ଞାନର ଭର୍ତ୍ତାର ଦ୍ରୋହକୁ କରିବେ ।
ଶ୍ୱଶୁରରେ ଦ୍ରୋହକାରିଣୀ ନାରୀ ହେବେ,
ଏ କଥାରେ ସନ୍ଦେହ ନାହିଁ ପ୍ରଭୁ ଲବେ ।

ସେ 'ଗୁମୁସର ଭଞ୍ଜ ବଂଶାବଳୀ' ନାମକ ଏକ ଐତିହାସିକ କାବ୍ୟ ରଚନା କରିଛନ୍ତି । କବି 'ଆଧ୍ୟାତ୍ମ ରାମାୟଣ' ଲେଖିଲା ସମୟରେ ସେଥିରେ ଲେଖିଛନ୍ତି 'ଏ ସରିକି ଟି ପାଞ୍ଚ ପଞ୍ଚାଶ ବୟସ, ଗଡ଼କଙ୍କ ମତରେ ହୋଇଗଲା ଶେଷ ।' ତାଙ୍କର ଓଡ଼ିଆ ଓ ସଂସ୍କୃତରେ ଜ୍ଞାନ ଥିବା ଜଣାଯାଏ । ମାତ୍ର କବି ସୁଲଭ ଅହଂକାର ତ୍ୟାଗ କରି ଲେଖିଛନ୍ତି—'ଜନମରୁ ମୋର ପୁରାଣ ଶୁଣା ନାହିଁ, ପଢ଼ିବା ଜ୍ଞାନ ମୋର ହେବ ଅବା କାହିଁ ।' ଜଣାଯାଏ ଯେ ସେ ୧୮୩୫ ଖ୍ରୀ:ଅ:ରେ ଇହଲୀଳା ସମ୍ବରଣ କରିଥିଲେ ।



## କେଶବ ଚ୍ୟାଉ ପଟ୍ଟନାୟକ

କେଶବ ପଟ୍ଟନାୟକ ଗଂଜାମ ଜିଲ୍ଲା ଛତ୍ରପୁର ତାଲୁକା ପାଲୁରୁ ନିକଟବର୍ତ୍ତୀ ମଧୁସୂଦନପୁର ଗ୍ରାମରେ ବଶିଷ୍ଟ କରଣ ଜାତିରେ ଊନବିଂଶ ଶତାବ୍ଦୀର ପଞ୍ଚଦଶକ ମଧ୍ୟରେ ଜନ୍ମ ଗ୍ରହଣ କରିଥିଲେ । ପିତାଙ୍କ ନାମ ରାମଚନ୍ଦ୍ର ଚ୍ୟାଉ ପଟ୍ଟନାୟକ ଓ ମାତାଙ୍କ ନାମ ଲକ୍ଷ୍ମୀ ଦେବୀ । ରାଜଦତ୍ତ ଉପାଧି ହେଉଛି ଚ୍ୟାଉ ପଟ୍ଟନାୟକ । ସାଧାରଣ-

ରେ ସେ କେଶବ ପଟ୍ଟନାୟକ ନାମରେ ପରିଚିତ । କବିଙ୍କ ଦ୍ଵାରା ଲିଖିତ ରାମାୟଣ ନାମ ହେଉଛି 'କେଶବ ରାମାୟଣ' । ଏହାର ଅନ୍ୟ ନାମ ମଧ୍ୟ ହେଉଛି ନୃତ୍ୟ ରାମାୟଣ । ଅନୁମିତ ହୁଏ ଏହା ୧୮୬୦ରେ ଶେଷ ହୋଇଥିବ ।

ତତ୍କାଳୀନ ପାଲରୁ ରଜା ଏହାକୁ ରାମଲୀଳା-ନାଟକ ରୂପେ ରାଜ ଦରବାରରେ ଅଭିନୀତ କରାଇଥିଲେ । ରାମାୟଣର ପୌରାଣିକ ବିଷୟବସ୍ତୁକୁ ସରଳ ଭାଷାରେ ଲିପିବଦ୍ଧ କରିବାରେ ନୈପୁଣ୍ୟ ଅର୍ଜନ କରିଛନ୍ତି ।



# କବିକଲ୍ପଭ ଭୁବନେଶ୍ଵର ମିଶ୍ର

କବି ଭୁବନେଶ୍ଵର ମିଶ୍ର ତା ୧୩-୬-୧୮୮୯ ଖ୍ରୀ: ଅ:ରେ ରଣପୁର ଶାମୁକା ସାହିରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କର ପିତାଙ୍କ ନାମ ବୈଦ୍ୟନାଥ ମିଶ୍ର । କବିଙ୍କର ଦୁଇ ଭଉଣୀ ଓ ତିନି ଭାଇଙ୍କ ମଧ୍ୟରୁ ଗଣେଶ୍ଵର ଜ୍ୟେଷ୍ଠ, ଭୁବନେଶ୍ଵର ମଧ୍ୟମ ଓ ମଧୁସୂଦନ କନିଷ୍ଠ । ଧରାକୋଟ ରାମଚନ୍ଦ୍ରପୁର ଶାସନ ନିବାସୀ ତାଙ୍କ ପିଉସା ଚନ୍ଦ୍ର ମିଶ୍ର ଅପୁତ୍ରିକ ଥିବା ଯୋଗୁଁ ତାଙ୍କୁ ୧୮୯୮ ଖ୍ରୀ:ଅ:ରେ ପୋଷ୍ୟପୁତ୍ର ରୂପେ ଗ୍ରହଣ କରିଥିଲେ । ତାଙ୍କ ବାଲ୍ୟ ଶିକ୍ଷା ରଣପୁର ଓ ରାମଚନ୍ଦ୍ରପୁରରେ ହୋଇଥିଲା । ୧୯୨୦ ଖ୍ରୀ:ଅ:ରେ ତାଙ୍କର ବ୍ରତୋପନୟନ ସମାପନ ହୋଇଥିଲା । ଏହି ସମୟରେ ପିତୃଭକ୍ତ ଭୁବନେଶ୍ଵର ନିଜ ବାପା ବାତ ରୋଗଗ୍ରସ୍ତ ଥିବା ଯୋଗୁଁ ବହୁ ସମୟ ଦେଖିବାକୁ ଯାଉଥିଲେ । ପିତା ମାତାଙ୍କର 'ବାର୍ଦ୍ଧକ୍ୟ ଅବସ୍ଥା ଯୋଗୁଁ ସେମାନଙ୍କର ସେବା

ସୁଶୃଷା ନିମିତ୍ତ ଶିକ୍ଷା ବିଭାଗର ସୁପରଭାଇଜର କାର୍ଯ୍ୟରୁ ଇସ୍ତଫା ଦେଇଥିଲେ । ପୁନର୍ବାର ସେ ଧବଳେକୋଟ ମଧ୍ୟ ଇଂରାଜୀ ବିଦ୍ୟାଳୟରେ ଶିକ୍ଷକରୂପେ ୧୯୨୧ରେ ଯୋଗ ଦେଇଥିଲେ । ୧୯୦୫ ଖ୍ରୀ:ଅ:ରେ ଆଠଗଡ ମଧୁସୂଦନପୁର ଶାସନ ନିବାସୀ ଗଣେଶ୍ୱର ରଥଙ୍କ ଭଉଣୀ ସାବିତ୍ରୀଙ୍କୁ ବାନ୍ଧି ବିବାହ କରିଥିଲେ । ଭୂ ସମ୍ପତ୍ତିବାନ ଚନ୍ଦ୍ରମିଶ୍ର ପୁଅକୁ ଧବଳକୋଟରୁ ପ୍ରାଥମିକ ଶିକ୍ଷା ଶେଷ ପରେ ବ୍ରହ୍ମପୁର ଖଲିକୋଟ କଲେଜିଏଟ୍ ଉଚ୍ଚ ଇଂରାଜୀ ବିଦ୍ୟାଳୟ ରେ ପଢ଼ାଇ୧୯୦୮ରେ S.S.L.S. ପାସ କରିବା ପରେ ଗୃହ ଜଞ୍ଜାଳରେ ଛନ୍ଦି ଦେଇଥିଲେ । ମେଟ୍ରିକ୍ ପାଶ୍ କରିବା ପରେ ଧବଳକୋଟ ରାଜା ମଦନମୋହନ ସିଂହଦେବ ୧୯୧୧ରେ ଏମ୍.ଇ: ସ୍କୁଲର ଶିକ୍ଷକ ରୂପେ ନିଯୁକ୍ତ ଦେଇ-ଥିଲେ । ଦୁଇବର୍ଷ ପରେ ରାଜାଙ୍କ ନିର୍ଦ୍ଦେଶକ୍ରମେ ୧୯୧୪ ଖ୍ରୀ:ଅ:ରେ ଶିକ୍ଷକ ତାଲିମ ପାଇବା ପାଇଁ ରାଜମହେନ୍ଦ୍ରୀ ଯାଇଥିଲେ । ତାଲିମ ପରେ ୧୯୧୫ ଖ୍ରୀ:ଅ:ରେ ପୁଣି ଶିକ୍ଷକ ରୂପେ ପୂର୍ବ ସ୍ଥାନରେ ରହିଲେ । ତା ୪-୧୦-୧୯୧୫ରେ ଶିକ୍ଷା ବିଭାଗର ଅଧିକାରୀ ରେନସ୍‌ଫୋର୍ଡ଼ ତାଙ୍କୁ ଶିକ୍ଷା ବିଭାଗର ସୁପରଭାଇଜର ରୂପେ ନିଯୁକ୍ତ ଦେଇଥିଲେ । ଏହା ପୂର୍ବରୁ ସେ ୧୯୧୭ରେ କବିସୂର୍ଯ୍ୟନଗର ଏମ୍.ଇ. ସ୍କୁଲରେ ଶିକ୍ଷକତା କରିଥିଲେ । ସୁପରଭାଇଜର ଭାବେ ସେ ପୁରୁଷୋତ୍ତମପୁର ଠାରେ ରହୁଥିଲେ ।

୧୯୨୧ ଖ୍ରୀ:ଅ:ରେ ଧବଳକୋଟ ରାଜା ମଦନମୋହନ ସିଂହ ଦେବଙ୍କ ଅନୁରୋଧକ୍ରମେ ଧବଳକୋଟ ଏମ୍ ଇ. ସ୍କୁଲରେ ପୁଣି ଶିକ୍ଷକ ରୂପେ ଯୋଗଦେଲେ । ୧୯୨୫ରେ ରାଜା ତାଙ୍କୁ 'କବି ବଲ୍ଲଭ' ଉପାଧି-ରେ ଭୂଷିତ କରିଥିଲେ । ଆହୁରି ମଧ୍ୟ 'ଉଭୟ ଭାଷା ପ୍ରବୀଣ' ନାମରେ ପରିଚିତ ହେଲେ ।

କାଳକ୍ରମେ ତାଙ୍କର ଶ୍ରବଣ ଶକ୍ତି ହ୍ରାସ ପାଇବା ଯୋଗୁଁ ଗୃହକଷ୍ଟରେ ଅସୁବିଧା ଭୋଗିବାକୁ ପଡ଼ୁଥିଲା । ଶ୍ୟାମସୁନ୍ଦର ପଦ୍ୟାଳଙ୍କାର, ବାସୁଦେବ ତର୍କାଳଙ୍କାର ତାଙ୍କର ସମସାମୟିକ ଥିଲେ । ଗଣେଶ୍ୱର କବିଚନ୍ଦ୍ର ତାଙ୍କର ଅତି ବିଶ୍ୱସ୍ତ ଥିଲେ । ୧୯୫୦ ଖ୍ରୀ:ଅ:ରେ ମଧୁପୁର ରାଜାଙ୍କର ଅନୁରୋଧକ୍ରମେ ରାଜକୁମାରଙ୍କର ଗୃହ ଶିକ୍ଷକରୂପେ ସସ୍ତ୍ରୀକ ମଧୁପୁରରେ ଅବସ୍ଥାନ କରୁଥିଲେ । ୧୯୬୦ରେ ସେଠାରେ ତାଙ୍କ ସ୍ତ୍ରୀ ପରଲୋକ ଗମନ କଲେ । ଗ୍ରନ୍ଥ ପ୍ରକାଶ କରି ତାଙ୍କର ଭୂସମ୍ପତ୍ତି ବନ୍ଧକୀ ହୋଇଗଲା । ପରିଶେଷରେ ତାଙ୍କର ଆର୍ଥିକ ପରିସ୍ଥିତି ଶୋଚମୀୟ ହୋଇ ଉଠିଲା । ଏପରି କି ଶେଷରେ ତାଙ୍କୁ ଶିରୋମଣି ପ୍ରେସ୍‌ରେ କାର୍ଯ୍ୟ କରିବାକୁ ପଡ଼ୁଥିଲା ।

ତା ୧୧-୮-୬୪ରେ ତାଙ୍କ ଜାମାତା ଶ୍ରୀ ନାରାୟଣ ମହାପାତ୍ରଙ୍କ ବାସ ଭବନରେ ତାଙ୍କର ଦେହାନ୍ତ ଘଟିଲା । ସେ ମେଧାବୀ, ସାଧୁ, କର୍ମଠ, ସଚ୍ଚୋଟ, ନିଷ୍ଠାପର, ନିରଳସ, ନିରାଡମ୍ବର, ଚରିତ୍ରବାନ୍ ଓ ପିତୃଭକ୍ତ ଥିଲେ ।

ଧରିତ୍ରୀକେତାର ଅମ୍ଳାନ ପ୍ରତିଭା ହୋଇଛନ୍ତି ଭୁବନେଶ୍ୱର ମିଶ୍ର କବି ବଲ୍ଲଭ । ତାଙ୍କର ଅମର ଲେଖନୀ ନିସୃତ ହୋଇଛି—ଧୀରାନନ୍ଦଧାରା (ମହାକାବ୍ୟ), ବିଶ୍ୱବନ୍ଧୁ (ପ୍ରବଚନ), ସୂର୍ଯ୍ୟ ସହସ୍ର ନାମ, ବ୍ରହ୍ମଚର୍ଯ୍ୟ ଶିକ୍ଷା, ଶିଶୁ ମୋହନ (ଶିଶୁଲେଖା), ପଦ୍ୟ ବ୍ୟାକରଣାଙ୍କୁର, ସର୍ବ ଶିଷ୍ୟ ସର୍ବସ୍ୱ ଶତକ, ମହିଳାମଣି, ମୁଖ ମଧୁ, ମହାକାଳୀ ଧାରା, ସାବିତ୍ରୀ, ହୃଦୟାର୍ଭିଧାନ (ପଦ୍ୟାଭିଧାନ), ମା' ଓଡ଼ିଶା ବିଳାପ (ଜାତୀୟତା), ପତି ବିଳାପ, ଆତ୍ମ ଆଖ୍ୟାନ, ସୂର୍ଯ୍ୟ ସହସ୍ର ନାମ, ଲକ୍ଷ୍ମୀ ସହସ୍ର ନାମ, ହରିହର ଚଉତିଶା, ସିଂହ ବଂଶାବଳୀ

(ରାଜ ପରିବାର କଥା) ଗ୍ରନ୍ଥମିଚ୍ଚ, ରାଜାଶ୍ରମ୍ଯାଣୀ, ଅଧମୋଦ୍ଧାରଣ ପଦ୍ୟାଳଙ୍କାର ଅମରକୋଷକୁ ଓଡ଼ିଆ ପଦ୍ୟାକାରରେ, ହୃଦୟାଭିଧାନ ଲେଖିଥିଲେ । ରଘୁବଂଶ ଓ କୁମାର ସମ୍ଭବକୁ ଅନୁବାଦ କରିଥିଲେ । ପ୍ରବୋଧ ଚନ୍ଦ୍ରୋଦୟ ନାଟକ ଲେଖିଥିଲେ । କବିସୂର୍ଯ୍ୟଙ୍କର ବହୁ ଲୁପ୍ତ ରଚନା ଉଦ୍ଧାର କରି 'କବିରବି ଗୀତ ଗଙ୍ଗାମ୍ବୁ' ନାମକ ଖଣ୍ଡିଏ ବହି ସଂକଳନ କରିଛନ୍ତି ।



## କୁପ୍ପଳି ନାରସୁ

କବି କୁପ୍ପଳି ନାରସୁ, କବିସୂର୍ଯ୍ୟଙ୍କର ସମସାମୟିକ କବି ଭାବେ ଧରାଗଲେ ମଧ୍ୟ ତାଙ୍କର ପରବର୍ତ୍ତୀ କବି । ତାଙ୍କ ଉପରେ ସେଥି ପାଇଁ ରୀତି ଯୁଗର ପ୍ରଭାବ ପଡ଼ିଥିଲା । ସେ ଗଞ୍ଜାମ ଜିଲ୍ଲା ବଡ଼ଖେମୁଣ୍ଡି ତାଲୁକା ନରେନ୍ଦ୍ରପୁରଠାରେ ଊନବିଂଶ ଶତାବ୍ଦୀର ଶେଷାର୍ଦ୍ଧରେ ଜନ୍ମଗ୍ରହଣ କରିଥିବା ଜଣାଯାଏ । ସେ ଜାତିରେ ତେଲୁଗୁ ଥିଲେ । ସେ ବଡ଼ଖେମୁଣ୍ଡି ରାଜା ଲକ୍ଷ୍ମୀ ନାରାୟଣଙ୍କ ସମସାମୟିକ ଥିଲେ ।

ସେ ଅନେକ ଗୁଡ଼ିଏ ତେଲୁଗୁ ଓ ଓଡ଼ିଆ ଭାଷା ମିଶ୍ରଣରେ ରାଧାକୃଷ୍ଣଙ୍କର ପ୍ରେମ, ବିରହ ସମ୍ବଳିତ ଶ୍ରେଷ୍ଠ ଶ୍ରେଷ୍ଠ ବହୁତ ଗୀତ ରଚନା କରିଛନ୍ତି । ସେଗୁଡ଼ିକୁ ଦାସେଇ ଜାତୀୟ ଲୋକମାନେ ଖଞ୍ଜଣି ବାଦ୍ୟ ସହ ସଙ୍ଗୀତ ଗାଇ ଭିକ୍ଷା ମାଗିଲା ବେଳେ ଏହା ସୁଲଳିତ କଣ୍ଠରେ ବୋଲିବାର ଶୁଣାଯାଏ । ଯଥା—

ଓଦୁ ଓଦୁ ଆଣ୍ଟେ ନଉ,
ମୋ ଗାଲେ ଚୁମ୍ବନ ଦେଉ ।

ଅର୍ଥ—ଓଦୁ-ନାହିଁ, ଓଦୁ-ନାହିଁ, ଆଣ୍ଟେ-କହିଲେ, ନଉ-ତାଙ୍କୁ ।

ସେ ଅନେକ ଭଜନ ଲେଖିଛନ୍ତି । ତାହା ଅତି ଲୋକପ୍ରିୟ ମନେ ହୁଏ । ତା' ମଧ୍ୟରୁ ଗୋଟିଏ—

ମନ ମୂଷାହୋ, ବସିଅଛୁ ଗଞ୍ଜାଇ ଖାଇ,
ଗାଡ଼ୁଆ ମୂଷାକୁ ବରଡ଼ ଜଗିଛୁ, ଏ କଥା ଭାବିଲୁ ନାହିଁ ।

—)o(—

# କୃଷ୍ଣଚରଣ ପଟ୍ଟନାୟକ

କବି କୃଷ୍ଣଚରଣ ପଟ୍ଟନାୟକ ପୂର୍ବତୋପୂର୍ବ ଋଷିକୁଲ୍ୟା ତଟବର୍ତ୍ତୀ ଧରାକୋଟ ଅଧିବାସୀ । ସେ ଉଚ୍ଚ କରଣ ଷଣ୍ଢୀୟ ବଂଶରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କର ପୂର୍ବ-ପୁରୁଷମାନେ ବକ୍ସି ଉପାଧିଧାରୀ ହୋଇ ଧରାକୋଟ ରାଜ୍ୟରେ ପ୍ରଶାସନିକ କ୍ଷେତ୍ରରେ ଉଚ୍ଚ ଆସନ ଅଳଂକୃତ କରିଥିଲେ । ତାଙ୍କର ରାମାୟଣ ଲେଖାରୁ ଜଣାଯାଏ ଯେ ତାଙ୍କର ପିତା ଅତ୍ୟନ୍ତ ପ୍ରତିପତ୍ତିଶାଳୀ ଓ ଧାର୍ମିକ ଥିଲେ । ସେ କୂପ, ବାପି, ତଡ଼ାଗ ଖୋଳାଇଥିଲେ । ବ୍ରାହ୍ମଣମାନଙ୍କୁ ବହୁ ଦାନ ଦେଇଥିଲେ ଓ ଯଜ୍ଞ କରାଇଥିଲେ । ହରିନାମ ସଂକୀର୍ତ୍ତନ ପାଇଁ ବ୍ୟବସ୍ଥା କରିଥିଲେ ।

ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷରୁ ଜଣାଯାଏ ଯେ କବି ୧୮୧୫ ଖ୍ରୀ:ଅ:ରେ ରାମାୟଣ ରଚନା କରିଥିଲେ । କୃଷ୍ଣ ସିଂହଙ୍କ

ସେ ସମସାମୟିକ ରାଜକର୍ମଚାରୀ ଥିଲେ ବୋଲି ଅନୁମାନ କରାଯାଏ । କୃଷ୍ଣ ସିଂହ ୧୭୩୯ ଖ୍ରୀ:ଅ:ରେ ଜନ୍ମ ଗ୍ରହଣ କରି ୧୭୮୧ ଖ୍ରୀ:ଅ: ଠାରୁ ୧୭୮୮ ଖ୍ରୀ.ଅ. ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । ଏଥିରୁ ଅନୁମାନ କରାଯାଏ ଯେ କବି ଅଷ୍ଟାଦଶ ଶତାବ୍ଦୀର ନବ-ଦଶକ ମଧ୍ୟରେ ଜନ୍ମ ଗ୍ରହଣ କରିଥିବେ । କବିଙ୍କର ରାମାୟଣର ପ୍ରଥମସଂସ୍କରଣର ମୁଖବନ୍ଧରୁ ଜଣାଯାଏ ଯେ ସେତେବେଳେ ସମୟରେ ରାଜସଭାରେ ସଂସ୍କୃତଜ୍ଞ ବ୍ରାହ୍ମଣ ପଣ୍ଡିତମାନଙ୍କର ବିଶେଷ ପ୍ରଭାବ ଥିଲା । ସେଥିପାଇଁ କବି କରଣ ବଂଶଜ ହେତୁ ଉପଯୁକ୍ତ ସମ୍ମାନ ନ ପାଇବା ଯୋଗୁଁ ସେ ଅପମାନିତ ବୋଧ କରି ନିଜେ ସଂସ୍କୃତରୁ ରାମାୟଣ ଓଡ଼ିଆରେ ଅନୁବାଦ କରି ରାଜାଙ୍କୁ ଭେଟି ଦେଇ ଶୁଣାଇ ଥିଲେ ।

କବିଙ୍କର ସଂସ୍କୃତ ଓ ଓଡ଼ିଆ ସାହିତ୍ୟରେ ପାଣ୍ଡିତ୍ୟ ଥିଲା । ଅନୁମିତ ହୁଏ ଯେ ସେ ରାଜକାର୍ଯ୍ୟରୁ ଅବସର ନେଇ ବାଲ୍ମୀକି କୃତ ସଂସ୍କୃତ ରାମାୟଣକୁ ଓଡ଼ିଆ ଭାଷାରେ ଅନୁବାଦ କରି ରାମାୟଣ ରଚନା କରିଥିଲେ । ତାହା ବଳରାମ ଦାସଙ୍କ ରାମାୟଣ ପରି ଭାଷା ସରଳ, ସରସ, ମଧୁର, ବିଶୁଦ୍ଧ ଓ ପ୍ରାଞ୍ଜଳ । ସେଥିପାଇଁ ତାହା ସର୍ବସାଧାରଣରେ ଆଦୃତ ।

ତାଙ୍କର ଭାଗବତ ପ୍ରକାଶ ଅସମ୍ପୂର୍ଣ୍ଣ ରହିଛି । କେବଳ ଦଶମସ୍କନ୍ଧ ପର୍ଯ୍ୟନ୍ତ ୧୯୩୮ ଖ୍ରୀ.ଅ.ରେ ପ୍ରକାଶ ପାଇଛି । ଅନ୍ୟାନ୍ୟ ଅନୁବାଦ ଲେଖା ହେଉଛି—କଳି ପୁରାଣ, ବାମନ ପୁରାଣ । ଏହି ୨ଟିର ପାଣ୍ଡୁଲିପି ଗୃହଦାହରେ ପୋଡ଼ି ଯାଇଛି । ତାଙ୍କର ରାମାୟଣର ଶେଷ-ରେ ସେ ପାଣ୍ଡିତ୍ୟ ସୁଲଭ ଦୈନ୍ୟ ପ୍ରକାଶ କରି କହିଛନ୍ତି ଯେ ମୁଁ ସଂସାର ବନ୍ଧନରେ ପଡ଼ି ଧର୍ମ କରିନାହିଁ, ମୁଁ ଅନୁତପ୍ତ । ଭଗବାନ

ମୋତେ ସଂସାର ସାଗର ପାରକରି ଉଦ୍ଧାର କରନ୍ତୁ । କବି ଓଡ଼ିଆ ଭାଷା ଭଣ୍ଡାରର ଏକ ସମୁଜ୍ଜ୍ୱଳ ରତ୍ନ ।



# ନାରୀକବି କଣଙ୍କରାୟ ରାଣୀ

ଓଡ଼ିଶାରେ ଅଷ୍ଟାଦଶ ଓ ଊନବିଂଶ ଶତାବ୍ଦୀବେଳକୁ ଗଞ୍ଜାମ ଜିଲ୍ଲାର ବହୁ କବି ଜନ୍ମ ଗ୍ରହଣ କରି ଉତ୍କଳର ସାରସ୍ୱତ ପୂଜାର ଯେ ଅଗ୍ରଣୀ ଥିଲେ, ତାହା କେହି ଅସ୍ୱୀକାର କରିପାରିବେ ନାହିଁ । ତେଲୁଗୁ ଭାଷା ସାମ୍ରାଜ୍ୟର ଆକ୍ରମଣ ଫଳରେ ଓଡ଼ିଆ ଭାଷା ଲୋପ ପାଇବାକୁ ବସିଥିଲା । ସେହି ସମୟରେ ଏହି ଯୋଗଜନ୍ମା କବିମାନେ ଜନ୍ମଗ୍ରହଣ କରି ଉତ୍କଳ ମାତାର ମୁଖରେ ହସ ଫୁଟାଇ ଥିଲେ ।

ମଧ୍ୟଯୁଗରେ ଓଡ଼ିଆ ସାହିତ୍ୟ ମୁଖ୍ୟତଃ ରାଜ ଦରବାରର ପୃଷ୍ଠପୋଷକତା ଲାଭ କରୁଥିଲା । ଓଡ଼ିଆ ଦେଶରେ ଯେଉଁ ରାଜା-ମାନେ ନିଜେ ସାହିତ୍ୟ ସୃଷ୍ଟି କରି କମ୍ବା କବିମାନଙ୍କର ପୃଷ୍ଠପୋଷକତା କରି ଅକ୍ଷୟ ସୁନାମ ରଖି ଯାଇଛନ୍ତି, ସେମାନଙ୍କ ମଧ୍ୟରୁ ଅଧିକାଂଶ ଗଞ୍ଜାମ ଜିଲ୍ଲା ଓ ତାହାର ପାର୍ଶ୍ୱବର୍ତ୍ତୀ ଅଞ୍ଚଳର ବୋଲି ପ୍ରମାଣିତ ହୋଇଅଛି । ଅନେକ ନାରୀକବିଙ୍କ ନାମ ଇତିହାସର କୃଷ୍ଣ ଗର୍ଭରେ ରହିଛି । ଆଉ କେତେଜଣ ନାରୀକବିଙ୍କ ଲେଖନୀ ଗୁଞ୍ଜନାରେ ଓଡ଼ିଆ ସାହିତ୍ୟଭଣ୍ଡାର ସମୃଦ୍ଧ । ସେମାନଙ୍କ ମଧ୍ୟରୁ କଣଙ୍କରାୟରାଣୀ ଅନ୍ୟତମ । ସେ ଜରଡା ରାଜ୍ୟର ଶାସକ ବାସୁଦେବ ଆଠରାଜଙ୍କ ଦୁହିତା ଓ ବୁଡାରସିଙ୍ଗି ରାଜ୍ୟର ଗଙ୍ଗବଂଶୀୟ ରାଜା ରାମଚନ୍ଦ୍ର ଦେବଙ୍କ ପୁତ୍ର

ଗୌରଚନ୍ଦ୍ର ନଶଙ୍କଗସ୍ନଙ୍କ ପାଟରାଣୀ ଥିଲେ । ସେ ୧୭୮୮ ଖ୍ରୀ.ଅ.ରେ ଗୁମୁସର ରାଜ ସିଂହାସନ ଆରୋହଣ କରିବା କଥା କେହି କେହି ଲେଖିଛନ୍ତି । ମାତ୍ର ଇତିହାସ ଅନୁସନ୍ଧାନରୁ ଜଣାଯାଏ ଯେ ଶ୍ରୀକର ଭଞ୍ଜଙ୍କ ପୁତ୍ର ଧନଞ୍ଜୟ ଭଞ୍ଜ ୧୮୧୪ରେ ବନ୍ଦୀ ହେବା ପରେ ୧୮୧୫ ଠାରୁ ୧୮୧୮ ପର୍ଯ୍ୟନ୍ତ ଗୁମୁସରରେ ଅରାଜକତା ଦେଖା ଯାଇଥିଲା । ସେହି ସମୟରେ କବିଙ୍କୁ ୧୫ ବର୍ଷ ବୟସରେ ପୁରୁଷର ଛଦ୍ମ ବେଶରେ ଧନଞ୍ଜୟ ଭଞ୍ଜଙ୍କ ପୁତ୍ର ବଳଭଦ୍ର ଭଞ୍ଜ ନାମ ଦେଇ ଜଗନ୍ନାଥ ଭଞ୍ଜ ଓ ଦୋହର ବକ୍ଷୋୟୀ ୧୮୧୫ ଠାରୁ ୧୮୧୮ ଖ୍ରୀ:ଅ: ପର୍ଯ୍ୟନ୍ତ ଜିଲ୍ଲାପାଳ ବ୍ରୋନଙ୍କ ସମ୍ମତିକ୍ରମେ ଗୁମୁସର ସିଂହାସନରେ ବସାଇଥିଲେ । ସେଥିରୁ ଅନୁମାନ ହୁଏ ଯେ କବିଙ୍କର ଜନ୍ମ ୧୮୦୦ ଖ୍ରୀ:ଅ:ରେ ହୋଇଥିଲା ।

ଗୁମୁସର ଇତିହାସରୁ ଜଣାଯାଏ ଯେ ଶ୍ରୀକର ଭଞ୍ଜ ୧୭୮୮ରେ ପିତା ଲକ୍ଷ୍ମଣଭଞ୍ଜଙ୍କ ମୃତ୍ୟୁପରେ ଗୁମୁସର ରାଜଗାଦି ପାଇଲେ । ମାତ୍ର କବି ୧୮୮୮ରେ ଶ୍ରୀକର ଭଞ୍ଜଙ୍କର ସୁଯୋଗ୍ୟା କନ୍ୟା ରୂପେ ଗୁମୁସର ସିଂହାସନ ପାଇବା ଇତିହାସରୁ ପ୍ରମାଣିତ ହୁଏ ନାହିଁ ।

ଶ୍ରୀଧର ଶତପଥୀଙ୍କ ମତରେ କବି ଶ୍ରୀକର ଭଞ୍ଜଙ୍କ ଭଉଣୀ ବୋଲି ଦାବୀ କରିଛନ୍ତି । ତାହାହେଲେ ସେ କପରି ଜରଡ଼ା ରାଜା ବାସୁଦେବ ଆଠରାଜଙ୍କର ଦୁହିତା ବୋଲି ଇତିହାସ ସ୍ଥିର କରିଛି ?

ପିତା ଲକ୍ଷ୍ମଣ ଭଞ୍ଜଙ୍କ ମୃତ୍ୟୁପରେ ୧୭୮୮ ଖ୍ରୀ.ଅ.ରେ ଶ୍ରୀକର ଭଞ୍ଜ ଗୁମୁସର ରାଜ୍ୟ ସିଂହାସନ ଆରୋହଣ କଲେ । ନିଜ ପୁତ୍ର ଧନଞ୍ଜୟଭଞ୍ଜଙ୍କୁ ରାଜ୍ୟଭାର ଅର୍ପଣ କରି ୧୭୯୫ଖ୍ରୀ:ଅ:ରେ ତୀର୍ଥାଟନକୁ

ଚଲେ ଓ ତୀର୍ଥରୁ ନିଜ ରାଜ୍ୟକୁ ଫେରିଲେ । ସେ ତୀର୍ଥରୁ ଫେରି ଦେଖିଲେ ଯେ ଧନଞ୍ଜୟଙ୍କର ଶାସନରେ ପ୍ରଜାମାନେ ଅତିଷ୍ଠ ହୋଇ ରହିଛନ୍ତି । ଇଂରେଜମାନଙ୍କୁ ମଧ୍ୟ ପେସ୍‌କସ୍‌ ଦେଇ ନାହାନ୍ତି । ବୈଦ୍ୟନାଥ ବେବର୍ତ୍ତା ଆତ୍ମଘାତ କରିଛନ୍ତି । ଧନଞ୍ଜୟ ଭଞ୍ଜଙ୍କର ଅନ୍ୟାୟ ଅତ୍ୟାଚାରର କାହାଣୀ ଶୁଣି ପିତା ଶ୍ରୀକରଭଞ୍ଜ ବ୍ୟଥିତ ହୋଇ ପଡିଲେ ଓ ପୁତ୍ରକୁ ନାନା ପ୍ରକାର ଭର୍ତ୍ସନା କରିବା ଯୋଗୁଁ ସେ ଗୁମୁସର ପରିତ୍ୟାଗ କରି ବାଣପୁର ପଳାଇବା ପଥରେ ନୟାଗଡ଼ଠାରେ ରାଜାଙ୍କର ଆତିଥ୍ୟରେ ମୁଗ୍ଧ ହୋଇ କିଛିଦିନ ରହଣି କଲେ ।

ଏହି ସମୟରେ ଧନଞ୍ଜୟ ଭଞ୍ଜ ନୟାଗଡ଼ ରାଜା ମାନଧାତାଙ୍କ କନ୍ୟାଙ୍କର ପାଣିଗ୍ରହଣ କରିବା ପାଇଁ ପ୍ରଲୁବ୍ଧ ହେଲେ । ଏହା ବଦଳରେ ଧନଞ୍ଜୟ ଭଞ୍ଜ ଅଳସୁ ଓ କମଳରଚଡ଼ ଦେବେ ଓ ସେମାନଙ୍କର ଜ୍ୟେଷ୍ଠ ପୁତ୍ର ରାଜା ହେବାପାଇଁ ସର୍ତ୍ତ ରଖିଲେ । ବାଣପୁରରୁ ଫେରିଲାବେଳେ ସେ ନୟାଗଡ଼ ରାଜଜେମାଙ୍କର ପାଣିଗ୍ରହଣ ନ କରି ଖଳିକୋଟ ବାଟେ ଗୁମୁସର ଫେରିଲେ । ଏହା ଫଳରେ ନୟାଗଡ଼ ରାଜା ଉକ୍ତ ଦୁଇଟି ଗ୍ରାମକୁ ଅଧିକାର କଲେ । ମାତ୍ର ଶ୍ରୀକର ଭଞ୍ଜ ଅଳସୁ ଓ କମଳରଚଡ଼ ଫେରାଇବା ପାଇଁ ନୟାଗଡ଼ ରାଜାଙ୍କୁ ଅନୁରୋଧ କଲେ । ନୟାଗଡ଼ରାଜା କର୍ଣ୍ଣପାତ ନ କରିବା ଯୋଗୁଁ ଶ୍ରୀକର ଭଞ୍ଜ ଜଗନ୍ନାଥପ୍ରସାଦ ନିକଟସ୍ଥ 'ଥାଟେଇ'ଠାରେ ଛାଉଣି ପକାଇ ଗୋଟିଏ ରାତି ରହିଲେ ।

ଏହି ସେନାବାହିନୀର ସେନାପତି ଥିଲେ କବିସୂର୍ଯ୍ୟମନ୍ତ୍ରୀ ଚ୍ୟାଉପଟ୍ଟନାୟକଙ୍କ ପୁତ୍ର ଜଗନ୍ନାଥ ବକ୍ସି ।ଯୁଦ୍ଧରେ ନୟାଗଡ଼ ରାଜା ପରାସ୍ତ ହୋଇ ଉକ୍ତ ଗ୍ରାମଦ୍ୱୟ ଫେରାଇ ଦେଲେ ।

ଏହି ଯୁଦ୍ଧରେ ବହୁ ସଂଖ୍ୟକ କନ୍ଧ ସୈନ୍ୟ ଯୋଗ ଦେଇ ତାଙ୍କର ଯୁଦ୍ଧ କୌଶଳ ଓ ବୀରତ୍ୱର ପରାକାଷ୍ଠା ଦେଖାଇ ଥିଲେ । କମ୍ବଦନ୍ତୀ କହେ—

'ଛନ୍ଦ ତରକରେ ଆମ୍ଭେ ତାଙ୍କୁ ବାରୁ ନ ପାରିବୁକେବେ ଜଣି,
ଅନ୍ଧ ଲୋକ ପରି ଗୃହଁ ରହିଥାଉ କନ୍ଧ ଦେଲେ ମୁଣ୍ଡ ହାଣି ।'

ବହୁ ଦିନରୁ ପେସକସ୍ ବାକି ପଡ଼ିବାରୁ ଇଂରେଜମାନେ ଶ୍ରୀକରଭଞ୍ଜଙ୍କୁ ତାଗିଦ୍ କଲେ । ସେ ଉତ୍ତର ଦେଲେ ଯେ 'ଆମେ ବ୍ରୋନ୍ ସାହେବଙ୍କୁ ଜଣାଇ ପୁତ୍ର ଧନଞ୍ଜୟ ଭଞ୍ଜଙ୍କୁ ରାଜ୍ୟଭାର ଅର୍ପଣ କରି ତୀର୍ଥ କରିବାକୁ ଗଲୁ । ଆମ ଉପରେ ବାକି ଉଠିଥିବା ପେସ୍-କସ୍ ବୈଦ୍ୟନାଥ ବେବର୍ତ୍ତା ବାନ୍ଧିଥିବେ । ଆମ୍ଭେ ଦେବାକୁ ସମ୍ବନ୍ଧ ନାହିଁ । ଏହା ଶୁଣି କର୍ଣ୍ଣେଲ ମରଲେ ୧୮୦୧ରେ ଶ୍ରୀକରଭଞ୍ଜଙ୍କ ସହ ଯୁଦ୍ଧ କରିବା ପାଇଁ ପ୍ରସ୍ତୁତ ହେଲେ । ଇଂରେଜମାନଙ୍କର ଗୃହ ବିବାଦକୁ ଉସୁକେଇଲେ । ତାଙ୍କ ପୁତ୍ର ଧନଞ୍ଜୟ ଭଞ୍ଜ ବାଣପୁରଠାରୁ ଆସି ପିତାଙ୍କ ବିରୁଦ୍ଧରେ ଇଂରେଜଙ୍କ ସହଯୋଗ କଲେ । ଇଂରେଜ ସୈନ୍ୟମାନେ କୁଲଡ଼ ଅଭିମୁଖେ ଯୁଦ୍ଧ ପାଇଁ ଯାଇ କୁଲଡ଼ ହସ୍ତଗତ କଲେ । ଏହା ଦେଖି ଶ୍ରୀକର ଭଞ୍ଜ ନିଜ ପରିବାର ସହ ଦୁର୍ଗାପ୍ରସାଦ ପଳାୟନ କଲେ । ସେଠାରେ ଭୟଙ୍କର ଯୁଦ୍ଧ ହେଲା । କୁଲଡଠାରେ ବିଗୃରଣା କରି ପାଲସ୍ ସୂତ୍ରରେ ବାପା ଓ ପୁଅ ମଧ୍ୟରେ ଗୁମୁସରକୁ ଦୁଇ ଭାଗ କରି ବାଣ୍ଟି ଦିଆଗଲା ।

ଧନଂଜୟ ଭଞ୍ଜଙ୍କର କପଟ ଆଚରଣ ଯୋଗୁଁ ରାଜା ଶ୍ରୀକର ଭଞ୍ଜ ଗାଦିଚ୍ୟୁତ ପରେ ରାଜ୍ୟ ତ୍ୟାଗ କରି ପୁନର୍ବାର ତୀର୍ଥଯାତ୍ରା କଲେ । ୧୮୦୧ରୁ ୧୮୧୪ ପର୍ଯ୍ୟନ୍ତ ଧନଞ୍ଜୟ ରାଜା ହେଲେ । ୧୮୧୪ ଖ୍ରୀ:ଅ:ରେ ଗୋଟିଏ ହତ୍ୟା ମୋକଦ୍ଦମାରେ ଧନଂଜୟଙ୍କୁ ଅଭିଯୁକ୍ତ

କରି ବନ୍ଦୀ କରି ଗଞ୍ଜାମ ଜେଲକୁ ନିଆଗଲା । ଶ୍ରୀକରଭଂଜ ୧୮୧୪ରେ ତୀର୍ଥାଟନରୁ ଫେରି ଶୁଣିଲେ ଯେ ତାଙ୍କ ପୁତ୍ର ନଜରବନ୍ଦୀ ହୋଇ ଅଛନ୍ତି । ଶ୍ରୀକରଭଞ୍ଜଙ୍କ ପୁତ୍ରର ମୁକ୍ତିପାଇଁ ପ୍ରାର୍ଥନା ଇଂରେଜମାନେ ଶୁଣିଲେ ନାହିଁ ।ବରଂ ଗୁମୁସରରେ ବିଦ୍ରୋହର ଆଶଙ୍କା ଦେଖି ତାଙ୍କୁ ମଧ୍ୟ ବନ୍ଦୀ କଲେ ।

୧୮୧୫ରେ ଗଞ୍ଜାରେ ମହାମାରୀ ଆରମ୍ଭ ହେଲା । ଇଂରେଜ-ମାନେ ବ୍ରହ୍ମପୁରକୁ ତାଙ୍କର ଅଫିସଗୁଡ଼ିକ ସ୍ଥାନାନ୍ତରିତ କରିଦେଲେ । ସେହି ସମୟରେ ଶ୍ରୀକରଭଞ୍ଜ ଓ ଧନଂଜୟ ଭଞ୍ଜଙ୍କୁ ଇଂରେଜମାନେ ପୃଥକ୍ ଜେଲରେ ବ୍ରହ୍ମପୁରରେ ରଖିଥିଲେ ।

୧୮୧୫ ଖ୍ରୀ.ଅ. ଠାରୁ ୧୮୧୮ ଖ୍ରୀ:ଅ: ପର୍ଯ୍ୟନ୍ତ ରାଜ୍ୟରେ ଅରାଜକତା ଦେଖାଦେଲା । ରାଜ୍ୟରେ କମଲ ଲୋଚନ ପାତ୍ର, ମୁନିଆ ସିଂହ, ବାହୁ ବଳେନ୍ଦ୍ର ପ୍ରଭୃତି ବିଦ୍ରୋହ କଲେ । ରାଜ୍ୟରେ ଶାନ୍ତି ରହିଲା ନାହିଁ । ଇଂରେଜମାନେ ପ୍ରମାଦ ଗଣିଲେ । ଶ୍ରୀକର ଭଞ୍ଜ ଅରାଜକତା କଥା ଶୁଣି ବଡ ବ୍ୟଥିତ ହୋଇ ପଡ଼ିଲେ । ସେ କୌଶଳ କ୍ରମେ ତିନବର୍ଷ ପରେ ଲଞ୍ଜିପଲ୍ଲୀରୁ ନଜରବନ୍ଦୀରୁ ଖସି ପଳାଇ ବ୍ରହ୍ମପୁର ନିକଟସ୍ଥ କେରଣ୍ଡିମାଳରେ ଆତ୍ମଗୋପନ କରି ରହିଲେ । ସେତେବେଳେ ମଧ୍ୟ ମହୁରୀରେ ବିଦ୍ରୋହ ଚାଲିଥାଏ । ଶ୍ରୀକର ଭଞ୍ଜ ମହୁରୀ ବିପ୍ଳବ ନେତା ହରିସିଂଙ୍କ ସାହାର୍ଯ୍ୟକୁ ଚରିଚୟ ଦେଇ ସେଠାରେ ଅବସ୍ଥାପନ କରିଥିଲେ ।

ଗୁମୁସର ବିଦ୍ରୋହୀମାନେ ଖବର ପାଇ ରାଜାଙ୍କୁ ଅଶ୍ବରେ ବସାଇ ଗୁମୁସରର କୁପାଟିକୁ ନେଇ ଆସିଲେ । ଏହି ଘଟଣା ଗୁମୁ-ସରରେ ଚହଳ ସୃଷ୍ଟି କରିଦେଲା ।

ଗଂଜାମ ଜିଲ୍ଲାପାଳ ବ୍ରୋନ୍ ରାଜ୍ୟର ଶାନ୍ତି ପାଇଁ ଚେଷ୍ଟା କଲେ । ଏହି ସମୟରେ ଜଗନ୍ନାଥ ଭଞ୍ଜ, ଦୋହରା ବିଷୋଇ ପ୍ରମୁଖ ମାରମାନେ ଧନଞ୍ଜୟ ଭଞ୍ଜଙ୍କ ପୁତ୍ର ବଳଭଦ୍ର ଭଞ୍ଜଙ୍କୁ ରାଜା କଲେ ରାଜ୍ୟରେ ଶାନ୍ତି ବିରାଜମାନ ହେବ ବୋଲି ଜିଲ୍ଲାପାଳଙ୍କୁ ପ୍ରସ୍ତାବ ଦେବାରୁ ସେ ସମ୍ମତି ଦେଲେ । କିନ୍ତୁ ସେତେବେଳକୁ ବଳଭଦ୍ର ଭଞ୍ଜ ଜୀବିତ ନଥିଲେ । ଜଣେ ୧୫ ବର୍ଷର ବାଳକାକୁ ଯୁବରାଜ ବଳଭଦ୍ର ଭଞ୍ଜଙ୍କ ବେଶରେ ସଜାଇ ତାଙ୍କର ଅନୁମତିକ୍ରମେ ତିନିବର୍ଷ କାଳ ରାଜା ଭାବରେ ଚଳାଇ ନେଲେ । ଶ୍ରୀକର ଭଞ୍ଜ ତାଙ୍କର ବିଶ୍ୱସ୍ତ ବିଷୋଇ ଲକ୍ଷ୍ମଣ ଠାରୁ ଶୁଣି ଛଦ୍ମବେଶିନୀଙ୍କ ରହସ୍ୟ ଉଦ୍ଘାଟନ କଲେ । ଜଗନ୍ନାଥ ଭଞ୍ଜଙ୍କୁ କଠିନ ଶାସ୍ତି ଦେଇ ବନ୍ଦୀ କଲେ । ଦୋହରା ବିଷୋଇଙ୍କୁ ବହୁ ସଶସ୍ତ୍ର ସୈନ୍ୟ ପଠାଇ ମଧ୍ୟ ବନ୍ଦୀ କରିବା ଅସମ୍ଭବ ହେଲା । ସେ ଘାଟିଠାରେ ଶ୍ରୀକର ଭଞ୍ଜଙ୍କୁ ଦୁଇଥର ପରାସ୍ତ କରିଥିଲେ । ଜିଲ୍ଲାପାଳ ଟ୍ରାଭେରସ୍ ପରିଶେଷରେ ଶ୍ରୀକର ଭଞ୍ଜଙ୍କୁ ୧୮୧୯ ଖ୍ରୀ:ଅ:ରେ ପୁଣି ରାଜା କଲେ । ସେ ୧୮୩୦ ଖ୍ରୀ:ଅ: ପର୍ଯ୍ୟନ୍ତ ରାଜତ୍ୱ କଲେ ।

ଛଦ୍ମବେଶୀ ବଳଭଦ୍ର ଭଞ୍ଜ ରାଜା ହୋଇଛନ୍ତି ବୋଧହୁଏ ନିଶଙ୍କରାୟ ରାଣୀ । ସେ 'ପଦ୍ମାବତୀ ଅଭିଳାଷ' ନାମରେ ମଧୁମାଳତୀଙ୍କ ଚରିତକୁ ନେଇ ୩୮ ଛାନ୍ଦରେ ଭଞ୍ଜୀୟ ଶୈଳୀରେ କାବ୍ୟଟି ରଚନା କରିଛନ୍ତି । ଏହାର ଭାଷା ସରଳ, ବର୍ଣ୍ଣନା ନିରାଡମ୍ବର, ସମୁଚିତ ଅଳଙ୍କାର ବିନ୍ୟାସରେ ଚୁଷ୍ଟିମନ୍ତ । ଏହା କବିଙ୍କର ପ୍ରତିଭାର ପରିଚୟ ଦିଏ ।

# ନାରୀକବି ନରେନ୍ଦ୍ର ଯୁବତୀ

ଆଧୁନିକ ଓଡ଼ିଶା ପୂର୍ବେ କଳିଙ୍ଗ, କୋଙ୍ଗଦ, ଉତ୍କଳ, ଓଡ୍ର ଓ କୋଶଳ ନାମରେ ପରିଚିତ ଥିଲା । ଦକ୍ଷିଣାଞ୍ଚଳ ଗଞ୍ଜାମ ସମେତ ଭାଗକୁ କଳିଙ୍ଗ କୁହାଯାଉଥିଲା । କୋଙ୍ଗଦ ଏହାର ଗୋଟିଏ ସମୃଦ୍ଧ ବିଭବଶାଳୀ ରାଜ୍ୟ । କଳିଙ୍ଗର ରାଜଧାନୀ ଥିଲା ମୁଖଲିଙ୍ଗମ୍ । ଗଞ୍ଜାମର ରୁମୁସର ମାଳ ଅଞ୍ଚଳକୁ ଖିଞ୍ଜାଲି, ଚିକିଟି ଅଞ୍ଚଳକୁ ଶ୍ୱେତକ, ଧରା-କୋଟ ଓ ସୋରଡ଼ା ଅଞ୍ଚଳକୁ ଖିଡସିଙ୍ଗି, ଭଞ୍ଜନଗର ଅଞ୍ଚଳକୁ କୁରୁମ ନାମରେ ନାମିତ କରାଯାଇ ଥିଲା ।

ସାମନ୍ତବାଦୀ ରାଜାମାନେ ଗଂଜାମରେ ନିଜ ବଂଶର ନିଶାଣ ରୂପେ ରାଜବଂଶୀୟ ପଦବୀ ଗ୍ରହଣ କରୁଥିଲେ । ଯଥା—ଗଜପତି, ଭଞ୍ଜ, ମର୍ଦ୍ଦରାଜ, ନରେନ୍ଦ୍ର, ସିଂହଦେବ, ଜଗଦେବ, ହରିଚନ୍ଦନ ଇତ୍ୟାଦି । ନରେନ୍ଦ୍ର ପଦବୀ ହେଉଛି ମହୁରୀ ରାଜ ବଂଶର । ଇତିହାସରୁ ଜଣାଯାଏ ଯେ, ଚିକିଟି ରାଜା କୃଷ୍ଣଚନ୍ଦ୍ର ରାଜେନ୍ଦ୍ରଙ୍କର ବିଦୁଷୀ ଭଗ୍ନୀ ରାଣୀ କୃଷ୍ଣପ୍ରିୟା ମହାଦେବୀ ୧୭୮୭ ଖ୍ରୀ:ଅ:ରେ ଇଂରେଜମାନଙ୍କୁ ଅପିଲ କରି ମହୁରୀ ରାଣୀ ଭାବେ ସନନ୍ଦ ଲାଭ କରିଥିଲେ । ଏଥିରୁ ଜଣାଯାଏ ଯେ କବି ନରେନ୍ଦ୍ର ଯୁବତୀ ହେଉଛନ୍ତି ମହୁରୀ ରାଜବଂଶର ରାଣୀ କୃଷ୍ଣପ୍ରିୟା ମହାଦେବୀ । କବିସୂର୍ଯ୍ୟ ମହୁରୀର ମେନେଜର (୧୮୨୧—୧୮୩୦) ଥିଲା ସମୟରେ ଗୌରୀ ନାମ୍ନୀ ଜଣେ ସାମନ୍ତ କନ୍ୟା ତାଙ୍କ ପ୍ରତିଭାର ପୂଜାରଣୀ ଥିଲେ । ମାତ୍ର ସେ କବି ନଥିଲେ ।

ଏଥିରୁ ଅନୁମିତ ହୁଏ ଯେ ନରେନ୍ଦ୍ର ଯୁବଖ (ରାଣୀ କୃଷ୍ଣପ୍ରିୟା ନରେନ୍ଦ୍ର) ଅଷ୍ଟାଦଶ ଶତାବ୍ଦୀର ପଞ୍ଚଦଶକ ମଧ୍ୟରେ ଜନ୍ମଗ୍ରହଣ କରିଥିବେ । ନରେନ୍ଦ୍ର ଯୁବଖଙ୍କ ପରିଚୟ ଏ ପର୍ଯ୍ୟନ୍ତ ତମସାଚ୍ଛନ୍ନ ପରିସ୍ଥିତିରେ ରହିଥିବା। ଯୋଗୁଁ ପ୍ରମାଣଯୋଗ୍ୟ ପରିଚୟ ସ୍ଥିର ହୋଇ ପାରିନାହିଁ ।

ସାମ୍ରାଜ୍ୟବାଦୀ ପ୍ରତିଶୋଧ ପରାୟଣ ଇଂରେଜୀ ଜାତି ବାଣିଜ୍ୟ କରିବାକୁ ଆସି ଆମ ଦେଶକୁ ଅଧିକାର କଲେ । କୂଟନୈତିକ ଅନୁପ୍ରବେଶ ଦ୍ୱାରା ଭକ୍ତି ବିବାଦର ହଳାହଳ, ନିମକହାରାମ ଦେଶଦ୍ରୋହର ବୀଜ ବପନ କଲେ । ବେଉ ଉପରେ କୋରଡ଼ା ମାଡ଼ ପରି କୁଟୀର ଶିଳ୍ପ ଧ୍ୱଂସ କଲେ ଓ ଲବଣ ଉପରେ କର ଏବଂ ବନ୍ଦୋବସ୍ତ କରି ଖଜଣା ବଢାଇଲେ । ସେନାମାନଙ୍କର ନିଷ୍କର ଜମି ଛଡାଇ ନେଲେ । ନିଜର ସ୍ୱାର୍ଥ ପାଇଁ ଆତତାୟୀଙ୍କ ପରି ନିର୍ମମ ଅତ୍ୟାଚାର ଓ ଅନ୍ୟାୟ କଲେ । ଦୁର୍ଦ୍ଧର୍ଷ ଓଡିଆ ଜାତିର ମାଟିକୁ ଅନ୍ୟ ପ୍ରଦେଶରେ ଖଣ୍ଡ ଖଣ୍ଡ କରି ମିଶାଇ ଦେଲେ । ନଅଙ୍କ ଦୁର୍ଭିକ୍ଷରେ ଲକ୍ଷ ଲକ୍ଷ ଲୋକଙ୍କୁ ମରଣ ମୁଖକୁ ଠେଲିଦେଲେ । ରେଳ ରାସ୍ତା କଲେ ନାହିଁ । ଚାକିରୀରେ ବଙ୍ଗାଳୀ,ତେଲୁଗୁମାନଙ୍କୁ ସୁଯୋଗ ଦେଲେ । ପ୍ରାୟ ୭ ଶହ ଜମିଦାରୀକୁ କଲିକତାଠାରେ ସ୍ୱଳ୍ପ ମୂଲ୍ୟରେ ନିଲାମରେ ବିକି କଲେ । ସେଥିପାଇଁ ଅଗଣିତ ଦେଶପ୍ରେମୀଙ୍କର ବିଦ୍ରୋହକୁ ସମ୍ମୁଖୀନ ହେବାକୁ ପଡିଥିଲା ।

ଇଂରେଜମାନେ ଗଞ୍ଜାମରେ ୧୭୫୯ ଖ୍ରୀ:ଅ:ରେ ଅନୁପ୍ରବେଶ କଲା ବେଳେ ଫରାସୀମାନେ ଗଞ୍ଜାମ ପୋତାଗଡ଼ଠାରେ ଗୋଟିଏ ବାଣିଜ୍ୟ କେନ୍ଦ୍ର କରି ରହିଥିଲେ । ଫରାସୀ ନେତା ବୁସି ଗଞ୍ଜାମ ଅଧିକାର କଲା ପରେ ସେଠାରେ ତାଙ୍କର ପ୍ରତିନିଧି ରୂପେ ମୋରସିନ ଥିଲେ । ୧୭୬୬ରେ ଇଂରେଜମାନେ ସନ୍ଧିବଳରେ ନିଜାମଅଲ୍ଲୀଙ୍କ ଠାରୁ ଉତ୍ତର

ସରକାର ସମେତ ଗଞ୍ଜାମ ଜିଲ୍ଲା ପାଇଲେ । ଗଞ୍ଜାମରେ ୧୭୬୮ରେ ପୋତାଗଡ଼ ଠାରେ ଗୋଟିଏ ଦୁର୍ଗ ନିର୍ମାଣ କଲେ ।

୧୭୫୯ ଖ୍ରୀ:ଅ:ରେ ନାରାୟଣ ନରେନ୍ଦ୍ରଦେବଙ୍କ ପିତାଙ୍କୁ ଇଂରେଜ ଲର୍ଡ ଫରାସୀମାନଙ୍କୁ ଗଞ୍ଜାମରୁ ତଡ଼ିବା ପାଇଁ ସାମରିକ ସାହାଯ୍ୟ ପ୍ରାର୍ଥନା କରିଥିଲେ । ସେ ଏଥିରେ ସହଯୋଗ ନ କରି ମଧ୍ୟ ବିଜୟନଗର (ବଡ଼ଖେମୁଣ୍ଡି) ରାଜାଙ୍କୁ ଜବତ କରିବା ପାଇଁ ୫ ଶହ ସୈନ୍ୟ ସାହାଯ୍ୟ କରିବା ଜଣାଯାଏ । ସେ ଇଂରେଜ ଅଧିକାରର ଦୁଇବର୍ଷ ପରେ ୧୭୭୦ ଖ୍ରୀ:ଅ:ରେ ମୃତ୍ୟୁବରଣ କଲେ । ତାପରେ ମହୁରୀରେ ନାରାୟଣ ନରେନ୍ଦ୍ରଦେବ ରାଜା ହେଲେ । ସେ ନିଃସନ୍ତାନ ଥିଲେ । ସେ ଟିକଲି ରାଜା ରଘୁନାଥଙ୍କର ବିଦୂଷୀ ଭଗ୍ନୀ କୃଷ୍ଣପ୍ରିୟାଙ୍କୁ ବିବାହ କରିଥିଲେ । ରାଜା ନାରାୟଣଙ୍କୁ ତାଙ୍କର ଅବୈଧ ସାବତ ଭାଇ ମହିଆ ଦେଉ ହତ୍ୟା କରିଥିଲେ ଓ ୧୭୮୯ରେ ତାଙ୍କର ପଞ୍ଜାଦାର ଖରସୋଧାଲାଲଙ୍କୁ ଓ ୧୭୮୧ରେ ରାଜ୍ୟ ପାଳ ରଘୁନାଥଙ୍କୁ ମଧ୍ୟ ହତ୍ୟା କରିଥିଲେ ।

ତଦାନନ୍ତନ ମହୁରୀ ରାଜା ନାରାୟଣ ନରେନ୍ଦ୍ରଦେବ ଜଣେ ଶକ୍ତିଶାଳୀ ଯୋଦ୍ଧାଥିଲେ । ତାଙ୍କ ୩ ହଜାର ସୁସଜ୍ଜିତ ସେନା ଥିଲେ । ସେ ଫରାସୀମାନଙ୍କର ବିଶ୍ୱସ୍ତ ବନ୍ଧୁ ଥିଲେ । ମାଳ ସିରାଜୌଦଲ୍ଲା ଓ ନାରାୟଣଙ୍କ ସାହାଯ୍ୟରେ ଇଂରେଜମାନଙ୍କୁ ପରାସ୍ତ କରି ମୁସଲିପଟ୍ଟମ ହସ୍ତଗତ କରିବା ପାଇଁ ଫରାସୀ ଗଞ୍ଜାମର ପ୍ରତିନିଧି ମୋରାସିନ ଯୋଗାଡ଼ କରୁଥିଲେ । ଏହି ସମୟରେ କେତେକ ଇଂରେଜ ବନ୍ଦୀ ଗଞ୍ଜାମ ବନ୍ଦୀଶାଳାରୁ ପଳାୟନ କରି କଲିକତାରେ ଏହି ଷଡ଼ଯନ୍ତ୍ର କଥା ଇଂରେଜମାନଙ୍କୁ ପ୍ରକାଶ କଲେ । ଫରାସୀମାନଙ୍କର ଖାଦ୍ୟ ସାମଗ୍ରୀ ନଥିଲା ।

ଫରାସୀମାନେ ମଞ୍ଜୁଷା ରାଜାଙ୍କ ଅଜାଣତରେ ବ୍ରହ୍ମପୁର ଲୁଣ୍ଠନ କଲେ । ତାହା ମଞ୍ଜୁଷା ରାଜାଙ୍କୁ ଅସହ୍ୟ ହେଲା । ସେ ନିଜେ ସୈନ୍ୟ ଶୃଙ୍ଖଳା କରି ଫରାସୀମାନଙ୍କୁ ପରାସ୍ତ କରି ଗଞ୍ଜାମ ପର୍ଯ୍ୟନ୍ତ ତଡ଼ି ନେଲେ । ସନ୍ଧିରେ ଫରାସୀମାନେ ଆଉ ମଞ୍ଜୁଷା ସୀମାକୁ ଯିବେ ନାହିଁ ବୋଲି ସ୍ଥିର ହେଲା । ଫରାସୀମାନଙ୍କୁ ଗଞ୍ଜାମରୁ ନିର୍ମୂଳ କରିବା ପାଇଁ ନାରାୟଣ ଦେବ ଇଂରେଜ ଲର୍ଡ କ୍ଲାଇବଙ୍କୁ ଚିଠି ଲେଖିଲେ । କ୍ଲାଇବ କେତେକ ସେନା ସହ କେପଟେନ୍ ଥାମ୍ସନ୍ ଓ ଫୋର୍ଡ଼ଙ୍କୁ ପଠାଇଲେ । ସବୁ ଦିଗରୁ ବିପଦ ଘନେଇ ଆସୁଥିବା ଯୋଗୁଁ ଫରାସୀମାନେ ୧୭୫୭ ଖ୍ରୀ.ଅ.ରେ ଗଂଜା ଦୁର୍ଗ ଚରଦନ ପାଇଁ ତ୍ୟାଗ କଲେ ।

ରାଜ୍ୟସ୍ୱତ୍ତ୍ୱ ଲୋପ ନୀତି ଦ୍ୱାରା ନାରାୟଣଙ୍କର ହତ୍ୟା ପରେ ଇଂରେଜମାନେ ମଞ୍ଜୁଷା ରାଜ୍ୟକୁ ଖାସ୍ କରିଦେଲେ । ମଟିଆ ଦେଉଙ୍କୁ ଇଂରେଜମାନେ ସମର୍ଥନ କରିବା ଯୋଗୁଁ ତାଙ୍କୁ ତଉଜି ଛାଡ଼ିଦେଲେ । ୨୭୮୭ ଖ୍ରୀ:ଅ:ରେ କୃଷ୍ଣପ୍ରିୟା ମଞ୍ଜୁଷାର ରାଣୀ ରୂପେ ସନନ୍ଦ ଲାଭ କଲେ । ତାଙ୍କ ବିରୁଦ୍ଧରେ ମଟିଆ ଦେଉଙ୍କୁ ବିଦ୍ରୋହ କରିବା ପାଇଁ ଓ ଅଦାଲତରେ ମକଦ୍ଦମା କରିବା ପାଇଁ ଉସୁକାଇଲେ । ତା'ଫଳରେ ଇଂରେଜମାନେ ରାଜ୍ୟକୁ ପୁଣି ନିଜେ ବୁଝିଲେ । କୃଷ୍ଣପ୍ରିୟା ଏହା ଆବେଦନନାମାକୁ ନାକଚ କରି ୧୮୦୪ରେ ରାଜ୍ୟ ଫେରି ପାଇଲେ । ୧୮୦୬ରେ ପେସକସ୍ ବାକି ପଡ଼ିବାରୁ ପୁଣି ଆଉଥରେ ମଞ୍ଜୁଷାକୁ ଜବତ କଲେ । ପରେ କୃଷ୍ଣପ୍ରିୟା ଅକଡ଼ଆ ପରିସ୍ଥିତିରେ ପଡ଼ି ମଟିଆଦେଉଙ୍କ ସଙ୍ଗରେ ସାଲିସ୍ କଲେ ଯେ, କୃଷ୍ଣପ୍ରିୟା ଜୀବିତାବସ୍ଥାରେ ରାଜ୍ୟ ପରିଚାଳନା କରିବେ ଓ ତାଙ୍କପରେ ମଟିଆଦେଉ ରାଜା ହେବେ । ମାତ୍ର ୧୮୦୯ରେ ଅଦାଲତର ଆଦେଶ ବଳରେ କୃଷ୍ଣପ୍ରିୟା ଆଉଥରେ ମଞ୍ଜୁଷା ଫେରି ପାଇଲେ, କିନ୍ତୁ ପର ବର୍ଷର ପେସ୍କସ ବାକିଥିବା

ଯୋଗୁଁ ମହୁରୀକୁ ସରଫ ବନ୍ଦଚଲମାପ୍ଟାଙ୍କୁ ନାମରେ ବକ ଦିଆଗଲା । ଚଲମାପ୍ପା ମହୁରୀ ପାଇକମାନଙ୍କର ଇନାମ ଜମି ଛଡାଇ ନେଲେ । ତା' ଫଳରେ ସରସିଙ୍ଗ ମାର୍ଥାଙ୍କ ନେତୃତ୍ୱରେ ବିଦ୍ରୋହ ଫଳରେ ତା ୮-୩-୧୮୧୭ ରାତରେ ଇଂରେଜମାନଙ୍କର ସଦର ମହକୁମା ବ୍ରହ୍ମପୁରକୁ ଲୁଣ୍ଠନ କରି ପୋଡି ଦେଲେ ।

୧୮୧୭ ଖ୍ରୀ:ଅ:ରେ ଖୋର୍ଦ୍ଧାରେ ବକ୍ସି ନେତୃତ୍ୱରେ ରାଜ ବଂଶକୁ ଫେରାଇବା ପାଇଁ ବିଦ୍ରୋହ କରୁଥିଲେ । ମାର୍ଥା ସେଥିରେ ସମର୍ଥନ ଜଣାଇ ମହୁରୀରେ ଚଲମାପ୍ଟାଙ୍କୁ ଉଠାଇ ରାଜବଂଶ ପ୍ରତିଷ୍ଠା ପାଇଁ ୧୮୧୮ ଖ୍ରୀ:ଅ: ପର୍ଯ୍ୟନ୍ତ ବିପ୍ଳବକୁ ଜୀଇଁ ରଖିଲେ । ସେହି ସମୟରେ ଗୁମୁସରରେ ମଧ୍ୟ ବିଦ୍ରୋହ ନିଆଁ ଜଳୁଥିଲା । ଶ୍ରୀକର ଭଞ୍ଜ କୌଶଳକ୍ରମେ ବ୍ରହ୍ମପୁର ଲଞ୍ଜିପଲୀ ବନ୍ଦୀଶାଳାରୁ ପଳାଇଯାଇ ମାର୍ଥାଙ୍କର ସହଯୋଗ ପାଇଥିଲେ । ଖୋର୍ଦ୍ଧା ପାଇକ ବିଦ୍ରୋହ, ଗୁମୁସର ବିଦ୍ରୋହ ଓ ମହୁରୀ ବିଦ୍ରୋହ ହେତୁ ଇଂରେଜମାନେ ଓଡ଼ିଶା ଅଧିକାର କରିବା ଆଶା ଛାଡିଥିଲେ ।

ଉପରୋକ୍ତ ରାଜବଂଶ ପ୍ରତିଷ୍ଠା ପାଇଁ ବିଦ୍ରୋହରୁ ଇଂରେଜ-ମାନେ ନିଜର ଭୂଲଭଟକା ବୁଝିପାରି ଉପରେ ମଟିଆଦେଇ ଓ ମାଳୀ ଦେବୀଙ୍କର ୧୨ ବର୍ଷର ନାବାଳକ ପୁତ୍ର କୃଷ୍ଣଚନ୍ଦ୍ରଙ୍କୁ (କୃଷ୍ଣପ୍ରିୟାଙ୍କ ପ୍ରତିବାଦ ସତ୍ତ୍ୱେ) ୧୮୨୧ରେ ମହୁରୀ ରାଜଗାଦିରେ ବସାଇଲେ ।

୧୮୧୬ ଖ୍ରୀ:ଅ:ବେଳକୁ ମହୁରୀ ନୂତନ ରାଜଧାନୀ ବ୍ରହ୍ମପୁର-ଥିଲେ ମଧ୍ୟ ଇଂରେଜମାନେ ଗଞ୍ଜାମର ସର୍ବଶ୍ରେଷ୍ଠ ବାଣିଜ୍ୟ କେନ୍ଦ୍ରର ଲୋଭ ସମ୍ବରଣ କରି ନପାରି ତାକୁ ସଦର କାର୍ଯ୍ୟାଳୟ କରି ୧୮୩୧

ଖ୍ରୀ:ଅ: ପର୍ଯ୍ୟନ୍ତ ରଖିଥିଲେ । ତା'ପରେ ଛତ୍ରପୁରକୁ ସ୍ଥାନାନ୍ତରିତ କରିଥିଲେ । ନାବାଳକ କଟିବା ପରେ କୃଷ୍ଣଚନ୍ଦ୍ର ୧୮୪୪ ପର୍ଯ୍ୟନ୍ତ ରାଜା ହୋଇ ରହିଲେ । କୃଷ୍ଣପ୍ରିୟା ନିଜର ପିତାଳୟ ନିକଟରେ ଆଶ୍ରୟ ନେଇ ୧୮୩୭ ପର୍ଯ୍ୟନ୍ତ ଆବେଦନ ନିବେଦନ କରୁଥିଲେ । ଇଂରେଜମାନେ ରାଜା କୃଷ୍ଣଚନ୍ଦ୍ରଙ୍କ ମା' ମାଳୀଦେବୀଙ୍କୁ ସରକାରୀ ସମର୍ଥନ ଦେଉଥିଲେ । ପରିଶେଷରେ ୧୮୪୪ ବେଳକୁ ମନ୍ଦୁରୀ ରାଜା କୃଷ୍ଣଚନ୍ଦ୍ରଙ୍କୁ ଅପାରଗ, ବିକୃତ ମସ୍ତିଷ୍କ କହି ବାକିଆ ପେସକସ୍ ଯୋଗୁଁ ପୁନର୍ବାର ଜିଲ୍ଲାପାଳଙ୍କର ଅଧୀନକୁ ଆଣିଲେ ।

ନିଜକୁ ନରେନ୍ଦ୍ର ଯୁବଣ ବୋଲି ତାଙ୍କର ଏକମାତ୍ର କାବ୍ୟ 'ଶଶିସେଣା'ରେ ଭଣିତ କରିଛନ୍ତି । ଏହା ଗୋଟିଏ କାଳ୍ପନିକ କାବ୍ୟ । ଏହା ଓଡ଼ିଶାର ପ୍ରଚଳିତ ଶଶିସେଣା କିମ୍ବଦନ୍ତୀର ଛାୟାରେ ପୁରା ରଚିତ ନ ହୋଇ କଥାବସ୍ତୁକୁ ନିଜର ସମ୍ପୂର୍ଣ୍ଣ କଳ୍ପନାର ରୂପରେଖ ଦାଇଛନ୍ତି । ଭାଷା ବିନ୍ୟାସ ଲଳିତ ଓ ମଧୁର । ବର୍ଣ୍ଣନା ଶୈଳୀ ସରଳ ତଥା ସରସ । ଏହା ବହୁତ ପ୍ରଚଳିତ ଆଞ୍ଚଳିକ ଶବ୍ଦ ଦ୍ୱାରା ପରିଶୋଭିତ । ଏହି କାବ୍ୟରେ ସେ ସମୟର ସାମନ୍ତବାଦୀ ରାଜପରିବାରରେ ଏକ ନିଛକ ଚିତ୍ର ମିଳେ । ରାଜବାଟୀ ମଧ୍ୟରେ ସୁକୁମାରୀ ରାଜକୁମାରୀମାନେ କିପରି ଅସୂସରେ ପରିବାରବର୍ଗ ମଧ୍ୟରେ ଦୈନନ୍ଦିନ କାଳ ଯାପନ କରନ୍ତି ତା'ର ମନୋଜ୍ଞ ବିବରଣୀ ମିଳେ । କାବ୍ୟଟି ସାବଲୀଳ ଭାଷାରେ ଜୀବନ୍ତ କରାଯାଇଛି ।

# ନାରୀକବି ଅନ୍ନପୂର୍ଣ୍ଣା

୧୮୮୩ ଖ୍ରୀ:ଅ: ମଇ ୨୫ ତାରିଖରେ ଗଞ୍ଜାମ ଜିଲ୍ଲା ଟିକିଟି ଗଡ଼ରେ ଏକ ସାମନ୍ତ କରଣ ପରିବାରରେ ଅନ୍ନପୂର୍ଣ୍ଣା ଜନ୍ମଗ୍ରହଣ କରିଥିଲେ । ତାଙ୍କ ମାତାଙ୍କ ନାମ ସୁଭଦ୍ରାଦେବୀ ଏବଂ ପିତାଙ୍କ ନାମ ଗୋବିନ୍ଦ ପଟ୍ଟନାୟକ । ପୁରୁଷୋତ୍ତମପୁର ନିବାସୀ ରାମଚନ୍ଦ୍ର ପଟ୍ଟ-ନାୟକଙ୍କ ସହିତ ତାଙ୍କର ୧୬ ବର୍ଷ ବୟସରେ ପରିଣୟ ସଂପାଦିତ ହୋଇଥିଲା । ୧୯୦୨ ରୁ ତାଙ୍କର କବି ଜୀବନ ଆରମ୍ଭ ହୋଇଥିଲା । ୨୧ ବର୍ଷ ବେଳକୁ କବି ହିସାବରେ ସେ ସୁଖ୍ୟାତି ଅର୍ଜନ କରିଥିଲେ । ତାଙ୍କ ପୂର୍ବରୁ ସୁଲକ୍ଷଣା ଦେବୀ ଭକ୍ତି ଓ ଭାବମୂଳକ କବିତା ରଚନା କରୁଥିଲେ । ଅନ୍ନପୂର୍ଣ୍ଣା ସୁଲକ୍ଷଣାଙ୍କୁ ଅନୁକରଣ କରି ଏହି ଧରଣର କବିତା ଲେଖୁଥିଲେ । କବିତା ରଚନା ଦୃଷ୍ଟିରୁ ସେ ଆଧୁନିକ ଓଡ଼ିଆ ସାହିତ୍ୟର ବିଂଶ ଶତାବ୍ଦୀର ପ୍ରଥମ ଓଡ଼ିଆ ନାରୀକବି ରୂପେ ପରିଚିତ । ସେ କୋମଳମତି ବାଳକ, ବାଳିକାମାନଙ୍କ ପାଇଁ ଯେପରି ଗଦ୍ୟ ପଦ୍ୟ ଲେଖୁଥିଲେ, ସେହିପରି ବୟୁଢ଼ୀମାନଙ୍କ ପାଇଁ ମଧ୍ୟ ଭକ୍ତି ପୂର୍ଣ୍ଣ ଉଚ୍ଚ ଧରଣର ହିତୋପଦେଶ ଲେଖା ଲେଖିବାରେ ପାରଙ୍ଗମ ଥିଲେ । ସେ ନାରୀ ଜୀବନର ଦୈନ୍ୟ, ଦୁଃଖ, ଅସହାୟତା କଥା ବହୁତ ବର୍ଣ୍ଣନ କରିଛନ୍ତି ।

ଲେଖିକାଙ୍କ ସ୍ୱାଧୀନ ମନୋବୃତ୍ତି ଓ ସମାଜ ସଂସ୍କାର ମୂଳକ ରଚନା ଯୋଗୁଁ ତାଙ୍କୁ ନାନା ଝଡ଼ଝଞ୍ଜାର ସମ୍ମୁଖୀନ ହେବାକୁ ପଡ଼ିଥିଲା । ଫଳରେ ଜୀବିକା ନିର୍ବାହ ପାଇଁ ତାଙ୍କୁ ସ୍ୱାମୀଙ୍କ ସହିତ

ବିଶାଖାପାଟଣା ଠାରେ ତତ୍କାଳୀନ ଜୟପୁର ରାଜା ବିକ୍ରମଦେବ ବର୍ମାଙ୍କ ଆଶ୍ରୟରେ ଜୀବନ ଯାପନ କରିବାକୁ ପଡ଼ିଥିଲା । ସେ ଆନୁଷ୍ଠାନିକ ଶିକ୍ଷାଲାଭରୁ ବଞ୍ଚିତ ଥିଲେ । କବିଙ୍କର ବହୁ ଲେଖା ପତ୍ର ପତ୍ରିକାରେ ପ୍ରକାଶ ପାଇଥିଲା । ତାଙ୍କର 'କବିତା ପ୍ରକାଶ'ରୁ ଜଣାଯାଏ ଯେ, ସେ ୮୮ ଗୋଟି ଶ୍ରେଷ୍ଠ ବଡ଼ କବିତା ରଚନା କରିଥିଲେ । ତାଙ୍କର 'ରାଜକବି ଉପେନ୍ଦ୍ର' ଓ 'ଶୁଦ୍ରମୁନି ସାରଳାଦାସ' ପ୍ରବନ୍ଧ ବିଶିଷ୍ଟ ସ୍ଥାନ ଅଧିକାର କରିଛି । ସେ ସମ୍ବାଦକାରର ସମ୍ପାଦକ ରୂପେ କିଛି ସମୟ ରହିଥିଲେ । ତାଙ୍କର ଭାଷା ସରଳ, ଭାବଗର୍ଭକ, ଚାତୁର୍ଯ୍ୟମୟ ଓ ଦ୍ୱିଭାବୋକ୍ତିର ସମନ୍ୱୟ ପ୍ରାପ୍ତ । ସେଥିପାଇଁ ମନୋଜ୍ଞ ହୋଇଛି । ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ପାଇଁ ଦେଶ ମିଶ୍ରଣ ଆନ୍ଦୋଳନରେ 'ଫିଲିପ୍ ଡ଼ଫ୍ କମିଶନ' ଆଗରେ ଓଡ଼ିଆଙ୍କ ସପକ୍ଷରେ ସାକ୍ଷ୍ୟ ପ୍ରଦାନ କରି ଦାବୀ ମଞ୍ଜୁର କରିଥିଲେ । କବିଙ୍କ ବିଷୟରେ 'ଟେଲିଗ୍ରାଫ୍' ୨୩-୧୧-୧୯୦୪ ଓ 'ହିନ୍ଦୁ' ୩୦-୧୧-୧୯୧୦ ପତ୍ରିକାରେ ପ୍ରକାଶ ପାଇଥିଲା ।

ତାଙ୍କର ଲେଖା ହେଉଛି—ପଦ୍ୟମାଳା (ପ୍ରଥମ ଭାଗ), ୧୯୦୮ ଖ୍ରୀ.ଅ.—ପ୍ରାର୍ଥନା, ଗୋଧନ ବାହୁଡ଼ା, ପୁଷ୍ପ, ହେତ ହେନ୍ଙ୍କ ପ୍ରାର୍ଥନା, ରବିବାର ପ୍ରାର୍ଥନା, ଜୀବରେ ଦୟା, ପଦ୍ୟମାଳା (୨ୟ ଭାଗ), ବୃଦ୍ଧ ପ୍ରାର୍ଥନା, ଶୀତକାଳରେ ବୃକ୍ଷମାନଙ୍କ ଶୋଭା, ଭକ୍ତ ପ୍ରାର୍ଥନା, ସଂସାରର ରଙ୍ଗ ଓ ସ୍ତବ । 'ପକ୍ଷୀଙ୍କର ଓ ଭକ୍ତ ପ୍ରାର୍ଥନା' ପଦ୍ୟ । ତାଙ୍କର ଲେଖା ମଧ୍ୟରୁ ସରଳ ଧର୍ମ ବିଶ୍ୱାସ ଓ ଈଶ୍ୱରାନୁରାଗ ପ୍ରତିଫଳିତ ହୁଏ ।

•

# ନାରୀକବି ସୀତାଦେବୀ ଖାଡଙ୍ଗା

୧୯୦୨ ଖ୍ରୀ:ଅ:ରେ ଗଞ୍ଜାମ ଜିଲ୍ଲା ଆସିକାଠାରେ ସୀତାଦେବୀ ଖାଡ଼ଙ୍ଗା ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତାଙ୍କର ନାମ ହେଉଛି ହରିହର ପଣ୍ଡା । ହରିହର ପଣ୍ଡା ଜଣେ ନୀତିବାନ୍, ଚରିତ୍ରବାନ୍ ପୁରୁଷ ଓ ସେ ନୂତନ ଓଡ଼ିଶା ଗଠନ ଆନ୍ଦୋଳନର ଜଣେ ପୁରୋଧା ଥିଲେ । ସୀତାଦେବୀଙ୍କ ଉପରେ ତାଙ୍କର ପିତାଙ୍କର ପ୍ରଭାବ ବିଶେଷ ଭାବରେ ପଡ଼ିଥିଲା ।

ଗଞ୍ଜାମ ଜିଲ୍ଲା ସୋରଡ଼ା ନିକଟବର୍ତ୍ତୀ ଗୋପାଳପୁର ଶାସନରେ ବାଞ୍ଛାନିଧି ଖାଡ଼ଙ୍ଗାଙ୍କୁ ୧୦ ବର୍ଷ ବୟସରେ ବାଲ୍ୟ ବିବାହ କରି-ଥିଲେ । ପିଲା ଦିନରୁ ତାଙ୍କର ଜ୍ଞାନ ଆହରଣର ଅଭିଳିପ୍ସା ଥିଲା । କିଶୋରୀ ଜୀବନ ସମସ୍ତର ପରିବେଶ ମଧ୍ୟରେ ତାଙ୍କର କବିତ୍ୱ ବିକଶିତ ହୋଇଥିଲା । ଫକୀର ମୋହନଙ୍କ ଲେଖା ଓ ମୁକୁର, ଉତ୍କଳ ସାହିତ୍ୟ, ର ଲେଖାଗୁଡିକ ତାଙ୍କୁ ବିଶେଷ ଉପାଦାନ ଯୋଗାଇଥିଲା । ଆନୁଷ୍ଠାନିକ ଶିକ୍ଷା ଯୋଗ୍ୟତା ବା ଇଂରାଜୀ ପଢ଼ିବା ସୁଯୋଗ ପାଇପାରି ନଥିଲେ ମଧ୍ୟ ତରୁଣୀ ଅବସ୍ଥାରୁ ବଙ୍ଗଳା, ହିନ୍ଦୀ ପଢ଼ା ଶୁଣା କରି ପାରୁଥିଲେ । ରବିନ୍ଦ୍ର ଠାକୁର ଓ ବଙ୍କିମଚନ୍ଦ୍ରଙ୍କର ସାହିତ୍ୟର ଆଦର୍ଶ ତାଙ୍କ ସାହିତ୍ୟରେ ପ୍ରତିଫଳିତ ହୋଇଛି । ଗୋଦାବରୀଶଙ୍କ 'ପୁରୁଷୋ-ତ୍ତମଦେବ' ନାଟକ, ଛକଟି ରାଜା ରାଧାମୋହନଙ୍କର ନାଟକ ତାଙ୍କର ମନଗହନ ତଳେ ଗଭୀର ରେଖାପାତ କରି ଭବିଷ୍ୟତରେ ନାଟକ

ଲେଖିବା ପାଇଁ ପ୍ରେରଣା ଦେଇଥିଲା । ଯେଥିପାଇଁ ତାଙ୍କର ଉପନ୍ୟାସ ଅପେକ୍ଷା ସେ ନାଟକ ରଚନାରେ କୁଶଳୀ ଶିଳ୍ପୀ ହୋଇ ପାରିଛନ୍ତି ।

ସଫଳ ନାଟ୍ୟକାର ରୂପେ ସେ ଲେଖିଛନ୍ତି—ସହୋଦର, ନାରୀ, ପୋଷ୍ୟପୁତ୍ର, ନୈଷ୍ଠିକ, ପ୍ରାଚୀନ ପନ୍ଥୀ, କ୍ଷୁଧାର ପୀଡ଼ା, ମାତୃହୀନ । ତାଙ୍କର ସାମାଜିକ ନାଟକ ହେଉଛି ଜନ୍ମତିଥି, ନିଷ୍ପତ୍ତି । ତାଙ୍କର ନାଟକରୁ ତାଙ୍କର ନାରୀ ସୁଲଭ ଚିତ୍ତ, ତାଙ୍କ ବ୍ୟକ୍ତିତ୍ୱ, ଆଦର୍ଶବାଦ, ମାନବିକତାର ସ୍ପର୍ଶ ମିଳେ । ତେଣୁ ତାଙ୍କର ଉପନ୍ୟାସ ଅପେକ୍ଷା ନାଟକଗୁଡ଼ିକ ପ୍ରାଣବନ୍ତ । ତାଙ୍କର ନାରୀ ସୁଲଭ ଆବେଗ ଭରା ଅନୁଭୂତିରୁ ସମାଜର ନିଖୁଣ ଚିତ୍ର ଦ୍ୱାରା ଉପନ୍ୟାସଗୁଡ଼ିକ ହୃଦୟସ୍ପର୍ଶୀ । ଯଥା—ଜୀବନ ସ୍ମୃତି, ଅଗ୍ରଜ, ପ୍ରତ୍ୟାବର୍ତ୍ତନ, ପୋଷ୍ୟ-ପୁତ୍ର । ସେ ଅନ୍ୟାୟ, ଅତ୍ୟାଚାର, ଅନୀତି, କୁସଂସ୍କାର, ଅନ୍ଧ ବିଶ୍ୱାସ ବିରୁଦ୍ଧରେ ଲେଖନୀ ଅସ୍ତ୍ର ତୋଳିଛନ୍ତି ।

କବି, ରବୀନ୍ଦ୍ରନାଥ ଠାକୁରଙ୍କର 'ଘରେ ବାଇରେ', 'ଶେଷର କବିତା' ଓଡ଼ିଆରେ ଅନୁବାଦ କରିଛନ୍ତି । ସେ ହରିହର ନାଟ୍ୟ ମଣ୍ଡଳ ନାମକ ଗୋଟିଏ ଅନୁଷ୍ଠାନ କରିଥିଲେ । 'କୃଷ୍ଣସିଂହ ସାହିତ୍ୟ ପରିଷଦ' ଅନୁଷ୍ଠାନ ତାଙ୍କର ଆପ୍ରାଣ ଚେଷ୍ଟା ଯୋଗୁଁ ଗୋଟିଏ ମହତ ମୂକସାକ୍ଷୀ ରୂପେ ଦଣ୍ଡାୟମାନ । ସେ ଗୃହ କାରରୁ ଆସି କିଛିଦିନ ତତ୍‌କାଳୀନ ଗଞ୍ଜାମ ରାଜନୀତିରେ ଯୋଗ ଦେଇଥିଲେ ।

ସେ ଯୌତୁକ ପ୍ରଥା ଓ ବାଲ୍ୟ ବିବାହର ବିରୋଧ ଏବଂ ସ୍ତ୍ରୀମାନଙ୍କର ଉନ୍ନତି ପାଇଁ ଚେଷ୍ଟା କରୁଥିଲେ । ସେବା କରିବା ପାଇଁ ଚିକିତ୍ସା ମଧ୍ୟ ଜାଣିଥିଲେ ।

ତାଙ୍କର ଲେଖାରେ ଭାରତୀୟ ଦର୍ଶନର ଆଭାସ ମିଳେ—

'ଜନନୀ ଜନ୍ମଭୂମି ସ୍ୱର୍ଗଠାରୁ ବଡ଼'

'ହଜାରେ ବାପାଠାରୁ ଜଣେ ମା' ତେଣୁ ଶ୍ରେଷ୍ଠ' । (ମନୁ)

'ଯେଉଁଠାରେ ନାରୀମାନେ ପୂଜା ପାଆନ୍ତି ନାହିଁ, ସେଠାକୁ ଦେବତାମାନେ ଖୁସିରେ ଆସନ୍ତି ନାହିଁ' । (ବେଦ)

'ପିତା ସ୍ୱର୍ଗ, ଧର୍ମ, ପରମ ତପ । ପିତା ସନ୍ତୋଷ ହେଲେ ଦେବତାମାନେ ଆନନ୍ଦିତ ହୁଅନ୍ତି ।' (ବେଦ)



## ନାରୀକବି ରାସେଶ୍ୱରୀ ପାତ୍ର

ବିଂଶ ଶତାବ୍ଦୀର ଦୁଇ ଦଶକ ମଧ୍ୟରେ ଗଂଜାମ ଜିଲ୍ଲାର ପାରଳାଖେମୁଣ୍ଡି ଠାରେ ନାରୀକବି ରାସେଶ୍ୱରୀ ପାତ୍ର ଜନ୍ମ ଗ୍ରହଣ କରିଥିବା ଜଣାଯାଏ । ସେ ଗୋପାଳି ନୂଆଗାଁର ଜଣେ ଶିକ୍ଷକଙ୍କର ପାଣିଗ୍ରହଣ କରିଛନ୍ତି । ସେ ଜଣେ ଈଶ୍ୱରଭକ୍ତା ଧର୍ମପରାୟଣା ରମଣୀ ।

ତାଙ୍କର ଲେଖା ମଧ୍ୟରୁ 'ଜାନକୀ ଚରିତାମୃତ' କାବ୍ୟ ପ୍ରଧାନ । ଏହାର ଭାଷା ସରଳ ଓ ସାବଲୀଳ । ଲେଖା ଭିତରେ ବହୁତ ଦକ୍ଷିଣ ଓଡ଼ିଶାର ଭାଷା ଦେଖିବାକୁ ମିଳେ ।



# ରାଣୀ କନକମଞ୍ଜରୀ ଦେବୀ

ଗଞ୍ଜାମ ଖଲିକୋଟ ରାଜା ଉତ୍କଳ ସମ୍ମିଳନୀର ନେତା କବି ହରିହର ମର୍ଦ୍ଦରାଜ ମୟୂରଭଞ୍ଜ ଶ୍ରେଷ୍ଠରାଷ୍ଟ୍ର ବୃନ୍ଦାବନ ଭଞ୍ଜଙ୍କ ପ୍ରଥମା କନ୍ୟାଙ୍କୁ ୧୮୯୪ ଖ୍ରୀ:ଅ:ରେ ବିବାହ କରିଥିଲେ । ଏହି ରାଣୀଙ୍କର ଅକାଳ ବିୟୋଗ ଯୋଗୁଁ ତା'ପରେ ତାଙ୍କର ଭଗ୍ନୀ କନକମଞ୍ଜରୀଙ୍କୁ ବିବାହ କରିଥିଲେ । ଏଥିରୁ ଜଣାଯାଏ ଯେ କନକମଞ୍ଜରୀ ମୟୂରଭଞ୍ଜରେ ଊନବିଂଶ ଶତାବ୍ଦୀର ଅଷ୍ଟମ ଦଶକ ଭିତରେ ଜନ୍ମ ଗ୍ରହଣ କରିଥିବେ ।

ରାଣୀ କନକମଞ୍ଜରୀ ଦେବୀ କବି ଅନ୍ନପୂର୍ଣ୍ଣାଙ୍କର ସମସାମୟିକ ଥିଲେ । ରାଣୀ କନକମଞ୍ଜରୀ ୧୯୦୪ ଖ୍ରୀ ଅ: ବେଳକୁ ଗଦ୍ୟ କ୍ଷେତ୍ରରେ ପ୍ରତିଷ୍ଠା ଅର୍ଜନ କରି ପାରିଥିଲେ । ତାଙ୍କର ବିଦ୍ୟାନୁରାଗ ଯୋଗୁଁ ସେ ବହୁ ପାଠାଗାର ସ୍ଥାପିତ କରିଥିଲେ । ସେଥି ମଧ୍ୟରୁ କବିସୂର୍ଯ୍ୟନଗରର 'କନକମଞ୍ଜରୀ ପାଠାଗାର' ଅନ୍ୟତମ ।



# ନୃପକେମା

ନୃପକେମାଙ୍କ ଅଷ୍ଟାଦଶ ଶତାବ୍ଦୀରେ ଜନ୍ମ । ଗଞ୍ଜାମ ଜିଲ୍ଲା ଆଠଗଡ଼ ତାଲୁକା ବୀରଜଗନ୍ନାଥପୁର ଶାସନ ଅଧିବାସିନୀ । ସେ କେତେକ କ୍ଷୁଦ୍ର କବିତା ରଚନା କରିଛନ୍ତି । ଏହା ଏ ପର୍ଯ୍ୟନ୍ତ ପ୍ରକାଶ

ହୋଇନାହିଁ । ମନେହୁଏ ଉକ୍ତ ଗ୍ରାମର କେତେକ ସ୍ତତିସିଦ୍ଧ କବିତାର ଲେଖକ ଲକ୍ଷ୍ମୀଶରଣ ଭଞ୍ଜଙ୍କର ବଂଶଧର ଅଟନ୍ତି ।

## ରାଧାରାଣୀ

ରାଧାନାମ୍ନୀ ଜଣେ ମହାପୂର୍ଣ୍ଣ ପଣ୍ଡିତା ଥିଲେ । ସେ ଋଷିକନ୍ଧମାରୂପୀ ଧରାକୋଟ ରାଜେନ୍ଦ୍ରପୁର ଶାସନରେ ଊନବିଂଶ ଶତାବ୍ଦୀର ପ୍ରଥମ ଭାଗରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ପିତାଙ୍କ ନାମ ରାଜଗୁରୁ ନରସିଂହ ମିଶ୍ର । ସେ ବାଲ୍ୟ ବିଧବା ହୋଇଥିଲେ ମଧ୍ୟ ଓଡ଼ିଆ ଓ ସଂସ୍କୃତ ଭାଷାରେ ବହୁ କବିତା ଓ ଶ୍ଳୋକ ରଚନା କରିଥିଲେ । କବିବଲ୍ଲଭ ଭୁବନେଶ୍ୱର ମିଶ୍ରଙ୍କର ସେ ପୂର୍ବ ବଂଶଧର ଥିଲେ । ରାଧାନାମ୍ନୀଙ୍କର ଲେଖାରେ ସଂଗୀତର ମୂର୍ଚ୍ଛନା ପରିସ୍ଫୁଟ ହୁଏ । ତାଙ୍କର ବହୁ ରଚିତ ସଂସ୍କୃତ ଶ୍ଳୋକ ଓ ଓଡ଼ିଆ କବିତା ଅଦ୍ୟାପି ଧରାକୋଟର ଲୋକ ମୁଖରେ ଶୁଣାଯାଏ । ତାହା ଏବେ ମଧ୍ୟ ପ୍ରକାଶିତ ହୋଇନାହିଁ ।

ଋଷିକୁଲ୍ୟା ନଦୀ ତଟରେ ରାଜେନ୍ଦ୍ରପୁର ଶାସନର ନଦୀ କୂଳରେ 'ରାଧାନାମ୍ନୀ ଘାଟ' ନାମରେ ନାମିତ ହୋଇ ଗୋଟିଏ ପାହାଚ କୂଳ ରହିଛି ।

# ପରିଶିଷ୍ଟ କବି ପରିଚୟ

**ଜଳନ୍ତର —**

ରାମକୃଷ୍ଣ ଛୋଟରାୟ (୧୮୫୭—୧୯୦୮) ଜଳନ୍ତରର ରାଜା ଥିଲେ । ସେ 'ପ୍ରହ୍ଲାଦ ନାଟକ' ରଚନା କରିଥିଲେ ।

ରାମଚନ୍ଦ୍ର ଦେବ ଊନବିଂଶ ଶତାବ୍ଦୀରେ ଜଳନ୍ତର ରାଜା ଥିଲେ । ସେ ରସାଳ କବିତା ଓ ବହୁ ସଂଗୀତ ଲେଖିଛନ୍ତି ।

**ତରଳା—**

କୃଷ୍ଣସୁର ହରିଚନ୍ଦନ ଅଷ୍ଟାଦଶ ଶତାବ୍ଦୀରେ ତରଳା ରାଜା ଥିଲେ । ସେ 'ସ୍ୱର ସରଣୀ' ନାମକ ସଂସ୍କୃତ ଗ୍ରନ୍ଥ, ଜ୍ୟୋତିଷ ଶାସ୍ତ୍ରକୁ ଓଡ଼ିଆରେ ଅନୁବାଦ କରିଥିଲେ ଏବଂ 'ଶ୍ରୀ ରାଧା ରାଜେଶ୍ୱରୀ' କବିତା ରଚନା କରିଥିଲେ ।

**ଟିକଲି—**

ପଦ୍ମନାଭ ଦେବ (୧୮୮୦—୧୮୩୨) ଟିକଲି ରାଜାଥିଲେ । ସେ 'ଭଗବଦ୍ଗୀତା' କାବ୍ୟ, ବହୁ ଚଉପଦୀ ଓ 'ଶ୍ରୀ ବ୍ରଜରାଜଙ୍କ ଜଣାଣ' ଲେଖିଥିଲେ ।

**ମଞ୍ଜୁଷା—**

ଶ୍ରୀନିବାସ ରାଜମଣି ଊନବିଂଶ ଶତାବ୍ଦୀରେ ମଞ୍ଜୁଷାର ରାଜା ଥିଲେ । ସେ 'ଅମରୁ ଶତକ', 'ମିତାକ୍ଷର' ଭାଗବତରେ ଅନୁବାଦ କରିଥିଲେ ଏବଂ 'ମୁକ୍ତା ଲତାବଳୀ' କୃଷ୍ଣଲୀଳା ବର୍ଣ୍ଣନା କରିଛନ୍ତି ।

**ସୁରଙ୍ଗୀ—**

କେଶବରାଜ ହରିଚନ୍ଦନ ଅଷ୍ଟାଦଶ ଶତାବ୍ଦୀରେ ସୁରଙ୍ଗୀ ରାଜା ଥିଲେ । ୧୭୧୦ ଖ୍ରୀ:ଅ:ରେ ସେ 'ରସସିନ୍ଧୁ ସୁଲକ୍ଷଣା' କାବ୍ୟ ଲେଖିଥିଲେ ।

ଚନ୍ଦ୍ରଚୂଡ଼ାମଣି ହରିଚନ୍ଦନ ଊନବିଂଶ ଶତାବ୍ଦୀର ଶେଷ ଦଶକରେ, ବିଂଶ ଶତାବ୍ଦୀର ପ୍ରଥମ ପାଦରେ ସୁରଙ୍ଗୀ ରାଜାଥିଲେ । ସେ ରାଧାକାନ୍ତ ଜଣାଣ, ଶମ୍ଭୁନାଥ ଜଣାଣ, କୃଷ୍ଣଚିନ୍ତା ଜଣାଣ, ପ୍ରାର୍ଥନାବଳୀ, ଭ୍ରମରବର ଚଉତିଶା, ପଦ୍ୟମାଳା, ସ୍ୱର ଷୋଡ଼ଶୀ, ଖଳ ଓ ଦାରିଦ୍ର୍ୟ ଲେଖାଗୁଡ଼ିକ ଲେଖିଛନ୍ତି ।

ସୁରଙ୍ଗୀ ରାଜା ହରିଚନ୍ଦନ ଜଗଦ୍‌ଦେବ ପ୍ରେମଧର୍ମୀ କବିତା ରଚନା କରିଛନ୍ତି ।

**ନନ୍ଦପୁର—**

ପୀତାମ୍ବରଦେବଙ୍କ ଅଷ୍ଟାଦଶ ଶତାବ୍ଦୀରେ ଜନ୍ମ । ନନ୍ଦପୁର ରାଜା ରାମଚନ୍ଦ୍ର ଦେବ ପୀତାମ୍ବର ଦେବଙ୍କ ବଡ଼ ଭାଇ । ପିତାମ୍ବର ଦେବଙ୍କ ଲିଖିତ 'ଅଖିଳ ରସ ଚିନ୍ତାମଣି' କାବ୍ୟ 'ଅ' ଅକ୍ଷରରୁ ଆରମ୍ଭ ହୋଇଛି ।

ବଳଭଦ୍ର ନାରାୟଣ ମହାପାତ୍ର ଅଷ୍ଟାଦଶ ଶତାବ୍ଦୀରେ ନନ୍ଦପୁର ରାଜବଂଶର ମନ୍ତ୍ରୀ ପରିବାରରେ ଜନ୍ମ । ସେ ବସ୍ତ୍ରୁ ପୁରାଣ ଓ ତୀର୍ଥ ଚିନ୍ତାମଣି ଲେଖିଛନ୍ତି ।

**ବଡ଼ଗଡ଼—**

ଦୁର୍ଗାମାଧବ ସିଂହ ଊନବିଂଶ ଶତାବ୍ଦୀରେ ବଡ଼ଗଡ଼ ରାଜା ଥିଲେ । ସେ କେତେକ କବିତା ରଚନା କରିଛନ୍ତି ।

'କାମ ପୂରିଲ ହେ ପୂର୍ଣ୍ଣ କାମରୂପ ଧାମ'
'ହରଷ ମନରେ ମୋତେ ହସି ଅନାରେ'

## କରତା—

ରାମଦାସ ବାବାଜୀ ଅଷ୍ଟାଦଶ ଶତାବ୍ଦୀରେ ମଥୁରା ନିକଟବର୍ତ୍ତୀ ଚନ୍ଦ୍ରଭଗାଦରୁ ଓଡ଼ିଶାକୁ ଆସି କରଡ଼ା ରାଜ୍ୟର ସୁବର୍ଣ୍ଣପୁର ଗ୍ରାମରେ ମଠ ପ୍ରତିଷ୍ଠା କରିଥିଲେ । ସେ ସଂସ୍କୃତ ଅଧ୍ୟାତ୍ମ ରାମାୟଣରୁ 'ଶ୍ରୀରାମ-ଭକ୍ତି ରତ୍ନାବଳୀ' ନାମକ ଗ୍ରନ୍ଥ ସଂସ୍କୃତରେ ରଚନା କରିଥିଲେ । ସେବାଦାସ (ତାଙ୍କ ଶିଷ୍ୟ ବାଳକ ରାମଦାସ) ତାହା ଅନୁବାଦ କରି-ଥିଲେ । ରାମାନନ୍ଦ ଲୀଳା ବା ରାମାନନ୍ଦ ଚରିତାମୃତ କେତେକ ଭଣିତ ଥିବା ରଚନା ମିଳେ ।

## ପୂର୍ବଖଣ୍ଡ—

ସଦାଶିବ (ବୈଶ୍ୟ) ଅଷ୍ଟାଦଶ ଶତାବ୍ଦୀ ତୃତୀୟ ଦଶକରେ ଜନ୍ମ । ଋଷିକୁଲ୍ୟା ନଦୀ ତୀରବର୍ତ୍ତୀ ଅଷ୍ଟଣ୍ଡେଶ୍ୱର ଓ ଭୁମ୍ୱେଶ୍ୱର ଶିବ ପୀଠରେ ବିଶେଷ ଗୁରୁତ୍ୱ ଆରୋପ ଦେଇ ଲେଖିଛନ୍ତି । ତାଙ୍କର ରଚନା ହେଉଛି—ଶ୍ରୀରାମ ଲୀଳା ।

## ଦାମୋଦର ଦାସ—

ପିତାମ୍ବର ଦାସଙ୍କ ନାତି । ସେ ଦାମୋଦର ଦୂରାଣ ଲେଖିଛନ୍ତି । ଯାହାକ ପ୍ରକାଶିତ ହୋଇଛି ।

## ବିକ୍ରମ ନରେନ୍ଦ୍ର—

ଅଷ୍ଟାଦଶ ଶତାବ୍ଦୀରେ ଜନ୍ମ । ସେ ରାଘବ ଚରିତାମୃତ ଓ ରାମଲୀଳା ରଚନା କରିଛନ୍ତି ।

**ଜନାର୍ଦ୍ଦନ ବିପ୍ର—**

ଅଷ୍ଟାଦଶ ଶତାବ୍ଦୀରେ ଜନ୍ମ । 'ରାମ କାରୁଣ୍ୟ ଚଉତିଶା'ର ସେ ରଚୟିତା ।

**ଗଞ୍ଜାମର ବିଶିଷ୍ଟ ଲେଖକ –**

ଗୌରକୁମାର ବ୍ରହ୍ମା (ଗୁମୁସର), ବୈକୁଣ୍ଠନାଥ ପଟ୍ଟନାୟକ (ଗୁମୁସର), କାଳଆ ପାଣିଗ୍ରାହି (ତରଳା), କପିଳେଶ୍ୱର ଦାସ (ଖଲକୋଟ), ଅନନ୍ତ ପଦ୍ମନାଭ ପଟ୍ଟନାୟକ (ଗୁମୁସର), ରାମଚନ୍ଦ୍ର-ମିଶ୍ର, ତାରିଣିଚରଣ ରଥ, ଅନ୍ତର୍ଯ୍ୟାମି ପତି, କୃଷ୍ଣଚନ୍ଦ୍ର ପାଣିଗ୍ରାହି ।

ପ୍ରବୀଣ ରାଜନୀତିଜ୍ଞ, ବିଶିଷ୍ଟ ସାହିତ୍ୟିକ ଓ ଐତିହାସିକ ଡକ୍ଟର ହରେକୃଷ୍ଣ ମହତାବ ଲେଖିଛନ୍ତି—'ପ୍ରକୃତରେ ଓଡ଼ିଆ ସାହିତ୍ୟର ସୃଷ୍ଟି ଦକ୍ଷିଣ ଓଡ଼ିଶା ମୁଖ୍ୟତଃ ଗଞ୍ଜାମ ଜିଲ୍ଲାରେ ।'

